**ଆମ ପାରଳା ଗଜପତି**
**ସତ୍ୟ ନାରାୟଣ ମହାପାତ୍ର**

ପ୍ରକାଶକ : ଆମ ଓଡ଼ିଶା
୪ ଆର୍ ୧/୨, ଇଉନିଟ୍-୩,
ଭୁବନେଶ୍ୱର-୭୫୧୦୦୧

ମୁଦ୍ରଣ: ଶ୍ରୀରାମ ସ୍କ୍ରିନ୍ ପ୍ରିଣ୍ଟିଂ
ଭୁବନେଶ୍ୱର-୭

ପ୍ରଥମ ସଂସ୍କରଣ: ଏପ୍ରିଲ୍, ୨୦୧୪

© ଆମ ଓଡ଼ିଶା

ପ୍ରଚ୍ଛଦ ଚିତ୍ର: ଅନ୍ତର୍ଯ୍ୟାମୀ ମେହେର
ପ୍ରସ୍ତୁତି: ଶଶିକାନ୍ତ ରାଉତ

**ମୂଲ୍ୟ: ଟ.୮୦/-**

**Aama Parala Gajapati**
Satya Narayan Mohapatra

Publisher : Aama Odisha,
4R 1/2, Unit-3, Bhubaneswar-751001
e-mail : aamaodisha@gmail.com

Printed at : Sriram Screen Printing,
Bhubaneswar-7

First edition : April, 2014

© Aama Odisha

Cover portrait : Antaryami Meher
Cover design: Shasikanta Rout

Price : ₹. 80/-

ISBN- 978-81-89436-84-1

Ama Odisha pdf (aamaodisha@gmail.com)

# ଦୁଇପଦ

ଓଡ଼ିଆ ଭାଷାର ଓ ଓଡ଼ିଶାର ଭଗୀରଥମାନଙ୍କୁ ନୂଆ ପିଢ଼ିର ପାଠକଙ୍କ ନିକଟରେ ପହଞ୍ଚାଇବା 'ଆମ ଓଡ଼ିଶା' ପ୍ରକାଶନର ଗୋଟିଏ ଉଦ୍ଦେଶ୍ୟ । ଏହା ମାଧ୍ୟମରେ ଓଡ଼ିଶାର ତଥା ଓଡ଼ିଆ ଭାଷା-ସାହିତ୍ୟର ସେବା କରିବା ପାଇଁ ଆମେ ଚେଷ୍ଟା କରି ଆସିଛୁ ।

ଏହି ଉଦ୍ଦେଶ୍ୟରେ ସ୍ୱଭାବକବି ଗଙ୍ଗାଧର ମେହେରଙ୍କ ୧୫୦ତମ ଜୟନ୍ତୀ ପାଳନ ଅବସରରେ ଆମେ ଗଙ୍ଗାଧରଙ୍କ ସଂପର୍କରେ ଏକ ପୁସ୍ତକ ପ୍ରକାଶ କରିବାକୁ ସଂକଳ୍ପ ନେଇଥିଲୁ ଏବଂ ତା'ର ପରବର୍ଷ 'ଆମ ଗଙ୍ଗାଧର' ଶୀର୍ଷକରେ ଏହି ପୁସ୍ତକ ପ୍ରକାଶ କରିଥିଲୁ । ପରେ ପରେ 'ଆମ ସୁଭାଷ' ଓ 'ଆମ ସୁରେନ୍ଦ୍ର ସାଏ' ଶୀର୍ଷକରେ ଆଉ ଦୁଇଟି ପୁସ୍ତକ ମଧ୍ୟ ପ୍ରକାଶ କରିଥିଲୁ । 'ଆମ ପାରଳା ଗଜପତି' ସେହି କ୍ରମରେ ଚତୁର୍ଥ ପୁସ୍ତକ । ପୂର୍ବରୁ ପ୍ରକାଶିତ 'ଆମ ମଧୁସୂଦନ' ପୁସ୍ତକ ମଧ୍ୟ ଏ କ୍ଷେତ୍ରରେ ଆମର ଆଉ ଏକ ମୂଲ୍ୟବାନ ପ୍ରକାଶନ ।

ନୂଆ ପିଢ଼ିର ବହୁ ପାଠକ ପାଠିକା ଆମ ରାଜ୍ୟ ଓଡ଼ିଶାକୁ ଏବଂ ଆମ ଭାଷା, ସାହିତ୍ୟ, ସଂସ୍କୃତିକୁ ବହୁ ଭାବରେ ସଂଗଠିତ ଓ ସମୃଦ୍ଧ କରିଥିବା ଆମର ପୂଜ୍ୟ ପୂର୍ବସୂରୀମାନଙ୍କୁ ଆଉ ଚିହ୍ନୁ ନାହାନ୍ତି । ସେମାନଙ୍କୁ ଚିହ୍ନିଲେ ଏବଂ ସେମାନଙ୍କର ଅମୂଲ୍ୟ ଅବଦାନ ସଂପର୍କରେ ଜାଣିଲେ ସେମାନେ ନିଜର ଐତିହ୍ୟ ଓ ଇତିହାସକୁ ଚିହ୍ନିପାରିବେ । ପୂର୍ବସୂରୀମାନଙ୍କର ତ୍ୟାଗ ଓ ଅବଦାନରୁ ପ୍ରେରଣା ନେଇ ନିଜ ଜୀବନକୁ ନୂଆ କରି ଗଢ଼ିପାରିବେ । ସେଥିପାଇଁ ଆମର ଏହି ଉଦ୍ୟମ । ଆଶା, ପ୍ରିୟ ପାଠକ ପାଠିକାମାନେ ଆମର ଅନ୍ୟ ପୁସ୍ତକଗୁଡ଼ିକ ପରି ଏ ପୁସ୍ତକଟିକୁ ମଧ୍ୟ ଆଦର କରି ଆମକୁ ଏ ଦିଗରେ ଉତ୍ସାହିତ କରିବେ ।

**ସୌମ୍ୟରଂଜନ ପଟ୍ଟନାୟକ**

Ama Odisha pdf (aamaodisha@gmail.com)

# ସୂଚିପତ୍ର



Ama Odisha pdf (aamaodisha@gmail.com)



ଆମ ପ୍ରଥମ ପ୍ରଧାନମନ୍ତ୍ରୀ ପାରଳା ଗଜପତି

Ama Odisha pdf (aamaodisha@gmail.com)

# ଆମ ପାରଳା ଗଜପତି

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଆନ୍ଦୋଳନ ଇତିହାସରେ ଯେଉଁ ଦେଶପ୍ରାଣ ନେତୃବୃନ୍ଦଙ୍କୁ ଭକ୍ତିପୂତ ଶ୍ରଦ୍ଧା ନିବେଦନ ଅର୍ପଣ କରାନଗଲେ ଏ ଜାତି ଅକୃତଜ୍ଞ ହୋଇ ରହିଯିବ, ସେହିମାନଙ୍କ ମଧ୍ୟରେ ଅନ୍ୟତମ ହେଉଛନ୍ତି ପାରଳା ମହାରାଜା ଶ୍ରୀକୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ । ଅତୀତର ରାଜରାଜୁଡ଼ା ଶାସନକାଳରେ ବିଭିନ୍ନ ଆଞ୍ଚଳିକ ରାଜବଂଶ ବିଭିନ୍ନ ଉପାଧିରେ ଭୂଷିତ ଥିଲେ । ଦିଲ୍ଲୀ ସମ୍ରାଟ, ବଙ୍ଗ ନବାବ, ହାଇଦ୍ରାବାଦ ନିଜାମ, ପାତିଆଲା ମହାରାଜା, ଆଗ୍ରା ସୁଲତାନ ଇତ୍ୟାଦି ସଂଜ୍ଞାଗୁଡ଼ିକ ବିଭିନ୍ନ ରାଜପରିବାର ସହିତ ସଂପୃକ୍ତ ଥିଲା । ପୁରୀ ରାଜବଂଶ ମଧ୍ୟ ସେହିଭଳି ଭାବରେ 'ଗଜପତି' ରୂପେ ଚିହ୍ନିତ ହେଉଥିଲେ । ବର୍ତ୍ତମାନ ସୁଦ୍ଧା ଜଗତର ନାଥ ଶ୍ରୀଜଗନ୍ନାଥଙ୍କ ପ୍ରଥମ ସେବକ ପୁରୀ ରାଜା ସେଇ 'ଗଜପତି' ଭାବେ ପାରିବାରିକ ସୂତ୍ରରେ ଏବଂ ପାରମ୍ପରିକ ରୂପେ ସ୍ୱୀକୃତ । କିନ୍ତୁ ଏସବୁର ଏକ ବ୍ୟତିକ୍ରମ ଲକ୍ଷଣୀୟ ଜଣେ ମାତ୍ର ପାରଳା ମହାରାଜାଙ୍କ ନିକଟରେ । ''ପାରଳା ଗଜପତି'' କିମ୍ବା ''ପାରଳା ମହାରାଜା'' ଉଚ୍ଚାରଣରେ ବର୍ତ୍ତମାନ ସୁଦ୍ଧା ଚିହ୍ନଟ ହୋଇଥିବା ଖେମଣ୍ଡି ରାଜବଂଶର ୨୮ ଜଣ ରାଜାଙ୍କ ମଧ୍ୟରୁ କେବଳ ଜଣେ ମାତ୍ର ରାଜାଙ୍କ ସୁସ୍ପଷ୍ଟ ପ୍ରତିଛବି ସଂସ୍ମରଣକୁ ଚାଲିଆସିଥାଏ ଏବଂ ସେଇ ଜଣକ ହେଉଛନ୍ତି ମହାରାଜା ଶ୍ରୀକୃଷ୍ଣଚନ୍ଦ୍ର ଗଜପତି ।

କୌଣସି ରାଜବଂଶ ପାଇଁ ରାଜା ବା ମହାରାଜା ଶବ୍ଦ ତ ଅତି ସାଧାରଣ । ତେବେ ବାସ୍ତବରେ ଦେଖିବାକୁ ଗଲେ 'ଗଜପତି' ଶବ୍ଦଟି ମଧ୍ୟ ମହାରାଜା କୃଷ୍ଣଚନ୍ଦ୍ରଙ୍କ ପୂର୍ବ ପୁରୁଷଗଣଙ୍କ ମଧ୍ୟରୁ ଅନେକେ ବ୍ୟବହାର କରିଥିଲେ । ତାଙ୍କ ବଂଶର ଏଗାରତମ ଖେମଣ୍ଡି ରାଜା ଚନ୍ଦ୍ରବେତାଳ ଭାନୁଦେବ ମଧ୍ୟ ଜଣାଶୁଣା ଥିଲେ ଚନ୍ଦ୍ରମୌଳି ଗଜପତି ହିସାବରେ । ସେତେବେଳେ ଖେମଣ୍ଡି ରାଜବଂଶ ରାଜୁତି କରୁଥିଲେ ନଗରୀ କଟକ ରୂପେ ପରିଚିତ କଳିଙ୍ଗନଗର ରାଜଧାନୀରୁ । ପୁଣି ସେଠିକାର ଚତୁର୍ଦ୍ଦଶ ଏବଂ ପଞ୍ଚଦଶ ରାଜାଙ୍କର ନାମ ସହିତ 'ଗଜପତି



Ama Odisha pdf (aamaodisha@gmail.com)

ନାରାୟଣ ଦେବ' ଯୁକ୍ତ ହୋଇଥିଲା । ସେଠାରୁ ରାଜଧାନୀ ପୁରୁଣା ପାଟଣାକୁ ସ୍ଥାନାନ୍ତରିତ ହେବା ପରେ ସେଠାରେ ରାଜତ୍ୱ କରୁଥିବା ଷୋଡ଼ଶ ଏବଂ ସପ୍ତଦଶ ରାଜା ମଧ୍ୟ ଯଥାକ୍ରମେ ମୁକୁନ୍ଦ ଗଜପତି ତଥା ଅନନ୍ତ ପଦ୍ମନାଭ ଗଜପତି ନାରାୟଣ ଦେବ ନାମରେ ସ୍ୱୀକୃତ ଥିଲେ । ତତ୍ ପରେପରେ ରାଜଧାନୀ ବର୍ତ୍ତମାନର ପାରଳା ସହରକୁ ସ୍ଥାନାନ୍ତରିତ ହୋଇଥିଲା । ଉଭୟ ରାଜଧାନୀରୁ କିଛିକିଛି କାଳ ରାଜତ୍ୱ କରିଥିବା ବୀର ପ୍ରତାପରୁଦ୍ର ନାରାୟଣ ଦେବଙ୍କଠାରୁ ଆରମ୍ଭ କରି ସେଇ ସିଂହାସନରେ ଶେଷ ରାଜା କୃଷ୍ଣଚନ୍ଦ୍ରଙ୍କ ପର୍ଯ୍ୟନ୍ତ ସମସ୍ତ ସାତଜଣ ରାଜାଙ୍କ ନାମ ସହିତ 'ଗଜପତି' ପଦଟି ଯୁକ୍ତ ହୋଇଥିଲା । ତେବେ ବାସ୍ତବରେ 'ଗଜପତି' ଶବ୍ଦଟି ସଂପୃକ୍ତ ରାଜନ୍ୟବର୍ଗଙ୍କ ନାମର କେବଳ ଅଂଶ ବିଶେଷ ଥିଲା । ହେଲେ ସେହି ପଦଟି ସତେ ଯେମିତି ଏକ ପଦବୀରେ ପରିଣତ ହୋଇ ଯାଇଥିଲା ମହାରାଜା କୃଷ୍ଣଚନ୍ଦ୍ରଙ୍କ ପାଇଁ । କେବଳ ଖେମଣ୍ଡି ରାଜ୍ୟରେ କାହିଁକି, ସାରା ଓଡ଼ିଶାର ଲୋକେ ଏକ ସମ୍ମାନାସ୍ପଦ ଉପାଧି ଭଳି 'ଗଜପତି' ଶବ୍ଦଟିକୁ ବ୍ୟବହାର କରୁଥିଲେ ମହାରାଜା କୃଷ୍ଣଚନ୍ଦ୍ରଙ୍କ ପାଇଁ । ତାହାଙ୍କୁ ସ୍ମରଣ କରିବାପାଇଁ ପାରଳା ଗଜପତି ହିଁ ଯଥେଷ୍ଟ ହେଉଥିଲା ଏବଂ ଆଜି ମଧ୍ୟ ସେ ସେହିଭଳି ଭାବରେ ହିଁ ଉତ୍କଳୀୟ ଜନମାନସରେ ପ୍ରତିଷ୍ଠିତ ।

ବାସ୍ତବରେ ଶ୍ରୀକୃଷ୍ଣ ଚନ୍ଦ୍ର ଗଜପତି ଥିଲେ ଗଙ୍ଗବଂଶୀ ସ୍ୱାଭିମାନର ପ୍ରତୀକ । ସେହି ବଂଶର ରାଜାଗଣ ତ୍ରିକଳିଙ୍ଗ ସାମ୍ରାଜ୍ୟ ଗଠନକରି ପୁରାତନ କଳିଙ୍ଗ ରାଜ୍ୟକୁ କେନ୍ଦ୍ର ରୂପେ ନେଇ ଦୁଇଟି ପର୍ଯ୍ୟାୟରେ କଳିଙ୍ଗ ନଗର ରାଜଧାନୀରୁ ରାଜ୍ୟଶାସନ କରିଥିଲେ ଦୀର୍ଘକାଳ । ପ୍ରଥମ ପର୍ଯ୍ୟାୟରେ ସେମାନେ ଯଦିବା ୪୯୮ ମସିହାରୁ କଳିଙ୍ଗ ଶାସନ ଆରମ୍ଭ କରିଥିଲେ ତଥାପି ପ୍ରାୟ ପ୍ରଥମ ୨୦/୨୫ ବର୍ଷ କାଳ ଯୁଦ୍ଧଜନିତ ଅସ୍ଥିରତା ଭିତରେ ରହିବା ପରେ ପ୍ରାୟ ୫୨୦ ମସିହାରୁ ୮୧୦ ମସିହା ପର୍ଯ୍ୟନ୍ତ କଳିଙ୍ଗର ଶାସନକଳକୁ ଅକ୍ତିଆର କରିପାରିଥିଲେ । ତତ୍ପରେ ଦକ୍ଷିଣ କୋଶଳର କେଶରୀ ରାଜାଗଣଙ୍କ ହାତକୁ ଚାଲିଯାଇଥିଲା କଳିଙ୍ଗ/ତ୍ରିକଳିଙ୍ଗର ଶାସନ । କିନ୍ତୁ କିଛି କାଳର ନୀରବତା ପରେ ପୁଣି ୮୯୪ ମସିହାରୁ ସେଇ ଗଙ୍ଗବଂଶୀ ରାଜାଗଣ ପୁଣି ଥରେ କ୍ଷମତା ଅପହରଣ କରି ଆଣିଥିଲେ ସେମାନଙ୍କଠାରୁ । ତତ୍ପରଠାରୁ ନିରଙ୍କୁଶ ଭାବରେ ସେମାନେ କେବଳ ଶାସନ କରିନଥିଲେ, ତାହାର ଚତୁର୍ଦ୍ଦିଗରୁ ବିସ୍ତୀର୍ଣ୍ଣ ଅଞ୍ଚଳ ଜୟକରି କଳିଙ୍ଗ ସାମ୍ରାଜ୍ୟ ମଧ୍ୟ ଗଠନ କରିଥିଲେ; ସମଗ୍ର ଭାରତର ପୂର୍ବାଞ୍ଚଳ ଓ ଦକ୍ଷିଣାଞ୍ଚଳର ପ୍ରତାପଶାଳୀ ଶାସକ ରୂପେ ପରିଗଣିତ ହୋଇଥିଲେ । ବିଶେଷକରି ସେହି ବଂଶର ସର୍ବାଧିକ ବଳଶାଳୀ ରାଜା ହିସାବରେ ଚୋଡ଼ଗଙ୍ଗଦେବଙ୍କ ନାମ ସହିତ ମହାରାଜାଧିରାଜ / ତ୍ରିକଳିଙ୍ଗାଧିପତି / ରାଜପରମେଶ୍ୱର ଇତ୍ୟାଦି ଉପାଧିମାନ ଯୁକ୍ତ ହେଉଥିଲା ।

ସେହି ଭାରତ ବିଖ୍ୟାତ ଗଙ୍ଗବଂଶର ଉତ୍ପତ୍ତି କାହିଁ କେଉଁ ସୁଦୂର ଅତୀତରେ ଗଙ୍ଗାନଦୀ କୂଳରୁ ହୋଇଥିଲା । ସମ୍ଭବତଃ ସେଇଥିପାଇଁ ହିଁ ସେହି ବଂଶର ସେହିଭଳି ନାମକରଣ ।



Ama Odisha pdf (aamaodisha@gmail.com)

ପୁଣ୍ୟତୋୟା ଗଙ୍ଗାକୂଳରେ, ଅତି ପୁରାତନ କାଳରେ ଗଙ୍ଗା ନାମରେ ଏକ ଗୋଷ୍ଠୀର ବ୍ୟକ୍ତିବୃନ୍ଦ ବସବାସ କରି ରହୁଥିଲେ । ସେମାନେ ଜାତିରେ ଥିଲେ ବ୍ରାହ୍ମଣ । ସମୟର ତାଳେତାଳେ ଉତ୍ତରରେ ଗଙ୍ଗାନଦୀ କୂଳରୁ ଦକ୍ଷିଣରେ ଦାମୋଦର ନଦୀ ପର୍ଯ୍ୟନ୍ତ ଏବଂ ପୂର୍ବରେ ସମୁଦ୍ର ଉପକୂଳବର୍ତ୍ତୀ ଇଲାକାରୁ ଆରମ୍ଭ କରି ପଶ୍ଚିମରେ ମଗଧରାଜ୍ୟ ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳ ହୋଇଥିଲା ସେମାନଙ୍କର ବାସସ୍ଥଳୀ । ସେମାନଙ୍କର ସେହି ସ୍ଥିତି ଥିଲା ଖ୍ରୀ.ପୂ. ୩୦୦ ଶତାବ୍ଦୀ ବେଳକୁ ପରିବ୍ରାଜକ ମେଘାସ୍ଥିନିସ୍ ଭାରତ ଭ୍ରମଣରେ ଆସିଥିବା ବେଳେ । ହେଲେ ତତ୍‌ପରବର୍ତ୍ତୀ ପରିବ୍ରାଜକ ପ୍ଲିନିଂଙ୍କ ଖ୍ରୀ. ୭୭ର ବିବରଣୀ ଅନୁଯାୟୀ ସେମାନେ କାଳକ୍ରମେ ପୂରାପୂରି ଭାବେ ଭାରତର ଦକ୍ଷିଣାଞ୍ଚଳକୁ ଚାଲି ଯାଇଥିଲେ । ବିଶାଖାପାଟଣାର ଦକ୍ଷିଣାଞ୍ଚଳଗୁଡ଼ିକରେ ଆପଣାର ବସତିମାନ ସ୍ଥାପନ କରିଥିଲେ ।

କାଳଚକ୍ରରେ ସେହି ଗଙ୍ଗ ଜାତି ବିଭିନ୍ନ ଭାଗରେ ବିଭକ୍ତ ହୋଇଯାଇଥିଲେ ସ୍ୱାଭାବିକ କାରଣରୁ । ହେଲେ ଇତିହାସରେ ମାତ୍ର ଦୁଇଟି ଶାଖାର ବିବରଣୀ ପ୍ରାପ୍ତ ହୋଇଥାଏ । ଗୋଟିଏ ଶାଖା ପଞ୍ଚମ ଶତାବ୍ଦୀର ପ୍ରଥମ ଭାଗରେ ମହୀଶୂରର ପୁନ୍ନାଡ-ପନ୍ନାଡ୍ ଅଞ୍ଚଳରେ ରାଜୁତି କରିବା ବେଳେ ଅନ୍ୟ ଶାଖାଟି ବର୍ତ୍ତମାନ ଓଡ଼ିଶାର ତ୍ରିକଳିଙ୍ଗ ଅଞ୍ଚଳରେ ଶାସନକଳ ଅକ୍ତିଆର କରିଥିବାର ପ୍ରମାଣ ମିଳେ ସେଇ ଶତାବ୍ଦୀର ଶେଷ ଭାଗରେ । ମହୀଶୂର ଶାଖା ଜାହ୍ନବୀୟ ପଶ୍ଚିମାଞ୍ଚଳ ଗଙ୍ଗ ହିସାବରେ ଇତିହାସରେ ଗୃହୀତ ହୋଇଥିବା ବେଳେ ସେମାନଙ୍କ ଉତ୍କଳୀୟ ବଂଶଧରଗଣ ପରିଚିତ ହୋଇଥିଲେ ପୂର୍ବାଞ୍ଚଳ ଗଙ୍ଗ ଶାଖା ହିସାବରେ ।

ପ୍ରଥମାବସ୍ଥାରେ ଗଙ୍ଗମାନେ ବ୍ରାହ୍ମଣବଂଶୀୟ ଥିଲେ ସୁଦ୍ଧା ତତ୍‌କାଳୀନ ପରିସ୍ଥିତିରେ ଜାତିପ୍ରଥା ନେଇ ବିଶେଷ ଦୃଢ଼ ତଥା ଟାଳଟୁଳ ନୀତି ସମାଜରେ ପ୍ରଚଳିତ ନଥିଲା । ସମ୍ଭବତଃ ସେହି କାରଣରୁ ସେମାନେ କାଳକ୍ରମେ କ୍ଷତ୍ରିୟ ବଂଶରେ ପରିଣତ ହୋଇଯାଇଥିଲେ । ସ୍ପଷ୍ଟ ଅନୁମେୟ ଯେ ସେମାନେ ସେମାନଙ୍କ ଆଦିବାସସ୍ଥାନ ଗଙ୍ଗାନଦୀକୂଳରୁ ଦାକ୍ଷିଣାତ୍ୟର ସୁଦୂର ମହୀଶୂର ଅଞ୍ଚଳକୁ ଯାତ୍ରାକରି ସେଠାରୁ ଗୋଟିଏ ଶାଖା ବର୍ତ୍ତମାନର ଓଡ଼ିଶା ଅଞ୍ଚଳକୁ ଆସିଥିଲେ । ଏହାକୁ ଅନେକ ଐତିହାସିକ ସ୍ୱୀକୃତି ଦେଉଥିଲେ ସୁଦ୍ଧା ଅନ୍ୟ କେତେକଙ୍କ ମତରେ ବାସ୍ତବରେ ଉଭୟ ଗଙ୍ଗଶାଖା ପରସ୍ପରଠାରୁ ପୃଥକ୍ ।

ପଞ୍ଚମ ଶତାବ୍ଦୀର ଶେଷ ଭାଗରେ କଳିଙ୍ଗରେ ରାଜତ୍ୱ କରୁଥିଲେ ଶୈଳୋଦ୍‌ଭବ ରାଜନ୍ୟବର୍ଗ । ହେଲେ ପଡ଼ୋଶୀ ଭକଟକ ରାଜ୍ୟର ରାଜା ହରିସେନାଙ୍କ ସହିତ ସେମାନଙ୍କର ଶତ୍ରୁତା ଲାଗି ରହିଥିଲା । ତେଣୁ ହରିସେନା ପଡ଼ୋଶୀ ରାଜ୍ୟରେ ତାଙ୍କର ଶତ୍ରୁଗଣଙ୍କୁ ହଟାଇ ନିଜପାଇଁ ସମର୍ଥନ ଯୋଗାଡ଼ ଉଦ୍ଦେଶ୍ୟରେ ଗଙ୍ଗବଂଶୀ ରାଜାଗଣଙ୍କୁ ସେଠାରେ ପ୍ରତିଷ୍ଠିତ କରାଇବାରେ ସଫଳକାମ ହୋଇଥିଲେ । ତାହାହିଁ ଥିଲା କଳିଙ୍ଗରେ ଗଙ୍ଗ ରାଜତ୍ୱର ପ୍ରାରମ୍ଭ । ସେହିଭଳି ଭାବରେ ଗଙ୍ଗରାଜତ୍ୱର ପ୍ରତିଷ୍ଠାର ପ୍ରାରମ୍ଭ ନେଇ ଓଡ଼ିଶା ଇତିହାସକାର ଡକ୍ଟର ମହତାବ



Ama Odisha pdf (aamaodisha@gmail.com)

ଭାରତର ଅନ୍ୟତମ ବିଶିଷ୍ଟ ଇତିହାସବିଦ୍ ଭି.ଭି. ମିରାଶୀ ତଥା ବି.ଭି. କେ. ରାଓଙ୍କ ସହିତ ମତ ମିଳାଇ ୪୯୮ ଖ୍ରୀଷ୍ଟାବ୍ଦକୁ ହିଁ ଗ୍ରହଣ କରିଥିବା ବେଳେ ଅନ୍ୟତମ ଉତ୍କଳୀୟ ଐତିହାସିକ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଏହାକୁ ୪୯୬ ବୋଲି ଦୃଢ଼ ମତ ପୋଷଣ କରନ୍ତି । ସେ ଯାହାହେଉ, ସେହି ସମୟରେ ହିଁ ହରିସେନାଙ୍କ ସହାୟତାକ୍ରମେ କଳିଙ୍ଗରେ ଗଙ୍ଗବଂଶର ଉତ୍ଥାନ ସହିତ ନୂତନ କରି ତ୍ରିକଳିଙ୍ଗ ରାଜ୍ୟ ମଧ୍ୟ ଗଠିତ ହୋଇଥିଲା । ରାଜଧାନୀ ହୋଇଥିଲା 'ଦନ୍ତପୁର' । ତାହା ବର୍ତ୍ତମାନର ଆନ୍ଧ୍ରପ୍ରଦେଶାନ୍ତର୍ଗତ ଚିକାକୋଲ ରେଳଷ୍ଟେସନ୍ ନିକଟବର୍ତ୍ତୀ ଏରେଣ୍ଡାପଲ୍ଲୀ ତଥା ଅମୁଦଲବାଲ୍‌ସା ପାର୍ଶ୍ୱସ୍ଥ 'ଦନ୍ତଭରପୁକୋଟା' ।

ଅନେକ ଉତ୍ଥାନ ପତନ ଭିତରେ ପଡ଼ୋଶୀ ରାଜ୍ୟଗୁଡ଼ିକର ବାରମ୍ବାର ଆକ୍ରମଣ ତଥା ପ୍ରତି ଆକ୍ରମଣକୁ ପ୍ରତିହତ କରି ଗଙ୍ଗାରାଜାଗଣ ତ୍ରିକଳିଙ୍ଗର ଶାସନ କ୍ଷମତା ନିଜ ଦଖଲରେ ହିଁ ରଖିବାରେ ସମର୍ଥ ହୋଇଥିଲେ । ରାଜଧାନୀ ଦନ୍ତପୁରରୁ କଳିଙ୍ଗନଗରକୁ ସ୍ଥାନାନ୍ତର ହୋଇଥିଲା । ବର୍ତ୍ତମାନର ବଂଶଧାରା ନଦୀ ଉପକୂଳବର୍ତ୍ତୀ ମୁଖଲିଙ୍ଗମ୍ ଓ ନଗରୀ କଟକ ମଧ୍ୟବର୍ତ୍ତୀ ଅଞ୍ଚଳ ହିଁ ଥିଲା କଳିଙ୍ଗ ନଗର । ସେଠାରୁ ପ୍ରଥମ ପାଦର ଗଙ୍ଗରାଜାଗଣ ପ୍ରାୟ ତିନିଶହ ବର୍ଷକାଳ (ପ୍ରାୟ ୮୧୦ ମସିହା ପର୍ଯ୍ୟନ୍ତ) ତ୍ରିକଳିଙ୍ଗ ନାମରେ ନାମିତ ସମଗ୍ର କଳିଙ୍ଗ ଅଞ୍ଚଳକୁ ରାଜତ୍ୱ କରିଥିଲେ । ସେଇ ପ୍ରଥମ ପାଦର ଶେଷରାଜା ଚତୁର୍ଥ ଦେବେନ୍ଦ୍ର ବର୍ମା (୮୦୧-୮୧୦)ଙ୍କ ପରେପରେ ତ୍ରିକଳିଙ୍ଗର ରାଜନୈତିକ ପଟ୍ଟଭୂମିରୁ ଗଙ୍ଗରାଜତ୍ୱ କିଛିକାଳପାଇଁ ଅପସାରିତ ହୋଇଯାଇଥିଲା । ତାର ଏକ ମୁଖ୍ୟ କାରଣ ଥିଲା ସେତେବେଳେ ଦକ୍ଷିଣ କୋଶଳରେ ରାଜତ୍ୱ କରୁଥିବା କେଶରୀବଂଶୀୟ ରାଜନ୍ୟବର୍ଗଙ୍କ କ୍ଷମତା ବୃଦ୍ଧି । ଆପାତତଃ ସେହି ବଂଶର ଯଯାତିକେଶରୀ ସହଜରେ ତ୍ରିକଳିଙ୍ଗ ଅଧିକାର କରି 'ତ୍ରିକଳିଙ୍ଗାଧିପତି' ଉପାଧିରେ ଭୂଷିତ ହୋଇଥିଲେ ଏବଂ ପରେପରେ ତାହାଙ୍କର ଉତ୍ତରାଧିକାରୀଗଣ ମଧ୍ୟ ।

ହେଲେ ସେହି ଶତାବ୍ଦୀର ଶେଷ ପାଦରେ ଗଙ୍ଗରାଜା ବଜ୍ରହସ୍ତା- ପ୍ରଥମ (୮୯୪-୯୩୮) ପୁଣି ଥରେ କେଶରୀ ରାଜାଙ୍କଠାରୁ କଳିଙ୍ଗ ଅଞ୍ଚଳ ଦଖଲ କରିନେଇଥିଲେ । ଏବଂ ସେଇ ପୁରାତନ କଳିଙ୍ଗନଗରରୁ ହିଁ ଶାସନ କାର୍ଯ୍ୟ ପରିଚାଳନା କରୁଥିଲେ । ସେତିକି ବେଳକୁ, ପ୍ରଥମ ପାଦର ଗଙ୍ଗ ରାଜାମାନଙ୍କ ଅପସାରଣ ପରେ ପରେ, କଳିଙ୍ଗ ଅଞ୍ଚଳଟି ପାଞ୍ଚ ଭାଗରେ ବିଭକ୍ତ ହୋଇଯାଇଥିଲା ଏବଂ ଗଙ୍ଗରାଜାଗଣ ମଧ୍ୟ ପାଞ୍ଚ ଭାଗରେ ବିଭାଜିତ ହୋଇ ସେଇ ବିଭିନ୍ନ ଅଞ୍ଚଳରେ ଶାସନ କରିଥିଲେ ଏବଂ ସମ୍ଭବତଃ କେଶରୀ ରାଜାଗଣଙ୍କ ଅଧୀନତା ସ୍ୱୀକାର କରିଥିଲେ ସେମାନେ । ଗଙ୍ଗରାଜା ବଜ୍ରହସ୍ତା କଳିଙ୍ଗ ଅଧିକାର କରିବା ପରେ ପରେ ସେଇ ବିଭାଜିତ ଅଞ୍ଚଳଗୁଡ଼ିକର ଏକୀକରଣ ପାଇଁ ପୁଣି ଉଦ୍ୟମ ଆରମ୍ଭ କରିଥିଲେ । ତାଙ୍କରି ଶାସନକାଳ ପରେ ମଧ୍ୟ ସେଇ ଉଦ୍ୟମ ଜାରି ରହିଥିଲା ଏବଂ ଇତିହାସ ସୃଷ୍ଟିକାରୀ ମହାପରାକ୍ରମୀ ଅନନ୍ତ ବର୍ମା ଚୋଳ ଗଙ୍ଗଦେବ (୧୦୭୮-୧୧୪୭)ଙ୍କ ଅମଳରେ ବିଶାଳ କଳିଙ୍ଗ ସାମ୍ରାଜ୍ୟ ଗଠିତ



Ama Odisha pdf (aamaodisha@gmail.com)

ହୋଇଥିଲା । ତାହାର ବିସ୍ତୃତି ଥିଲା ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ । ସେ ଉତ୍କଳକୁ ଜୟ କରିବା (୧୧୧୦-୧୧୧୨) ପରେ ପରେ ଉଭୟ ରାଜ୍ୟର ମିଶ୍ରଣ ହୋଇଯାଇଥିଲା ।

ଚୋଳଗଙ୍ଗଦେବଙ୍କ ପ୍ରଥମ ରାଜଧାନୀ ଥିଲା କଳିଙ୍ଗନଗର / ମୁଖଲିଙ୍ଗମ୍ । ହେଲେ ପରେ ପରେ ତାଙ୍କରି ଅଧିକୃତ ବିଶାଳ ଅଞ୍ଚଳର ସୁଶାସନପାଇଁ ୧୧୩୫ ମସିହାରେ ଆପଣାର ରାଜଧାନୀକୁ ସ୍ଥାନାନ୍ତର କରିଥିଲେ ବିଡ଼ାନାସୀ କଟକକୁ । ତେବେ କଳିଙ୍ଗ ନଗର ମଧ୍ୟ ଏକ ଶାସନକେନ୍ଦ୍ର ରୂପେ ତାଙ୍କରି ଅଧୀନରେ ହିଁ ରହିଥିଲା । ଚୋଳଗଙ୍ଗଦେବ କିନ୍ତୁ କଟକରେ ରହି ଶାସନ କାର୍ଯ୍ୟ ଚଳାଇଥିଲେ ଏବଂ ଏହା ଗଙ୍ଗ କଟକ ନାମରେ ପ୍ରସିଦ୍ଧି ଲାଭ କରିଥିଲା । ଏହି ଶାସନକେନ୍ଦ୍ରର ଗଙ୍ଗ ରାଜାମାନେ ଦୀର୍ଘ ଚଉଦ ପୁରୁଷ ପର୍ଯ୍ୟନ୍ତ ରାଜ୍ୟଶାସନ କରିଥିଲେ । ସେହି ସମୟରୁ ୧୯୪୭ ପର୍ଯ୍ୟନ୍ତ କଟକ ହିଁ ଓଡ଼ିଶାର ରାଜଧାନୀ ରୂପେ ରହିଆସିଥିଲା ।

୧୧୩୫ ମସିହାରେ ଗଙ୍ଗକଟକରୁ ବିଶାଳ ଉତ୍କଳ (କଳିଙ୍ଗ ସାମ୍ରାଜ୍ୟ)ର ଶାସନ ଆରମ୍ଭ କରିଥିବା ଚୋଳଗଙ୍ଗଦେବଙ୍କଠାରୁ ଆରମ୍ଭ କରି ଚତୁର୍ଥ ଭାନୁଦେବଙ୍କ ପର୍ଯ୍ୟନ୍ତ ପ୍ରାୟ ତିନିଶହ ବର୍ଷ ଧରି ନିରଙ୍କୁଶ ଭାବେ ଶାସନ ଚଳାଇ ଆସିଥିଲେ ଦ୍ୱିତୀୟ ପାଦର ଗଙ୍ଗରାଜାଗଣ । ଭାନୁଦେବଙ୍କ ରାଉତ ବା ସେନାଧିକାରୀ ରୂପେ କାର୍ଯ୍ୟ କରୁଥିବା କପିଳେନ୍ଦ୍ରଦେବ ୧୪୩୬ରେ ଉତ୍କଳର ରାଜସିଂହାସନ ଅଧିକାର କରି ଏଠାରେ ସୂର୍ଯ୍ୟବଂଶ ପ୍ରତିଷ୍ଠା କରିଥିଲେ ଏବଂ ଭାନୁଦେବ ତାହାଙ୍କର ଶେଷଜୀବନ ଖେମଣ୍ଡି ରାଜବଂଶ ଅଧୀନରେ ଥିବା 'ବାରାଣସୀ'ରେ ଅତିବାହିତ କରିଥିଲେ । ସେହି ବାରାଣସୀ ଆଜିକାର ପାରଳାଖେମଣ୍ଡି ସବ୍‌ଡିଭିଜନ୍ ଅନ୍ତର୍ଗତ କାଶିନଗର ଅଞ୍ଚଳ ।

କଳିଙ୍ଗ / ତ୍ରିକଳିଙ୍ଗ ରାଜ୍ୟ ଉଭୟ ପାଦରେ, ପ୍ରାୟ ସାଢ଼େ ଆଠଶହ ବର୍ଷ ଶାସନ କରିଥିବା ଗଙ୍ଗରାଜାଗଣଙ୍କ ମଧ୍ୟରୁ, ସମ୍ଭବତଃ ପ୍ରଥମପାଦର କୌଣସି ରାଜାଙ୍କ ଅମଳରେ ସୁନିଆଁ ଦିନଠାରୁ ସେମାନଙ୍କ ରାଜତ୍ୱର ନୂତନ ବର୍ଷ ଗଣନା ପ୍ରଥା ଆରମ୍ଭ କରିଥିଲେ । ତାହା ଆଜି ପର୍ଯ୍ୟନ୍ତ ଅବ୍ୟାହତ ରହିଛି ଉତ୍କଳୀୟ ଗଜପତି ରୂପେ ସ୍ୱୀକୃତ ପୁରୀ ରାଜବଂଶରେ । ସେହିଦିନରୁ ହିଁ ଓଡ଼ିଆମାନଙ୍କର ନୂତନବର୍ଷ ପାଳିତ ହୋଇଆସୁଛି ଆଜି ପର୍ଯ୍ୟନ୍ତ ।

ତେବେ ଉତ୍କଳରେ ସୂର୍ଯ୍ୟବଂଶର ପ୍ରତିଷ୍ଠା ସଙ୍ଗେସଙ୍ଗେ ଗଙ୍ଗକଟକରୁ ସବୁଦିନପାଇଁ ଗଙ୍ଗବଂଶ ଲୋପ ପାଇଯାଇଥିଲା । ହେଲେ ସେହି ରାଜନ୍ୟବର୍ଗଙ୍କ ଦ୍ୱାରା ଐତିହାସିକ ଦୁର୍ଗ ବାରବାଟୀ ଏବଂ ଆଧୁନିକ ଶ୍ରୀମନ୍ଦିର ସମେତ କୋଣାର୍କର ସୂର୍ଯ୍ୟମନ୍ଦିର, ରେମୁଣାର କ୍ଷୀରଚୋରା ଗୋପୀନାଥ ପ୍ରଭୃତି; ରହିଯାଇଥିଲା ମନ୍ଦିରମାଳିନୀ ଓଡ଼ିଶାରେ ଅନେକ ଅନେକ ଅବିସ୍ମରଣୀୟ କୀର୍ତ୍ତି ।

ସେଇ କୀର୍ତ୍ତିମାନ୍ ରାଜନ୍ୟବର୍ଗଙ୍କ ଜଣେ ବଂଶଧର ହେଉଛନ୍ତି ପାରଳା ଗଜପତି କୃଷ୍ଣଚନ୍ଦ୍ର ଦେବ; ସେଇମାନଙ୍କର ସ୍ରୋତସ୍ୱତୀ ନଦୀର ଧାରଟିଏ । ସେ ହେଉଛନ୍ତି ସେଇ ରାଜନ୍ୟବର୍ଗଙ୍କ ସିଧାସଳଖ ଆତ୍ମଜ । ତାଙ୍କ ନିଜ ଭାଷାରେ 'ଗଙ୍ଗବଂଶର ପ୍ରଥମ ନରପତିଗଣ, ପରବର୍ତ୍ତୀ



Ama Odisha pdf (aamaodisha@gmail.com)

ନରପତିଗଣ ଏବଂ ପୁରୀର ଗଜପତିମାନଙ୍କର ଶକ୍ତିଶାଳୀ ବାହୁଛାୟା ତଳେ ଏହି ବିରାଟ ଭୂଖଣ୍ଡର ଅଧିବାସୀଗଣଙ୍କର ଭାଗ୍ୟ ପ୍ରାୟ ଷଷ୍ଠ ଶତାବ୍ଦୀରୁ ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ ନିୟନ୍ତ୍ରିତ ହୋଇଥିଲା । ଏହି ବିରାଟ ସାମ୍ରାଜ୍ୟ ମଧ୍ୟରୁ ଯେଉଁଭଳି ତ୍ରିକଳିଙ୍ଗ; ଉତ୍କଳିଙ୍ଗ (ଉତ୍କଳ) ଏବଂ ମଧ୍ୟ କଳିଙ୍ଗ ଜନ୍ମଲାଭ କରିଥିଲା, ଠିକ୍ ସେହିଭଳି ମଧ୍ୟ ଏହି ଖେମଣ୍ଡି ରାଜ୍ୟ ଆମ ଦେଶର ଇତିହାସର ପ୍ରାରମ୍ଭ ଶତାବ୍ଦୀରେ ଜନ୍ମଲାଭ କଲା । ଶ୍ରୀକାକୁଳମ୍ ସରକାର କଳିଙ୍ଗ ନାମରେ ଅଭିହିତ ଥିଲା । ମୁଖଲିଙ୍ଗମ୍ ଏକ ସମୟରେ କଳିଙ୍ଗ ସାମ୍ରାଜ୍ୟର ରାଜଧାନୀ ଥିଲା ଏବଂ ତାହା ବରାବର ପାରଳାଖେମୁଣ୍ଡି ସମସ୍ଥାନର ଅନ୍ତର୍ଗତ ରହିଥିଲା । ତାହା ପ୍ରାୟ ଦଶମରୁ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ କଳିଙ୍ଗନଗରମ୍ ନାମରେ ପ୍ରସିଦ୍ଧ ଥିଲା । ସେଠାରେ ପ୍ରାୟ ଦଶମରୁ ଦ୍ୱାଦଶ ଶତାବ୍ଦୀ ମଧ୍ୟରେ ନିର୍ମିତ ଦୁଇଟି ମନ୍ଦିର ଆଜି ମଧ୍ୟ ତିଷ୍ଠି ରହିଛି । ସେହି ମନ୍ଦିର ଦୁଇଟିର ପ୍ରାଚୀର ଗାତ୍ରରେ କେତେକ ଓଡ଼ିଆ ଲେଖା ଦେଖିବାକୁ ମିଳେ । ପ୍ରାଚୀନ ଗଙ୍ଗବଂଶର କୀର୍ତ୍ତି ବିଷୟରେ ସେଥିରେ ଉଲ୍ଲେଖ ଅଛି । ସେମାନେ ଓଡ଼ିଶା ଜୟ କରିବା ପରେ ସେହି ବଂଶର ଶେଷ ପ୍ରତିନିଧିମାନେ ତାଙ୍କ ରାଜଧାନୀ ପୁରୀକୁ ସ୍ଥାନାନ୍ତରିତ କରିଥିଲେ । ତାହାପରେ ସେମାନେ ପ୍ରସିଦ୍ଧ ଗଜପତି ରାଜା ନାମରେ ଅଭିହିତ ହେଲେ । ଖେମୁଣ୍ଡି ରାଜବଂଶର ଶାସକଗଣ ଏହି ଗଜପତି ରାଜାମାନଙ୍କର ସିଧାସଳଖ ଆତ୍ମଜ । ବୀରଶ୍ରୀ ଗୌଡ଼େଶ୍ୱର କପିଳେଶ୍ୱର ଦେବ, ଅନନ୍ତବର୍ମା ଚୋଡ଼ଗଙ୍ଗଦେବ, ବଜ୍ରହସ୍ତ ଦେବ, ପ୍ରତାପରୁଦ୍ର ଦେବ, ବିଜୟ ନରସିଂହ ଦେବ ପ୍ରମୁଖ ଖେମୁଣ୍ଡି ରାଜବଂଶର ପ୍ରସିଦ୍ଧ ପୂର୍ବପୁରୁଷଙ୍କର ନାମାବଳୀ ।'' (ମୋରାଜ୍ୟ)

ରାଜନୀତିକ ତଥା ସାଂସ୍କୃତିକ ଦୃଷ୍ଟିରୁ ଗଙ୍ଗରାଜାଗଣ ଉତ୍କଳୀୟ ଭାବଧାରାକୁ ସଂପୂର୍ଣ୍ଣ ଅସ୍ଥିମଜ୍ଜାଗତ କରାଇ ଉତ୍କଳର ତଥା ଉତ୍କଳୀୟମାନଙ୍କର ଏକୀକରଣ କରାଇଥିଲେ କହିଲେ ଅତ୍ୟୁକ୍ତି ହେବନାହିଁ । ଉତ୍କଳକୁ ମନ୍ଦିରମାଳିନୀ କରାଇବା ସଙ୍ଗେସଙ୍ଗେ ବିଭିନ୍ନ ପ୍ରାନ୍ତରରେ ସାଂସ୍କୃତିକ କେନ୍ଦ୍ରମାନ ପ୍ରତିଷ୍ଠାକରି ଜନଗଣଙ୍କ ମଧ୍ୟରେ ଐକ୍ୟ ସ୍ଥାପନପାଇଁ ସେମାନଙ୍କର ଐକାନ୍ତିକ ଉଦ୍ୟମ ବିଶେଷ ପ୍ରଶଂସନୀୟ । ଓଡ଼ିଶା ଇତିହାସରେ ଗଙ୍ଗ ଶାସନକାଳକୁ ହିଁ ସୁବର୍ଣ୍ଣ ଯୁଗ ହିସାବରେ ଗ୍ରହଣ କରାଯାଇପାରେ । ରାଜନୈତିକ ପ୍ରେକ୍ଷାପଟରୁ ସେମାନେ ସମୟକ୍ରମେ ଅପସରି ଯାଇଥିଲେ ସୁଦ୍ଧା ସେଇ ଗଙ୍ଗବଂଶାବତଂସଗଣ ଆଧୁନିକ ଯୁଗରେ ସୁଦ୍ଧା ଓଡ଼ିଆ ଜାତିର ଜାତୀୟ ଏକତା ରକ୍ଷାଦିଗରେ ଥିଲେ ଅଗ୍ରଣୀ । ତାହାର ଜ୍ୱଳନ୍ତ ଉଦାହରଣ ହେଉଛନ୍ତି ପାରଳା ମହାରାଜା ଶ୍ରୀକୃଷ୍ଣଚନ୍ଦ୍ର ଗଜପତି । ସ୍ୱତନ୍ତ୍ର ଓଡ଼ିଶାର ଅନ୍ୟତମ ପ୍ରତିଷ୍ଠାତା ରୂପେ ତଥା ଆଧୁନିକ ସମୃଦ୍ଧ ଓଡ଼ିଶା ଗଠନପାଇଁ ଉଦ୍ୟମ ଯୋଗୁଁ ମହାରାଜାଙ୍କର ସ୍ୱର୍ଣ୍ଣିମ ସ୍ୱାକ୍ଷର ଜ୍ୱଳନ୍ତ ରହିଥିବ । ବିଶିଷ୍ଟ ଗବେଷକ ଡକ୍ଟର ବେଣୀମାଧବ ପାଢ଼ୀଙ୍କ ଭାଷାରେ 'ସେ କେବଳ ଜଣେ ରାଜା ନଥିଲେ ସେ ଥିଲେ ଜଣେ ଅପୂର୍ବ ଜନନାୟକ, ସୁଦକ୍ଷ ପ୍ରଶାସକ, ଅସାଧାରଣ ଶିକ୍ଷାପ୍ରେମୀ, ବିଚକ୍ଷଣ ଦୂରଦ୍ରଷ୍ଟା, ସର୍ବୋପରି ଜଣେ ନିଷ୍ପାପର ସଂସ୍କାରକ । ସେ ଥିଲେ ବାସ୍ତବ ଅର୍ଥରେ ଜଣେ ଗଜପତି ।



Ama Odisha pdf (aamaodisha@gmail.com)

ଗଜପତି ସୁଲଭ ଅହଂକାର, ବଂଶପରମ୍ପରାଗତ ସ୍ୱାଭିମାନ ତାଙ୍କର ପ୍ରତ୍ୟେକ ଧମନୀରେ ପ୍ରବାହିତ ହେଉଥିଲା । ତାଙ୍କର ରାଜସୁଲଭ ସଦ୍‌ଗୁଣାବଳୀ, ମହାତ୍ମା ସୁଲଭ ଉନ୍ନତ ଚରିତ୍ର, ଜାତୀୟତା ସୁଲଭ କାର୍ଯ୍ୟାବଳୀ ଦେଖିଲେ ମନେହୁଏ କୃଷ୍ଣଚନ୍ଦ୍ର ଗଜପତି ଜଣେ ବ୍ୟକ୍ତି ନଥିଲେ, ସେ ଥିଲେ ଏକ ବିରାଟ ଅନୁଷ୍ଠାନ ।'' ଗଜପତି କହିଲେ, ''ଲୋକେ ବୁଝନ୍ତି ପ୍ରଥମେ ଓଡ଼ିଶାର ଠାକୁରରାଜା ପୁରୀର ଗଜପତି; ଦ୍ୱିତୀୟରେ ପାରଳାର ରାଜା କୃଷ୍ଣଚନ୍ଦ୍ର ଗଜପତି ।''

ସେହି କୃଷ୍ଣଚନ୍ଦ୍ର ଗଜପତି ଥିଲେ ଚନ୍ଦ୍ରବଂଶୀୟ ତଥା ଆତ୍ରେୟ ଗୋତ୍ରୀ ମହାରାଜା ଏବଂ ସେ ଥିଲେ ଯଥାର୍ଥ ଅର୍ଥରେ ଖେମଣ୍ଡି ରାଜସିଂହାସନର ସର୍ବଶେଷ ରାଜା । ତାଙ୍କରି ଅମଳରେ ହିଁ ଦେଶରେ ଜମିଦାରି ଉଚ୍ଛେଦ ଆଇନ କାର୍ଯ୍ୟକାରୀ ହୋଇଥିଲା ଏବଂ ବାସ୍ତବରେ ରାଜନ୍ୟବର୍ଗଙ୍କ କର୍ପୂର ଉଡ଼ିଯାଇଥିଲା ।

ସମୟର ଅନୁରଣନରେ ପରିସ୍ଥିତିକୁ ସାମନା କରୁକରୁ ବିସ୍ତାରିତ ଗଙ୍ଗବଂଶର ବିଭାଜନ ଜନିତ କାରଣରୁ ହେଉ ବା ହେଉ ଅନ୍ୟ ଯେକୌଣସି ସମ୍ଭାବ୍ୟ କାରଣ- ଖେମଣ୍ଡି ରାଜ୍ୟ ପ୍ରତିଷ୍ଠା ଥିଲା ଏକ ଐତିହାସିକ ସତ୍ୟ ଏବଂ ସେହି ରାଜ୍ୟ ମଧ୍ୟ ପ୍ରାରମ୍ଭରୁ ଶେଷ ପର୍ଯ୍ୟନ୍ତ ସମବଂଶୀୟ ବିଖ୍ୟାତ ଗଙ୍ଗବଂଶର ଏକ ଶାଖାର ରାଜନ୍ୟବର୍ଗଙ୍କଦ୍ୱାରା ଶାସିତ ହେବା ଥିଲା ଅନ୍ୟ ଏକ ଐତିହାସିକ ସତ୍ୟ । ଏକାଦଶ ଶତାବ୍ଦୀରେ ବିଖ୍ୟାତ ଚୋଳଗଙ୍ଗଦେବଙ୍କ ପିତା ରାଜରାଜ ଦେବଙ୍କ ସେନାପତି-ବାଣପତି-କୋଶଳ, ଉତ୍କଳ, ଗିଡ୍ରିସିଙ୍ଗି ରାଜ୍ୟ ସମେତ ଖେମଣ୍ଡି ରାଜ୍ୟ ଆକ୍ରମଣ କରିବାର ଉଲ୍ଲେଖ ତାହାର ଏକ ପ୍ରମାଣ । ମହାରାଜା କୃଷ୍ଣଚନ୍ଦ୍ରଙ୍କ ଭାଷାରେ, ''ପ୍ରମାଣ ଉପରେ ଯେତେଦୂର ଗୋଚରୀଭୂତ ହୋଇଛି, ସେଥିରୁ ଜଣାଯାଏ ଯେ ୧୦୭୫ ଖ୍ରୀଷ୍ଟାବ୍ଦରେ ରାଜରାଜଙ୍କ ଦୀର୍ଘାସୀଲିପିରେ ଖେମୁଣ୍ଡିନାମ ସର୍ବପ୍ରଥମେ ପରିଲକ୍ଷିତ ହୋଇଛି ।'' ଏଥିରୁ ସ୍ପଷ୍ଟ ଯେ ସେତେବେଳକୁ ଏହି ରାଜ୍ୟର ସ୍ୱତନ୍ତ୍ର ସତ୍ତା ପ୍ରତିଷ୍ଠିତ ହୋଇସାରିଥିଲା । ପୁଣି ଚତୁର୍ଦ୍ଦଶ ଶତାବ୍ଦୀର ମଧ୍ୟ ଭାଗରେ ବିଶାଳ ଉତ୍କଳ ସାମ୍ରାଜ୍ୟର ଗଙ୍ଗରାଜା ତୃତୀୟ ଭାନୁଦେବ ଖେମଣ୍ଡି ରାଜ୍ୟ ଆକ୍ରମଣ କରିବା ଯୋଗୁଁ ସେଠିକାର ତତ୍‌କାଳୀନ ରାଜା ସମବଂଶୀୟ ନରସିଂହ ଭାନୁଦେବ ଆପଣାର ସ୍ୱାଧୀନତା ରକ୍ଷାପାଇଁ ବାହମନୀ ସୁଲତାନଙ୍କ ସହାୟତା କାମନା କରିଥିଲେ । ତାହା ତତ୍‌କାଳ ସମ୍ଭବ ହୋଇଥିଲେ ସୁଦ୍ଧା ପରେ ପରେ ସେଠିକାର ରାଜନୈତିକ ପରିସ୍ଥିତି ଜଟିଳ ହୋଇଯାଇଥିଲା । କିନ୍ତୁ ତଥାପି ଏହା ସ୍ପଷ୍ଟ ଯେ ସେତେବେଳେ ଖେମଣ୍ଡି ରାଜ୍ୟର ସ୍ୱତନ୍ତ୍ର ସତ୍ତା ରହିଥିଲା ।

ସେତେବେଳେ ଖେମୁଣ୍ଡି ରାଜ୍ୟ ସମୁଦ୍ର ଉପକୂଳବର୍ତ୍ତୀ ଅଞ୍ଚଳରୁ ଆରମ୍ଭ କରି ବର୍ତ୍ତମାନର କଳାହାଣ୍ଡି ତଥା ଋଷିକୂଲ୍ୟା କୂଳରୁ ଲାଙ୍ଗୁଲ୍ୟା ନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ସେହି ରାଜ୍ୟର ପ୍ରଥମ ରାଜଧାନୀ ଥିଲା ବର୍ତ୍ତମାନର ରାୟଗଡ଼ା ଜିଲ୍ଲା ଅନ୍ତର୍ଗତ ଏକ ବିଜ୍ଞାପିତ ଅଞ୍ଚଳ ପରିଷଦ- ଗୁଡ଼ାରି କଟକ । ସେଠାରୁ ରାଜଧାନୀ ନଗରୀ କଟକ / କଳିଙ୍ଗନଗରକୁ ସ୍ଥାନାନ୍ତରିତ ହୋଇ



Ama Odisha pdf (aamaodisha@gmail.com)

ତତ୍‌ପରେ ସ୍ଥାନାନ୍ତର ହୋଇଥିଲା ପୁରୁଣାପାଟଣାକୁ । ସେଠି ପାଞ୍ଚଜଣ ରାଜା ରାଜୁତି କରିବା ପରେ ଷଷ୍ଠ ରାଜାଙ୍କ ଅମଳରେ ତାହା ବର୍ତ୍ତମାନର ପାରଳାଖେମୁଣ୍ଡି ସହରକୁ ସ୍ଥାନାନ୍ତର ହୋଇଥିଲା । ରାଜରାଜୁଡ଼ା ଶାସନର ଅନ୍ତିମ ଦିନ ପର୍ଯ୍ୟନ୍ତ ତାହା ହିଁ ଥିଲା କଳକଳ ଛଳଛଳ ହୋଇ ବହି ଚାଲିଥିବା ଖେମୁଣ୍ଡି ଗଙ୍ଗ ଶାସନର ରାଜଧାନୀ ।

ତେବେ ଖେମୁଣ୍ଡି ରାଜ୍ୟର ଅୟମାରମ୍ଭ ନେଇ କାଳ ନିରୂପଣ ସଂପର୍କରେ ନିର୍ଦ୍ଦିଷ୍ଟ ଭାବରେ କୁହାଯାଇ ନପାରିଲେ ସୁଦ୍ଧା ୧୨୪୫ ମସିହାରୁ ଆରମ୍ଭ କରି ଶେଷ ପର୍ଯ୍ୟନ୍ତ ଗଜପତି କୃଷ୍ଣଚନ୍ଦ୍ରଙ୍କ ପୂର୍ବପୁରୁଷମାନଙ୍କ ସଂପର୍କରେ ଅନେକ ଐତିହାସିକ ତଥ୍ୟ ଉପଲବ୍‌ଧ । ସେଭଳି ବିବରଣୀଗୁଡ଼ିକରେ ଗଙ୍ଗରାଜାଗଣଙ୍କ ଧାରାବାହିକ ନାମ ତାଲିକା ନେଇ ପ୍ରାୟ ସବୁ ଇତିହାସକାର ଏକମତ ହେଉଥିଲେ ସୁଦ୍ଧା ସେମାନଙ୍କ ମଧ୍ୟରୁ ପ୍ରତ୍ୟେକଙ୍କ ଶାସନକାଳ ସଂପର୍କରେ ସମସ୍ତେ ସହମତ ନୁହନ୍ତି । କିନ୍ତୁ ତଥାପି ଗୁଡ଼ାରି କଟକରେ ରାଜା ନରସିଂହ ଦେବ ଓରଫ୍ କଳାହମ୍ବିରଙ୍କ ଶାସନକାଳର ପ୍ରାରମ୍ଭ ୧୨୪୫ ମସିହାରେ ହୋଇଥିବା ସଂପର୍କରେ ସମସ୍ତେ ଏକମତ ।

ଏ ଯାବଦ୍ ବିଭିନ୍ନ ଗବେଷଣାମୂଳକ ପତ୍ରିକାରେ ପ୍ରକାଶିତ ଖେମୁଣ୍ଡି ରାଜବଂଶ ସଂପର୍କିତ ବିବରଣୀଗୁଡ଼ିକ ମଧ୍ୟରୁ ମି. ରବର୍ଟ ସିୱେଲ୍, ଆନ୍ଧ୍ରପ୍ରଦେଶର ବିଶିଷ୍ଟ ଐତିହାସିକ ବି. ଶେଷାଗିରି ରାଓ ଏବଂ ପାରଳାଖେମୁଣ୍ଡିର ଶ୍ରୀ ସୀମାଦ୍ରି ପରିଚ୍ଛାଙ୍କଦ୍ୱାରା ସଂଗୃହୀତ ତଥ୍ୟାବଳୀ ମଧ୍ୟରୁ ମିଷ୍ଟର ସିୱେଲ୍‌ଙ୍କ ତାଲିକାକୁ ବିଶେଷ ଗୁରୁତ୍ୱ ଦିଅନ୍ତି ବିଶିଷ୍ଟ ଗବେଷକ ତଥା ଇତିହାସକାର ଡକ୍ଟର ସତ୍ୟନାରାୟଣ ରାଜଗୁରୁ । ମି. ସିୱେଲ୍ ଗଞ୍ଜାମର ତତ୍‌କାଳୀନ କଲେକ୍‌ଟରଙ୍କ ନଥିପତ୍ରରୁ ତଥ୍ୟ ସଂଗ୍ରହ କରି ୧୮୮୪ ମସିହାରେ ଖେମଣ୍ଡି ରାଜବଂଶାବଳୀ ପ୍ରକାଶ କରିଥିଲେ । ଅପର ପକ୍ଷରେ ପାରଳା ରାଜବାଟୀରେ ଥିବା ବିଭିନ୍ନ ତାଳପତ୍ର ଇତ୍ୟାଦିରୁ ମଧ୍ୟ ଅନ୍ୟମାନେ ତଥ୍ୟ ସଂଗ୍ରହ କରିଥିଲେ । ତେବେ ବାରମ୍ବାର ରାଜଧାନୀ ପରିବର୍ତ୍ତନ କାରଣରୁ ଅନେକ ମୂଳ ତଥ୍ୟ ନଷ୍ଟ ହୋଇଯାଉଥିଲା ଏବଂ ପରବର୍ତ୍ତୀ କାଳରେ ପୁଣି ଥରେ ନୂତନ ତାଲିକା ପ୍ରସ୍ତୁତ ହେଉଥିଲା । ସମ୍ଭବତଃ ସେହି କାରଣରୁ ଐତିହାସିକଙ୍କ ମତରେ ବିଭିନ୍ନ ପାର୍ଥକ୍ୟ ଦେଖିବାକୁ ମିଳେ । କଳିଙ୍ଗ ସଂଚିକାର ତେଲ୍‌ଗୁ ସଂସ୍କରଣରେ ସୀମାଦ୍ରି ପରିଚ୍ଛାଙ୍କ ଖେମୁଣ୍ଡି ରାଜବଂଶାବଳୀ ପ୍ରକାଶ ପାଇଥିବା ବେଳେ ଡକ୍ଟର ରାଓଙ୍କ ବିବରଣୀ ଅନ୍ୟ ଏକ ଇତିହାସ ଗବେଷଣା ପତ୍ରିକାରେ ପ୍ରକାଶିତ ହୋଇଥିଲା । ତେବ ସେହି ତିନିଜଣ ବିଶିଷ୍ଟ ଇତିହାସକାରଙ୍କ ଦ୍ୱାରା ସଂଗୃହୀତ ଖେମୁଣ୍ଡି ରାଜବଂଶାବଳୀର ଏକ ତୁଳନାତ୍ମକ ବିବରଣୀ ଏହି ପୁସ୍ତକର ପରିଶିଷ୍ଟରେ ପ୍ରଦତ୍ତ ।

୧୨୪୫ରୁ ୧୭୫୩- ଦୀର୍ଘ ଯାତ୍ରାପଥ । ବିଭିନ୍ନ ଐତିହାସିକ ବିବରଣୀ ଏବଂ ଅନ୍ୟାନ୍ୟ ନଥିପତ୍ରରୁ ପ୍ରାପ୍ତ ତଥ୍ୟ ଅନୁଯାୟୀ ଖେମଣ୍ଡି ରାଜ୍ୟର ୨୧ତମ ରାଜା ବୀର ପ୍ରତାପରୁଦ୍ର ଦେବଙ୍କ ଶାସନକାଳ ୧୭୫୩ ମସିହାରେ ଶେଷ ହୋଇଥିଲା । କିନ୍ତୁ ପ୍ରଦତ୍ତ ତାଲିକାରେ କେହି ମଧ୍ୟ ସେହି ତଥ୍ୟ ସହିତ ଏକମତ ନୁହନ୍ତି । ଡକ୍ଟର ରାଓଙ୍କ ମତରେ ପ୍ରତାପରୁଦ୍ର ୧୮୪୨ ମସିହା,



Ama Odisha pdf (aamaodisha@gmail.com)

ଶ୍ରୀ ପରିଚ୍ଛାଙ୍କ ମତରେ ସେ ୧୬୯୩ ମସିହା ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ତେଣୁ ନିର୍ଦ୍ଧାରିତ ମସିହାଟି ଶ୍ରୀ ପରିଚ୍ଛାଙ୍କ ମତରେ ଦୀର୍ଘ ୬୦ ବର୍ଷ ପଛରେ ରହି ଯାଉଥିବା ବେଳେ ଡକ୍ଟର ରାଓ ୮୯ ବର୍ଷ ଆଗେଇ ଯାଇଛନ୍ତି। କିନ୍ତୁ ଡକ୍ଟର ସିୱେଲ୍ ଯଦିବା ସେହି ସମୟ ସହିତ ଏକମତ ହୋଇ ନାହାନ୍ତି ତଥାପି ସେ ମାତ୍ର ୧୩ ବର୍ଷ ଆଗରେ ରହିଛନ୍ତି । ଅତୀତରେ ୨୧ ଜଣ ରାଜାଙ୍କ ରାଜତ୍ୱକାଳ ନିର୍ଦ୍ଧାରଣ ଦୃଷ୍ଟିରୁ ଏବଂ ପୁଣି ଦୀର୍ଘ ପ୍ରାୟ ଚାରି ଶତାବ୍ଦୀର ତଥ୍ୟ ବିଭିନ୍ନ ସୂତ୍ରରୁ ସଂଗ୍ରହ କଲାବେଳେ ସେଇ ସ୍ୱଳ୍ପ ବ୍ୟବଧାନକୁ ସାମାନ୍ୟ ବୋଲି ବିଚାରକରି ଡକ୍ଟର ରାଜଗୁରୁଙ୍କ ଭଳି ପ୍ରମୁଖ ଗବେଷକଗଣ ସେହି ତାଲିକାକୁ ଗ୍ରହଣ କରିଯିବା ବିଶେଷ ସମୀଚୀନ ବୋଲି ମନେକରନ୍ତି । ଏଠାରେ ବିଶେଷ ଉଲ୍ଲେଖଯୋଗ୍ୟ ଯେ ଖେମଣ୍ଡି ରାଜସିଂହାସନାସୀନ ସେହି ରାଜାଗଣଙ୍କ ନାମ ଏବଂ କ୍ରମକୁ ସବୁ ଐତିହାସିକ ଏବଂ ଗବେଷକ ସ୍ୱୀକୃତି ଦେଇଛନ୍ତି । ୨୧ତମ ରାଜା ବୀରପ୍ରତାପରୁଦ୍ର ଗଜପତି ନାରାୟଣ ଦେବଙ୍କ ଅମଳରେ ଖେମଣ୍ଡି ରାଜଧାନୀ ପାରଳାକୁ ସ୍ଥାନାନ୍ତର ହୋଇଥିଲା ଏବଂ ତାଙ୍କ ପରେ ପରେ ସର୍ବଜ୍ଞ ଜଗନ୍ନାଥ ଗଜପତି ନାରାୟଣ ଦେବ ୧୭୫୧ ମସିହାରୁ ସେଠାରେ ଶାସନ ଆରମ୍ଭ କରିଥିବା ବିଭିନ୍ନ ରେକର୍ଡ଼ପତ୍ରରୁ ସ୍ପଷ୍ଟ । ଅତଏବ ବୀର ପ୍ରତାପରୁଦ୍ର ନାରାୟଣ ଦେବଙ୍କ ଶାସନ ୧୭୫୩ରେ ଶେଷ ହୋଇଥିବା ତଥ୍ୟ ସଂପର୍କରେ ତଥାପି ଅଧିକ ଗବେଷଣାର ଆବଶ୍ୟକତା ରହିଛି ଏବଂ ବାସ୍ତବରେ ତାଙ୍କରି ଅମଳରେ ରାଜଧାନୀ ପୁରୁଣା ପାଟଣାରୁ ପାରଳା ସ୍ଥାନାନ୍ତର ହୋଇଥିବାରୁ ସମ୍ଭବତଃ ସେ ଏଠାରେ କିଛିକାଳ ରାଜତ୍ୱ କରିଥିଲେ ସୁଦ୍ଧା ସର୍ବଜ୍ଞ ଜଗନ୍ନାଥ ଦେବଙ୍କୁ ଏଠିକାର ପ୍ରଥମ ରାଜା ହିସାବରେ ଗ୍ରହଣ କରାଯାଇପାରେ । ସେ ବାସ୍ତବରେ ଥିଲେ ଖେମଣ୍ଡି ଗଙ୍ଗବଂଶର ୨୨ତମ ରାଜା ଏବଂ ତାଙ୍କୁ ମିଶାଇ ପାରଳା ରାଜଧାନୀରୁ ସାତ ଜଣ ରାଜା ରାଜ୍ୟ ଶାସନ କରିଥିଲେ । ସର୍ବଶେଷ ରାଜା ଥିଲେ ଶ୍ରୀକୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ।

## ପାରଳାର ରାଜନ୍ୟବର୍ଗ

| କ୍ରନଂ | ରାଜା | ରାଜଗାଦିରେ | ଶେଷନିଃଶ୍ୱାସ |
|---|---|---|---|
| ୧. | ସର୍ବଜ୍ଞ ଜଗନ୍ନାଥ ଗଜପତି ନାରାୟଣଦେବ | ୧୭୫୧-୧୭୭୦ | ଡିସେମ୍ବର-୫ |
| ୨. | ଗଜପତି ନାରାୟଣଦେବ | ୧୭୭୧-୧୮୦୨ | ଫେବ୍ରୁଆରି-୪ |
| ୩. | ପୁରୁଷୋତ୍ତମ ଗଜପତି ନାରାୟଣଦେବ | ୧୮୦୨-୧୮୦୫ | ଅକ୍ଟୋବର-୨୯ |
| ୪. | ଜଗନ୍ନାଥ ଗଜପତି ନାରାୟଣଦେବ(୨ୟ) | ୧୮୦୫-୧୮୫୧ | ନଭେମ୍ବର-୨୭ |
| ୫. | ପ୍ରତାପରୁଦ୍ର ଗଜପତି ନାରାୟଣଦେବ | ୧୮୫୧-୧୮୮୯ | ସିଂହାସନରୁ ସନ୍ନ୍ୟାସ |
| ୬. | ଗୌରଚନ୍ଦ୍ର ଗଜପତି ନାରାୟଣଦେବ | ୧୮୮୯-୧୯୦୫ | ୧୯୦୫ |
| ୭. | କୃଷ୍ଣଚନ୍ଦ୍ର ଗଜପତି ନାରାୟଣଦେବ | ୧୯୧୩-୧୯୫୨ | ମଇ-୨୫, ୧୯୭୪ |



Ama Odisha pdf (aamaodisha@gmail.com)



**ପାରଳା ଗଜପତିଙ୍କ ଜନ୍ମସ୍ଥାନ**

ଖେମଣ୍ଡି ରାଜସିଂହାସନର ସର୍ବଶେଷ ରାଜା ହୋଇଥିଲେ ସୁଦ୍ଧା ଶ୍ରୀକୃଷ୍ଣଚନ୍ଦ୍ର ଗଜପତି ନାରାୟଣଦେବ ଥିଲେ ନୂତନ ଓଡ଼ିଶା ପ୍ରଦେଶର ସର୍ବପ୍ରଥମ ପ୍ରଧାନମନ୍ତ୍ରୀ । ଚିରସ୍ମରଣୀୟ ପାରଳା ଗଜପତି କେବଳ ଜଣେ ବ୍ୟକ୍ତି ନଥିଲେ, ଜଣେ ରାଜା ଜମିଦାର ନଥିଲେ ବାସ୍ତବରେ ଥିଲେ ଗୋଟିଏ ବିରାଟ ଅନୁଷ୍ଠାନ ।

କୃଷ୍ଣଚନ୍ଦ୍ର ପାରଳା ରାଜନଅରରେ ଜନ୍ମଗ୍ରହଣ କରିଥିଲେ ୧୮୯୨ ମସିହା ଏପ୍ରିଲ୍ ୨୬ ତାରିଖ ଦିନ । ସେଦିନ ଥିଲା ବୈଶାଖ କୃଷ୍ଣ ଅମାବାସ୍ୟା ତିଥି । ତାହାଙ୍କର ଜନ୍ମ ସହିତ ପାରଳା ରାଜପରିବାରରେ ତିନି ପୁରୁଷର ମିଳନ ହୋଇଥିଲା । ପିତା ଗୌରଚନ୍ଦ୍ର ତଥା ପିତାମହ ପ୍ରତାପରୁଦ୍ରଦେବଙ୍କ ସହିତ ମହାମିଳନର ସେତୁ ତିଆରି କରିଥିଲେ କୃଷ୍ଣଚନ୍ଦ୍ର ।

ବୁଢ଼ାରାଜା ରୂପେ ବେଶ୍ ପରିଚିତି ଲାଭ କରିଥିବା ପ୍ରତାପରୁଦ୍ର ଦେବ ବାସ୍ତବରେ ପାରଳାରେ ରହୁଥିଲେ ସୁଦ୍ଧା ସେ ଆଉ ରାଜ୍ୟ, ରାଜଦରବାର ସହିତ ଆସକ୍ତ ନଥିଲେ ଏବଂ ପରିଣାମତଃ 'ଧର୍ମକାର୍ଯ୍ୟ'ରେ ହିଁ ପ୍ରବୃତ୍ତ ରହିଥିଲେ । ସନ୍ନ୍ୟାସ ଜୀବନଯାପନ କରୁଥିଲେ କହିଲେ ଚଳେ । ଧର୍ମାଲୋଚନା ଭଳି କାର୍ଯ୍ୟକ୍ରମରେ ପ୍ରାୟ ସମୟ ଅତିବାହିତ ହେଉଥିଲା । ତେଣୁ ଆପାତତଃ ରାଜ୍ୟର ଶାସନଭାର ପରିଚାଳନା କରୁଥିଲେ ଗୌରଚନ୍ଦ୍ରଦେବ ।

ମାତା ବିଷ୍ଣୁପ୍ରିୟାଦେବୀ ଓ ପିତା ଗୌର ଗଜପତିଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ପାରଳା ରାଜବାଟୀରେ ବାଲ୍ୟଜୀବନ ବିତାଇଥିଲେ କୃଷ୍ଣଚନ୍ଦ୍ର । ପାର୍ଥିବ ଜଗତରେ ଜଣେ ସୁପୁରୁଷ ରୂପେ ଆପଣାର ଜୀବନ ନିର୍ବାହ କରିବାପାଇଁ ବାଲ୍ୟବୟସରେ ଯେଉଁଭଳି ଉଦ୍ୟମ କରାଯିବା ଆବଶ୍ୟକ, ସେସବୁ ପ୍ରତି ଯଥେଷ୍ଟ ଧ୍ୟାନ ଦେଉଥିଲେ କୃଷ୍ଣଚନ୍ଦ୍ରଙ୍କ ପରିବାର । ପୁଣି ସେ ଜଣେ ରାଜପୁତ୍ର । ତେଣୁ ରୁଚିପୂର୍ଣ୍ଣ, ମାର୍ଜିତ ତଥା ଶିଷ୍ଟ ଜୀବନଯାପନ ପାଇଁ ଉଚିତ ମାନସିକତା ସୃଷ୍ଟି ଲାଗି ଗୌରଚନ୍ଦ୍ର



Ama Odisha pdf (aamaodisha@gmail.com)

ଏବଂ ବିଷ୍ଣୁପ୍ରିୟା ଜୀବନର ପ୍ରାଥମିକ ଅବସ୍ଥାରୁ ହିଁ ଉଦ୍ୟମ ଜାରି ରଖିଥିଲେ । ସେମାନଙ୍କ ସେହି ଆଦର୍ଶର ଯଥାର୍ଥ ପ୍ରତିଫଳନ ଥିଲେ କୃଷ୍ଣଚନ୍ଦ୍ର ।

ରାଜକୁମାର ବାଲ୍ୟବୟସରେ ମାତାଙ୍କ କୋଳରେ ବସି ଶୁଣୁଥିଲେ ରାମାୟଣ, ମହାଭାରତର ବୀରତ୍ୱପୂର୍ଣ୍ଣ କାହାଣୀସବୁ । ଭାବବିଭୋର ହୋଇଯାଉଥିଲେ ସତ୍ୟନିଷ୍ଠ ବିଷୟଗୁଡ଼ିକର ଅବତାରଣାବେଳେ । ଭୀଷ୍ମଙ୍କର ମହାପ୍ରତିଜ୍ଞା ପାଳନ, ପରମବୀର ପର୍ଶୁରାମଙ୍କ କାହାଣୀ ସାଙ୍ଗକୁ ପାଣ୍ଡବମାନଙ୍କର ବଳବୀର୍ଯ୍ୟ ଗାଥା, କୃଷ୍ଣଙ୍କର ଅଲୌକିକ କାର୍ଯ୍ୟକଳାପ, ସ୍ୱାମୀଙ୍କୁ ଯମ ହାତରୁ ଫେରାଇଆଣିବା ପାଇଁ ସାବିତ୍ରୀଙ୍କର ଅନମନୀୟ ଉଦ୍ୟମ, ସତ୍ୟରକ୍ଷାପାଇଁ ଶ୍ରୀରାମଙ୍କ ବନବାସ, ଦୁଷ୍ଟଙ୍କ ବିନାଶପାଇଁ ରାକ୍ଷସକୁଳ ଉପରେ ଆକ୍ରମଣ, ଧର୍ମରକ୍ଷାପାଇଁ ବିଶେଷ ତତ୍ପରତା ଇତ୍ୟାଦି ରାଜକୁମାରଙ୍କୁ ବିଶେଷ ଆକୃଷ୍ଟ କରୁଥିଲା । ସତେଯେମିତି ସେହିସବୁ କାହାଣୀଗୁଡ଼ିକରେ ରହିଥିବା ଜୀବନଗଠନର ଉପାଦାନଗୁଡ଼ିକ ଆରୋପିତ ହୋଇଯାଉଥିଲା ତାଙ୍କରି ଭିତରେ । ପୁଣି ଭାରତୀୟ ବୀରରାଜା/ରାଜପୁତ୍ର ରାଣାପ୍ରତାପ, ଶିବାଜୀ, ଆକବର, ଟିପୁସୁଲ୍‌ତାନ ମଧ୍ୟ ବାହାରି ଆସୁଥିଲେ ଅନେକ ସମୟରେ ବିଷ୍ଣୁପ୍ରିୟାଦେବୀଙ୍କ କାହାଣୀ ପେଟିକାରୁ । ବେଶ୍ ଆମୋଦିତ ହେଉଥିଲେ ଯୁବରାଜ । ଆଗ୍ରହୀ ହୋଇ ଉଠୁଥିଲେ ସେମାନଙ୍କ ବିଷୟରେ ଅଧିକରୁ ଅଧିକ ଜାଣିବାପାଇଁ ।

ସେମିତି ସେମିତି ବିତିଯାଇଥିଲା ପ୍ରାୟ ଚାରିବର୍ଷ । ପଞ୍ଚମ ବର୍ଷରେ ହୋଇଥିଲା ରାଜକୁମାରଙ୍କ କର୍ଣ୍ଣବେଧ (କାନଫୋଡ଼ା) ଉତ୍ସବ ଏବଂ ତତ୍‌ସହିତ ଖଡ଼ିଛୁଆଁ । ଘରୋଇ ଭାବରେ ପ୍ରଥମେ ବିଦ୍ୟା ଶିକ୍ଷାର ଆୟୋଜନକାରୀଙ୍କ ମଧ୍ୟରେ ଥିଲେ ପିତା ଗୌରଚନ୍ଦ୍ରଙ୍କ ବ୍ୟକ୍ତିଗତ ସେକ୍ରେଟାରୀ ମିଷ୍ଟର ଟେଲର୍ ଏବଂ ପରିବାରର ଉପଦେଷ୍ଟା ଶ୍ୟାମସୁନ୍ଦର ରାଜଗୁରୁ । ସେମାନଙ୍କ ପରାମର୍ଶ କ୍ରମେ ରାଜକୁମାରଙ୍କ ଶିକ୍ଷକ ଭାବରେ ନିଯୁକ୍ତ ହୋଇଥିଲେ ଜଣେ ସୁସାହିତ୍ୟିକ ତଥା ପାରଳା ହାଇସ୍କୁଲ୍‌ର ଶିକ୍ଷକ ଶ୍ରୀ ଅପର୍ଣ୍ଣା ପଣ୍ଡା । ସମୟ କ୍ରମେ ଶ୍ରୀଯୁକ୍ତ ରାଜଗୁରୁ ତଥା ମିଷ୍ଟର ଟେଲ୍‌ର କିଶୋର ରାଜକୁମାରଙ୍କ ଶିକ୍ଷାଲାଭ ଦିଗରେ ବିଶେଷ ତତ୍ପରତା ପ୍ରକାଶ କରିଥିଲେ ଏବଂ ବ୍ୟକ୍ତିଗତ ଭାବରେ ମଧ୍ୟ ସେଥିପାଇଁ ଉଦ୍ୟମ କରିଥିଲେ ।

କିଶୋର କୃଷ୍ଣଚନ୍ଦ୍ରଙ୍କ ବାଲ୍ୟଶିକ୍ଷା ଏକ ନିର୍ଦ୍ଦିଷ୍ଟ ସ୍ତରରେ ପହଞ୍ଚିଯିବା ପରେ ପରେ ମାଧ୍ୟମିକ ଶିକ୍ଷାଲାଭପାଇଁ ତାଙ୍କରି ପିତାଙ୍କ ଦ୍ୱାରା ପ୍ରତିଷ୍ଠିତ ସ୍ଥାନୀୟ ମହାରାଜା ହାଇସ୍କୁଲ୍‌ରେ ତାଙ୍କୁ ଭର୍ତ୍ତି କରାଯାଇଥିଲା । ପରାମର୍ଶଦାତାମାନଙ୍କର ନିର୍ଦ୍ଦିଷ୍ଟ ମତ ଥିଲା ଯେ ରାଜକୁମାର କୃଷ୍ଣଚନ୍ଦ୍ର ତାହାଙ୍କ ପିତୃପରିଚାଳିତ ବିଦ୍ୟାଳୟରେ ରାଜ୍ୟର ଅନ୍ୟାନ୍ୟ ଛାତ୍ରଙ୍କ ସହିତ ଏକତ୍ର ବସି ଅଧ୍ୟୟନ କରିବା ଶ୍ରେୟସ୍କର ହେବ । ଅନ୍ୟାନ୍ୟ ସାଧାରଣ ଛାତ୍ରଙ୍କ ସହିତ ମିଶିବେ, ସାଧାରଣ ଭାବେ ଶିକ୍ଷାଲାଭ କରିବେ, ସେମାନଙ୍କ ସହିତ ଖେଳକୁଦ ମଧ୍ୟ କରିବେ । ପରିଣାମତଃ ତାହାଙ୍କର ଅନ୍ତର୍ନିହିତ ଗୁଣାବଳୀର ସ୍ୱାଭାବିକ ପରିପ୍ରକାଶ ସମ୍ଭବ ହେବ । ସେଭଳି ଭାବରେ ସାଧାରଣ ସ୍କୁଲ୍ ଜୀବନ



Ama Odisha pdf (aamaodisha@gmail.com)

ଆରମ୍ଭ କରିଥିବା କୃଷ୍ଣଚନ୍ଦ୍ର ରାଜ ନଅରରୁ ସ୍କୁଲ୍‌କୁ ଯିବାଆସିବାପାଇଁ ଗୋଟିଏ ଘୋଡ଼ା ଗାଡ଼ିର ବ୍ୟବସ୍ଥା ହୋଇଥିଲା ।

ପୁଅର ଶାରୀରିକ ବ୍ୟାୟାମ ପ୍ରତି ଅଧିକ ଗୁରୁତ୍ୱ ଆରୋପ କରିଥିଲେ ଗୌର ଗଜପତି । ଆପଣା ରାଜନଅର ଭିତରେ ଏକ କ୍ଷୁଦ୍ର ଖେଳ ପଡ଼ିଆର ବ୍ୟବସ୍ଥା କରିଥିଲେ । ତାହା 'ଡାଭାବାଡ଼' ନାମରେ ନାମିତ ହୋଇଥିଲା । ସେଠାରେ ବିଭିନ୍ନ ପ୍ରକାରର ଖେଳ କସରତ ହେଉଥିଲା । ତେବେ ପ୍ରମୁଖ ଥିଲା ଫୁଟବଲ୍ ଏବଂ କ୍ରିକେଟ୍ । କିଶୋର କୃଷ୍ଣଚନ୍ଦ୍ରଙ୍କ ସାଙ୍ଗସାଥୀମାନେ ସେଠାକୁ ଖେଳିବାପାଇଁ ଆସୁଥିଲେ । ଯୁବରାଜଙ୍କ ବିଶେଷ ଆଗ୍ରହ ଥିଲା କ୍ରିକେଟ୍ ଖେଳରେ ବୋଲିଂ ଅପେକ୍ଷା ବ୍ୟାଟିଂ କରିବାପାଇଁ । ଅନେକ ଦିନ ପର୍ଯ୍ୟନ୍ତ ସେ ସେହି ଖେଳ ସହିତ ଅଙ୍ଗୀଭୂତ ହୋଇ ରହିଥିଲେ । ଥରେ ସେଭଳି ଖେଳିବା ବେଳେ ଆଣ୍ଠୁରେ ବଲ୍ ବାଜି ଶକ୍ତ ଆଘାତ ପାଇଥିଲେ ସେ ଏବଂ ସେଥିରୁ ମୁକ୍ତିପାଇଁ ବେଶ୍ କିଛିଦିନ ଲାଗିଯାଇଥିଲା । ତତ୍‌ପରଠାରୁ ସେ ସେଇ ଖେଳ ବନ୍ଦ କରିଦେଇଥିଲେ ।

ତେବେ କେବଳ ଅଧ୍ୟୟନ କାଳ କାହିଁକି, ତତ୍‌ପରବର୍ତ୍ତୀ କାଳରେ ମଧ୍ୟ ସେଥି ପ୍ରତି ତାଙ୍କର ଆଗ୍ରହ ରହିଥିଲା ପୂର୍ବଭଳି । ଖେଳକୁଦର ପ୍ରଶିକ୍ଷଣପାଇଁ ସେ ବରାବର ଦେଶର ବିଭିନ୍ନ ସ୍ଥାନରୁ ବିଶିଷ୍ଟ ଖେଳ ଶିକ୍ଷକଙ୍କୁ ଅଣାଇ ସ୍କୁଲ୍, କଲେଜ ତଥା ପାରଳାର ଯୁବସମାଜର ମନରେ ଖେଳୁଆଡ଼ ମନୋବୃତ୍ତିର ବିକାଶପାଇଁ ବିଶେଷ ଆଗ୍ରହ ଦେଖାଉଥିଲେ । ପରିଣାମତଃ ପାରଳାରେ ଗଠିତ କ୍ରିକେଟ୍ ଦଳ- ଟିମ୍ ଏକାଦଶ- ମାନ୍ଦ୍ରାଜର ବିଭିନ୍ନ ସ୍ଥାନରେ ଆୟୋଜିତ କ୍ରିକେଟ୍ ପ୍ରତିଯୋଗିତାରେ ବିଜୟୀ ହୋଇ ଆଣିଥିବା କପ୍‌ଗୁଡ଼ିକ ପାରଳା କଲେଜରେ ଶୋଭା ପାଉଥିଲା ଅନେକ କାଳ ପର୍ଯ୍ୟନ୍ତ ।

ପାରଳା ହାଇସ୍କୁଲ୍ ଶିକ୍ଷା ପରେପରେ ଉଚ୍ଚ ଶିକ୍ଷାପାଇଁ ସେ ଯାଇଥିଲେ ମାନ୍ଦ୍ରାଜ, ମାନ୍ଦ୍ରାଜର ରାଜକୁମାର କଲେଜ । ସେଇ ନିଷ୍ପତ୍ତି ନେଇଥିଲେ ମାଆ ବିଷ୍ଣୁପ୍ରିୟା ଦେବୀ । ସେଥିପାଇଁ ଦୃଢ଼ ଭାବରେ ମତ ରଖିଲେ ଶ୍ୟାମସୁନ୍ଦର ରାଜଗୁରୁ । ବାସ୍ତବରେ ସେତେବେଳକୁ ପାରଳା ରାଜ ପରିବାରରେ ଅନେକ ଅନେକ ବିପର୍ଯ୍ୟୟ ସଂଘଠିତ ହୋଇଯାଇଥିଲା । ବାଳକ କୃଷ୍ଣଚନ୍ଦ୍ର ହୋଇଯାଇଥିଲେ ପିତୃହରା । ଦାଦା ପଦ୍ମନାଭ ଦେବଙ୍କର ୧୯୦୪ରେ ମୃତ୍ୟୁ ହେବା ପରେ ତତ୍‌ପରବର୍ଷ ୧୯୦୫ ମସିହାରେ ପିତା ଗୌରଚନ୍ଦ୍ରଙ୍କର ମଧ୍ୟ ଅକାଳ ବିୟୋଗ ହୋଇଥିଲା । ରାଜ୍ୟର ଭାର କୋର୍ଟ ଅଫ୍ ୱାର୍ଡ଼ସ୍‌ଙ୍କ ଅଧୀନକୁ ଚାଲିଯାଇଥିଲା । ଏଠାରେ ଉଲ୍ଲେଖଯୋଗ୍ୟ ଯେ ସେତେବେଳକୁ ପାରଳାରେ ଏକ ଦ୍ୱିତୀୟ ଶ୍ରେଣୀ କଲେଜ (ଆଇ.ଏ. ଶ୍ରେଣୀ ପର୍ଯ୍ୟନ୍ତ ଥିବା) ସ୍ଥାପିତ ହୋଇ ସାରିଥିଲା । ତଥାପି ରାଜ୍ୟ ପରିଚାଳକ ଏବଂ ପରାମର୍ଶଦାତା ଶୁଭେଚ୍ଛୁଗଣଙ୍କ ସ୍ପଷ୍ଟ ମତ ଥିଲା, ଅଧିକ ଶିକ୍ଷାପାଇଁ କୃଷ୍ଣଚନ୍ଦ୍ର ରାଜକୁମାର କଲେଜକୁ ଯିବା ଉପାଦେୟ ହେବ ।

ସେଇୟା ହିଁ ହୋଇଥିଲା ।



Ama Odisha pdf (aamaodisha@gmail.com)

ସେଇଠି ନିଉଡ୍ଵିଙ୍ଗଟନ୍ ଆବାସିକ କଲେଜରେ ସେ ନାମ ଲେଖାଇଥିଲେ । ମାନ୍ଦ୍ରାଜ ପ୍ରେସିଡେନ୍ସି ଅନ୍ତର୍ଗତ ଅଧିକାଂଶ ରାଜା ଜମିଦାରଙ୍କ ସନ୍ତାନଗଣ ସେଠାରେ ଅଧ୍ୟୟନ କରୁଥିଲେ । ବାସ୍ତବରେ କୃଷ୍ଣଚନ୍ଦ୍ରଙ୍କୁ ଉତ୍ତମ / ଶିଷ୍ଟ ବ୍ୟକ୍ତି ରୂପେ ଗଢ଼ି ତୋଳିବା ଦିଗରେ ସେହି କଲେଜ ଯଥେଷ୍ଟ ସହାୟକ ହୋଇଥିଲା । ବଳିଷ୍ଠ ବ୍ୟକ୍ତିତ୍ୱ ଗଠନ ଦିଗରେ ଉକ୍ତ କଲେଜର ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । ରାଜକୁମାରଙ୍କ ଭବିଷ୍ୟତ କାର୍ଯ୍ୟକଳାପକୁ ଆଖିଆଗରେ ରଖି ଏବଂ ସେମାନେ ଆପଣେଇ ନେବାକୁ ଥିବା ରାଜ୍ୟଶାସନ, ପ୍ରଜାଗଣଙ୍କ ସର୍ବାଙ୍ଗୀନ ଉନ୍ନତି ଇତ୍ୟାଦିକୁ ଦୃଷ୍ଟିରେ ରଖି ଯଥୋଚିତ ଶିକ୍ଷାଦାନ ଥିଲା ସେହି କଲେଜର ବିଶେଷତ୍ୱ । କୃଷି, ପଶୁପାଳନ, ଲୋକଙ୍କ ସମୃଦ୍ଧ ସାମାଜିକ ଜୀବନଯାପନପାଇଁ ବିଭିନ୍ନ ସୁବିଧା ସୁଯୋଗ ପ୍ରଦାନ ଇତ୍ୟାଦି ବିଷୟାବଳୀରେ ପରିପୂର୍ଣ୍ଣ ଥିଲା ସେଠିକାର ଶିକ୍ଷା କାର୍ଯ୍ୟକ୍ରମ । ସେଭଳି ଶିକ୍ଷା ନିର୍ଘଣ୍ଟ ସବୁ କୃଷ୍ଣଚନ୍ଦ୍ରଙ୍କୁ ବେଶ୍ ମନୋଯୋଗୀ କରାଇ ପାରିଥିଲା । ଅତଏବ ସେଠାରୁ ଶିକ୍ଷା ଶେଷକରି ଲେଉଟି ଆସିବା ବେଳକୁ ସେ ଜଣେ ସମ୍ଭ୍ରାନ୍ତ, ସୁଶୀଳ ଏବଂ ସଂସ୍କୃତିସଂପନ୍ନ ଯୁବକ ହୋଇ ଯାଇଥିବା ସଙ୍ଗେ ସଙ୍ଗେ ହୋଇଯାଇଥିଲେ ମଧ୍ୟ ଜଣେ ଜାତୀୟବାଦୀ, ଜନନୀ ଜନ୍ମଭୂମି ପ୍ରତି ବେଶ୍ ମମତାମୟ ଯୁବରାଜ ।

ସେଇ କଲେଜର ଛାତ୍ର ଥିବା ବେଳେ ଯୁବକ କୃଷ୍ଣଚନ୍ଦ୍ରଙ୍କ ଉପରେ ଯେଉଁ ଅଧ୍ୟାପକମାନେ ପ୍ରଭାବ ପକାଇଥିଲେ ସେମାନେ ହେଲେ ମିଷ୍ଟର କ୍ୟାମେରାନ୍ ମରିଶନ୍ ଏବଂ ମିଷ୍ଟର ଡେଲାହେ । ଆପଣାର ଚରିତ୍ରବତ୍ତା ତଥା ବିଶିଷ୍ଟ ଭୁଗୋଳବିଦ୍ ମରିଶନ୍‌ଙ୍କ ଶିକ୍ଷା ପ୍ରଣାଳୀ ଏବଂ ବିଦ୍‌ବତ୍ତା କିଶୋର କୃଷ୍ଣଚନ୍ଦ୍ରଙ୍କୁ ବେଶ୍ ଅଭିଭୂତ କରିଦେଇଥିଲା । ତାଙ୍କର ସ୍ନେହ, ଶ୍ରଦ୍ଧାପୂର୍ଣ୍ଣ ବ୍ୟବହାରରେ ବିଶେଷ ଭାବେ ଆକୃଷ୍ଟ କୃଷ୍ଣଚନ୍ଦ୍ର ତାହାଙ୍କୁ ସାରା ଜୀବନ ମନେ ରଖିଥିଲେ ।



**କଲେଜ ଛାତ୍ର କୃଷ୍ଣଚନ୍ଦ୍ର**

ଦୀର୍ଘ ପ୍ରାୟ ସାତବର୍ଷ ସେଠାରେ ଶିକ୍ଷାଲାଭ କରିବା ପରେ



Ama Odisha pdf (aamaodisha@gmail.com)

୧୯୧୨ ମସିହା ସେପ୍ଟେମ୍ବର ମାସରେ ଲେଉଟି ଆସିଥିଲେ ପାରଳାଖେମୁଣ୍ଡି । ତାହାଙ୍କର ପ୍ରତ୍ୟାବର୍ତ୍ତନ ବେଳେ ପାରଳାବାସୀଙ୍କ ତରଫରୁ ଯୁବରାଜଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ପ୍ରଦତ୍ତ ହୋଇଥିଲା । ସ୍ୱଳ୍ପକାଳ ପରେ ସିଂହାସନ ଆରୋହଣ କରିବାକୁ ଥିବା ଯୋଗୁଁ, ପାରଳାରେ ପହଞ୍ଚିବା ପରେ ପରେ, ରାଜ୍ୟ ସଂପର୍କୀୟ ବିଭିନ୍ନ ବିଷୟର ଅନୁଶୀଳନ କରିବାରେ ନିଜକୁ ନିୟୋଜିତ କରିଥିଲେ ପ୍ରାୟ ଛଅ/ସାତ ମାସ ପାଇଁ । ନିଜ ରାଜ୍ୟର ସୀମା ସରହଦଠାରୁ ଆରମ୍ଭ କରି ରାଜ୍ୟର ମାଳ ଅଞ୍ଚଳ, ସମତଳ ଅଞ୍ଚଳ, ଆଦିବାସୀ ସଂପ୍ରଦାୟଗୁଡ଼ିକର ଚାଲିଚଳଣି, କୃଷି, ଗୋପାଳନ, ରାଜସ୍ୱ, ସମସ୍ଥାନ (ଜମିଦାରି ପରିଚାଳନା ପାଇଁଥିବା କାର୍ଯ୍ୟାଳୟ)ର ପରିଚାଳନା, ରାଜ୍ୟର ଆୟବ୍ୟୟ ଇତ୍ୟାଦି ବିଷୟରେ ପୁଙ୍ଖାନୁପୁଙ୍ଖ ଭାବରେ ଜାଣିବାପାଇଁ ସଫଳ ପ୍ରୟାସ କରିଥିଲେ । ନିଜ ଜମିଦାରିର ପ୍ରମୁଖ ବ୍ୟକ୍ତି-ବିଷୋୟୀ ଓ ଦୋରାମାନଙ୍କ ସଂପର୍କରେ ବିଭିନ୍ନ ତଥ୍ୟ ଏବଂ ରାଜ୍ୟ ପରିଚାଳନାରେ ସେମାନଙ୍କ ସହାୟତାପାଇଁ ପ୍ରଦତ୍ତ ଇନାମ, ଜମି, ତୋଟା, ବଗିଚା, ପ୍ରଭୃତିର ବିଶଦ୍‌ବିବରଣୀ ନିଷ୍ଠାପର ଭାବରେ ଅନୁଧ୍ୟାନ କରିଥିଲେ ।

ସେତେବେଳେ ୫୦୩ଟି ଗ୍ରାମ ବିଶିଷ୍ଟ ପାରଳା ଜମିଦାରିର ଆୟତନ ଥିଲା ୬୩୯ ବର୍ଗ ମାଇଲ୍ ଏବଂ ତନ୍ମଧ୍ୟରୁ ୨୮୫ ବର୍ଗମାଇଲ୍ ସମତଳ ଅଞ୍ଚଳ ଥିଲାବେଳେ ଅବଶିଷ୍ଟ ଥିଲା ମାଳ ଅଞ୍ଚଳ । ଜଙ୍ଗଲ ଜାତ ଦ୍ରବ୍ୟ ମାଳ, ପାହାଡ଼ିଆ ଅଞ୍ଚଳରୁ ପ୍ରଚୁର ପରିମାଣରେ ଅମଳ ହେଉଥିବା ବେଳେ କୃଷି ଉତ୍ପାଦନପାଇଁ ସମତଳ ଅଞ୍ଚଳରେ ଜଳସେଚନର ବ୍ୟାପକ ବ୍ୟବସ୍ଥା କରିଥିଲେ ତାହାଙ୍କର ପୂର୍ବପୁରୁଷଗଣ । ପାରଳା ଜମିଦାରିର ବାର୍ଷିକ ଆୟ ସେତେବେଳେ ପ୍ରାୟ ୧୦ ଲକ୍ଷ ଟଙ୍କା ଥିବାବେଳେ ପେସ୍‌କସ୍ ହିସାବରେ ସରକାରଙ୍କୁ ଦାଖଲ କରାଯାଉଥିଲା ୮୭,୮୨୫ ଟଙ୍କା । ଏଇ ସବୁ ସଂପର୍କରେ ସେ ତନ୍ନତନ୍ନ କରି ଅନୁଧ୍ୟାନ କରିଥିଲେ ସେଇ କେତେଦିନ ।

ପ୍ରାୟ ୨୦ ବର୍ଷ ବୟସ୍କ ନବଯୁବକ କୃଷ୍ଣଚନ୍ଦ୍ରଙ୍କ ହୃଦୟରେ ସେତେବେଳକୁ ଜାତୀୟ ଚେତନାର ଉଦ୍‌ବେଳିତ ତରଙ୍ଗ କେବଳ ସୃଷ୍ଟି ହୋଇ ସାରିଥିଲା ନୁହେଁ, ବେଶ୍ ଉତ୍ତାଳ ହୋଇ ଉଠୁଥିଲା କହିଲେ ଭୁଲ ହେବନାହିଁ । ମାଟି ମାଆର ଆହ୍ୱାନ ସତେ ଯେମିତି ତାଙ୍କ କାନରେ ବାରମ୍ବାର ପ୍ରତିଧ୍ୱନିତ ହେଉଥିଲା । କେବଳ ପାରଳା ରାଜ୍ୟର ପ୍ରଜାଗଣଙ୍କ ପାଇଁ ନୁହେଁ, ସମସ୍ତ ଓଡ଼ିଆଭାଷୀ ଜନଗଣଙ୍କ ପାଇଁ ସେ ମମତାମୟ ହୋଇଯାଇ ସାରିଥିଲେ ସେତିକି ବେଳକୁ ।

କେଜାଣି, ଦାଦା, ପିତା ଏବଂ ପାରିବାରିକ ଉପଦେଷ୍ଟା ଶ୍ୟାମସୁନ୍ଦର ରାଜଗୁରୁ ବଞ୍ଚିଥିଲେ ସେଇ ମମତାର ଧାରା ଅଧିକ ତୀବ୍ର, ଅଧିକ ଉଦ୍‌ବେଳିତ ହୋଇଥାଆନ୍ତା ପରା ! ସେ ଅଧ୍ୟୟନ ଶେଷକରି ରାଜଧାନୀକୁ ଫେରିବାବେଳକୁ ସେମାନେ ସ୍ୱର୍ଗବାସୀ ହୋଇ ସାରିଥିଲେ । କିନ୍ତୁ କୃଷ୍ଣଚନ୍ଦ୍ରଙ୍କ ମନରେ ଜାତୀୟ ପ୍ରୀତି, ଜାତୀୟ ଭାଷା ପ୍ରତି ମମତା, ଅତୀତ ଉତ୍କଳର ବଳିଷ୍ଠ ସଂସ୍କୃତି ପ୍ରତି ଆକର୍ଷଣ ଆଦିକାଳରେ କୃଷ୍ଣଚନ୍ଦ୍ରଙ୍କ ମନରେ ଆଲୋଡ଼ନ ସୃଷ୍ଟି କରାଇବାରେ ସେଇମାନେ ହିଁ ଥିଲେ ପ୍ରେରଣାଦାତା । ସମୟକ୍ରମେ ସେଇ ପ୍ରତ୍ୟେକଟି ବିଭବ ବେଶ୍ ଗଭୀର



Ama Odisha pdf (aamaodisha@gmail.com)



ଦାଦା ପଦ୍ମନାଭଙ୍କ ସହ ପୁତୁରା କୃଷ୍ଣଚନ୍ଦ୍ର



Ama Odisha pdf (aamaodisha@gmail.com)

ଭାବରେ ପ୍ରଭାବିତ କରିଥିଲା ତାହାଙ୍କୁ । ହେଲେ ମୁଖ୍ୟ ପ୍ରେରଣାଦାତାଙ୍କ ମଧ୍ୟରୁ କେହି ସେତେବେଳେ ନଥିଲେ ।

ଦାଦା ପଦ୍ମନାଭ ଗଜପତି ଥିଲେ ୧୮୬୭ରେ ଜନ୍ମିତ ପିତା ଗୌର ଗଜପତିଙ୍କଠାରୁ ପ୍ରାୟ ପାଞ୍ଚବର୍ଷ ସାନ । କିନ୍ତୁ ୧୯୦୪ ଫେବ୍ରୁଆରି ଚାରି ତାରିଖ ଦିନ ମାତ୍ର ୩୨ ବର୍ଷ ବୟସରେ ସେ ପ୍ରଥମେ ଅକାଳରେ ମୃତ୍ୟୁ ବରଣ କରିଥିଲେ । ତତ୍‌ପରବର୍ଷ ପିତା ଗୌର ଗଜପତି ଦାଦାଙ୍କ ପଥାନୁସରଣ କରିଥିଲେ ସେଇ ଅକାଳରେ । ଜୀବନକାଳ ଭିତରେ ସେଇ ଦୁଇଭାଇଙ୍କ ଭିତରେ ଥିବା କ୍ଷୀର-ନୀରର ସଂପର୍କ ସତେ ଯେମିତି ପରପାରରେ ମଧ୍ୟ ସେମିତି ଅକ୍ଷୁଣ୍ଣ ରଖିବାପାଇଁ ବ୍ୟଗ୍ର ଥିଲେ ।

ଗଜପତି କୃଷ୍ଣଚନ୍ଦ୍ରଙ୍କ ପିତା ଓ ଦାଦାଙ୍କ ମଧ୍ୟରେ ଥିଲା ଅନାବିଳ ସଂପର୍କ । ପଦ୍ମନାଭଙ୍କ ଦିବ୍ୟ ଚେହେରା ଯୋଗୁଁ ତାଙ୍କ ପିତା ପ୍ରତାପରୁଦ୍ର ଦେବ ତାଙ୍କରି ଶ୍ରଦ୍ଧାନାମ ରଖିଥିଲେ ଚନ୍ଦ୍ର । ସେହି କାରଣରୁ ହିଁ ସେ ଚନ୍ଦ୍ର ମହାରାଜା ହିସାବରେ ଜନ ସମାଜରେ ପରିଚିତି ଲାଭ କରିଥିଲେ । ଅଗ୍ରଜ ରାଜ୍ୟ ପରିଚାଳନାର ଦାୟିତ୍ୱ ସ୍ୱାଭାବିକ ଭାବେ ଗ୍ରହଣ କରିଥିବା ବେଳେ ସେ ନିଜେ ରାଜ୍ୟର ସାମାଜିକ ତଥା ସାଂସ୍କୃତିକ ଉନ୍ନତି କକ୍ଷେ ମନଧ୍ୟାନ ସଂପୂର୍ଣ୍ଣ ନିୟୋଜିତ କରିଥିଲେ । ମନେ ରଖିବାର କଥା ଯେ ସେ ନିଜେ ଥିଲେ ଜଣେ ଉଚ୍ଚକୋଟୀର ସାହିତ୍ୟିକ ଏବଂ ନାଟ୍ୟକାର । ସେ ତାହାଙ୍କ ରଚିତ ନାଟକଗୁଡ଼ିକୁ ମଞ୍ଚସ୍ଥ ମଧ୍ୟ କରାଉଥିଲେ ପାରଳାରେ । ସେଥିପାଇଁ ଗୋଟିଏ ରଂଗମଞ୍ଚ ତୟାର୍ ହୋଇଥିଲା । ସେଠାରେ କେବଳ ତାଙ୍କର ରଚନା ନୁହେଁ, ଅନ୍ୟମାନଙ୍କର ନାଟକଗୁଡ଼ିକ ମଧ୍ୟ ଅଭିନୀତ ହେଉଥିଲା । ସେଠିକାର ପ୍ରତିଷ୍ଠିତ ରଂଗମଞ୍ଚଟି ପ୍ରାକୃତିକ ଓଡ଼ିଶାର ପ୍ରଥମ ଆଧୁନିକ ରଂଗମଞ୍ଚ ବୋଲି ଅନେକ ନାଟ୍ୟ ଆଲୋଚକଙ୍କ ମତ । ତାହା ପଦ୍ମନାଭ ରଂଗାଳୟ ନାମରେ ନାମିତ ହୋଇଥିଲା ଏବଂ ମହାରାଜା କୃଷ୍ଣଚନ୍ଦ୍ର ତାଙ୍କରି ସମୟରେ ତାହାର ଉନ୍ନତିପାଇଁ ଏବଂ ତାହାର ଆଧୁନିକୀକରଣ ପାଇଁ ମଧ୍ୟ ଉଦ୍ୟମ ଜାରି ରଖିଥିଲେ ।

ବାସ୍ତବରେ ପଦ୍ମନାଭ ତାହାଙ୍କର ସ୍ୱଳ୍ପ ଜୀବନକାଳ ସାହିତ୍ୟ, ସଂଗୀତ ଚର୍ଚ୍ଚା, ଗ୍ରନ୍ଥପ୍ରଣୟନ, ନାଟକ ରଚନା ଓ ଅଭିନୀତ କରାଇବା ଇତ୍ୟାଦି ସାହିତ୍ୟିକ, ସାଂସ୍କୃତିକ କାର୍ଯ୍ୟକ୍ରମ ଭିତରେ ହିଁ ଅତିବାହିତ କରିଥିଲେ । ପୁଣି ରାଜ୍ୟରେ ଜନସମାଜରେ ସାମାଜିକ ଚେତନା ଏବଂ ଜନଜୀବନର ଉନ୍ନତି କକ୍ଷେ ଯେଉଁ ବିଭିନ୍ନ ଉଦ୍ୟମ ଚଳାଇ ରଖିଥିଲେ ତନ୍ମଧ୍ୟରେ ପ୍ରଧାନ ଥିଲା ପାରଳା ସହରରେ 'ଉତ୍କଳ ହିତୈଷିଣୀ ସମାଜ'ଗଠନ । ସେହି ଅନୁଷ୍ଠାନ ସମଗ୍ର ଉତ୍କଳୀୟମାନଙ୍କ ଉନ୍ନତିପାଇଁ ଉଦ୍ଦିଷ୍ଟ ଥିଲା ଏବଂ ସେଇ ଅନୁଷ୍ଠାନ ତରଫରୁ ସେ ନିଜେ ଭାରତୀୟ ଜାତୀୟ କଂଗ୍ରେସର ବାର୍ଷିକ ଅଧିବେଶନଗୁଡ଼ିକରେ (ପ୍ରାୟ ତିନିଥର) ଯୋଗ ଦେବା ସଙ୍ଗେସଙ୍ଗେ ଅନ୍ୟମାନଙ୍କୁ ମଧ୍ୟ ପ୍ରତିନିଧି ସ୍ୱରୂପ ପ୍ରେରଣ କରୁଥିଲେ । ସେଥିରୁ



Ama Odisha pdf (aamaodisha@gmail.com)

ପଦ୍ମନାଭ ଦେବଙ୍କ ଜାତୀୟ ଚେତନାର ପ୍ରତିଫଳନକୁ ଲକ୍ଷ୍ୟ କରାଯାଇପାରେ । ସେହି ଅନୁଷ୍ଠାନ ଗଠନରେ ଶ୍ୟାମସୁନ୍ଦର ରାଜଗୁରୁ ମଧ୍ୟ ଥିଲେ ଜଣେ ପ୍ରମୁଖ ସହଯୋଗୀ । ବିଶେଷ ଉଲ୍ଲେଖଯୋଗ୍ୟ ଯେ ସେହି ଅନୁଷ୍ଠାନରେ ଉପରୋକ୍ତ କାର୍ଯ୍ୟକଳାପ ସବୁର ସିଧା ସଳଖ ପ୍ରଭାବ କୃଷ୍ଣଚନ୍ଦ୍ରଙ୍କ ଉପରେ ପଡ଼ିଥିଲା ବାଲ୍ୟ ତଥା କୈଶୋର କାଳରେ ।

ଅବିଭକ୍ତ ଗଞ୍ଜାମ ଜିଲ୍ଲାର ପ୍ରଥମ ସ୍ନାତକ ତଥା ପାରଳାରେ ସାମାଜିକ ତଥା ସାଂସ୍କୃତିକ ଜୀବନକୁ ସମୁନ୍ନତ କରାଇବା ଉଦ୍ୟମରେ ଅଗ୍ରଣୀ ସମାଜସେବୀ ଶ୍ୟାମସୁନ୍ଦର ରାଜଗୁରୁ ୧୮୬୬ରେ ଜନ୍ମଗ୍ରହଣ କରି ୧୮୯୦ ମସିହାରେ ଖଲ୍ଲିକୋଟ କଲେଜ (ବ୍ରହ୍ମପୁର)ରୁ ଆଇ.ଏ. (ତତ୍‌କାଳୀନ ଏଫ୍.ଏ) ତଥା ରାଜମହେନ୍ଦ୍ରୀ କଲେଜରୁ ୧୮୯୨ରେ ବି.ଏ. ପାସ୍ କରି ନିଜ ରାଜ୍ୟକୁ ଫେରି ଆସିଥିଲେ ଜନସେବାପାଇଁ । ସେହିଭଳି ନିଷ୍ପତ୍ତି ନେବା ଯୋଗୁଁ ହିଁ ମହାରାଜାଙ୍କ ଦୃଷ୍ଟି ଆକର୍ଷଣ କରିପାରିଥିଲେ ଏବଂ ସମୟକ୍ରମେ ରାଜପରିବାର ସହିତ ବିଶେଷ ଭାବେ ସଂପୃକ୍ତ ହୋଇ ଯାଇଥିଲେ । ଗୌରଗଜପତି ତାହାଙ୍କୁ ପାରଳା ମୁନିସିପାଲିଟିର ପ୍ରଥମ ଚେୟାରମ୍ୟାନ୍ ରୂପେ ନିଯୁକ୍ତି ଦେଇଥିଲେ ଏବଂ ସେହିଭଳି ଭାବେ ଦୀର୍ଘ ୧୫ ବର୍ଷ କାଳ ସେ ରାଜ୍ୟବାସୀଙ୍କ ସେବା କରିଥିଲେ । ବିଶେଷ କରି ଚନ୍ଦ୍ର ମହାରାଜାଙ୍କ ସହିତ ତାଙ୍କର ଘନିଷ୍ଠ ସହଯୋଗ ଥିଲା ଏବଂ ଉଭୟେ ମିଶି ରାଜ୍ୟର ସାମାଜିକ, ସାଂସ୍କୃତିକ ତଥା ଜାତୀୟ ଜୀବନକୁ ସମୃଦ୍ଧ କରିବାରେ ଉଲ୍ଲେଖଯୋଗ୍ୟ ଭୂମିକା ନିର୍ବାହ କରିଥିଲେ । ସେ ମଧ୍ୟ ବ୍ରହ୍ମପୁରରେ ଅନୁଷ୍ଠିତ ଗଂଜାମ ଜାତୀୟ ସମିତିର ପ୍ରଥମ ଅଧିବେଶନରେ ସଭାପତି ଦାୟିତ୍ୱ ନିର୍ବାହ କରିଥିଲେ । ବାସ୍ତବରେ ତାହାହିଁ ଥିଲା ଉତ୍କଳ ସମ୍ମିଳନୀର ଆଦ୍ୟ ପାହାଚ ।

ଶ୍ରୀଯୁକ୍ତ ରାଜଗୁରୁ ଥିଲେ ପାରଳା ରାଜପରିବାରର ଜଣେ ମୁଖ୍ୟ ପରାମର୍ଶଦାତା । ତାଙ୍କରି ପ୍ରଭାବରେ ମଧ୍ୟ ଗଜପତି କୃଷ୍ଣଚନ୍ଦ୍ର ବେଶ୍ ପ୍ରଭାବିତ ହୋଇଥିଲେ । ହେଲେ ସେ ମାନ୍ଦ୍ରାଜରେ ଅଧ୍ୟୟନରତ ଥିବାବେଳେ ରାଜଗୁରୁ ମହାଶୟଙ୍କର ମୃତ୍ୟୁ ହୋଇଥିଲା ୧୯୦୯ ଜୁଲାଇ ୧୭ ତାରିଖ ଦିନ । ସେହି ମୃତ୍ୟୁ ସମ୍ବାଦ ଯୁବକ କୃଷ୍ଣଚନ୍ଦ୍ରଙ୍କ ମାନସିକ ଚେତନାକୁ ଗଭୀର ଭାବରେ ଆଲୋଡ଼ିତ କରାଇ ଦେଇଥିଲା । କିନ୍ତୁ ନିୟତିର ଖେଳ ଉପରେ କିଏ ବା ଅଙ୍କୁଶ ଲଗାଇ ପାରିବ ! ସେଇ ଅଙ୍କୁଶହୀନ ନିୟତିର କାଳଚକ୍ର କୃଷ୍ଣଚନ୍ଦ୍ରଙ୍କ ପିତା ଓ ପିତୃବ୍ୟଙ୍କୁ ମଧ୍ୟ ଅକାଳରେ ଆୟତ୍ତ କରିନେଇଥିଲା । ତେଣୁ ଆପାତତଃ ବାଲ୍ୟ/କୈଶୋରରେ ଆପଣା ରାଜ୍ୟରେ ଯେଉଁମାନଙ୍କ ଯୋଗୁଁ ମୁଖ୍ୟତଃ ତାହାଙ୍କର ମାନସିକ ଚେତନାରେ ଜାତୀୟ ଭାବର ସ୍ଫୁରଣ ହୋଇଥିଲା, ସେ ମାନ୍ଦ୍ରାଜରୁ ଫେରିବାବେଳକୁ, ସେମାନେ ଆଉ ଇହଜଗତରେ ନଥିଲେ । ସେଇ ଚେତନା ପ୍ରବାହକୁ ଆଉ ଯେଉଁମାନେ ଚଳଚଞ୍ଚଳ କରାଇବାରେ ପ୍ରମୁଖ ଭୂମିକା ନିଭାଇଥିଲେ ସେମାନେ ଥିଲେ ପ୍ରାକୃତିକ ଓଡ଼ିଶାର ନେତୃମଣ୍ଡଳୀ– ମଧୁସୂଦନ, ଫକୀରମୋହନ ପ୍ରମୁଖ ଏବଂ ଉତ୍କଳ ସମ୍ମିଳନୀର ସଂଗଠକଗଣ, ଓଡ଼ିଆ ସାହିତ୍ୟ ଜଗତକୁ ଉଦ୍‌ବେଳିତ କରୁଥିବା ରାଧାନାଥ, ଗଙ୍ଗାଧର ପ୍ରମୁଖ



Ama Odisha pdf (aamaodisha@gmail.com)

ରଥୀଗଣ ତଥା ଗୋପବନ୍ଧୁ ଏବଂ ସତ୍ୟବାଦୀ ଗୋଷ୍ଠୀର ମଣିଷ ତୟାର କରୁଥିବା କାରଖାନାର କୁଶଳୀ କର୍ମକାରଗଣ ଏବଂ ଅନ୍ୟାନ୍ୟ ଦେଶ ସେବକ ଗୋଷ୍ଠୀ ।

କୃଷ୍ଣଚନ୍ଦ୍ର ରାଜକୁମାର କଲେଜରେ ଅଧ୍ୟୟନରତ ଥିବାବେଳୁ ହିଁ ଓଡ଼ିଶାରେ ଏବଂ ସାମୂହିକ ଭାବେ ଓଡ଼ିଆମାନଙ୍କର ସାମାଜିକ ଜାଗରଣ ତଥା ସର୍ବତୋନ୍ନତି ପାଇଁ ନିଆ ଯାଉଥିବା ବିଭିନ୍ନ ପଦକ୍ଷେପଗୁଡ଼ିକ ସଂପର୍କରେ ସଂପୂର୍ଣ୍ଣ ଅବହିତ ଥିଲେ । ତେଣୁ ଆପାତତଃ ଉତ୍କଳର ନେତୃବୃନ୍ଦ ଏବଂ ସେଇମାନଙ୍କ କାର୍ଯ୍ୟକଳାପ ସଂପର୍କରେ ତାହାଙ୍କ ମନରେ ନିଶ୍ଚିତ ଧାରଣା ସୃଷ୍ଟି ହୋଇସାରିଥିଲା ଛାତ୍ରାବସ୍ଥା ଶେଷ ହେବା ପୂର୍ବରୁ ଏବଂ ପୁଣି ସମ୍ଭବତଃ ପ୍ରାକୃତିକ ଓଡ଼ିଶାରୁ ଦୂରରେ ଥାଇ ସୁଦ୍ଧା ସେ ମନେମନେ ସଂକଳ୍ପ କରିଥିଲେ ରାଜ୍ୟକୁ ଫେରିବା ପରେପରେ ଜାତୀୟ ସ୍ରୋତରେ ହିଁ ଆପଣାକୁ ଭସାଇଦେବେ । ସେତେବେଳକୁ ବିଶେଷକରି ଦେଶପ୍ରାଣ ମଧୁସୂଦନ ଓ ଜାତୀୟବାଦୀ ଗୋପବନ୍ଧୁଙ୍କ ପ୍ରଭାବରେ ପ୍ରଭାବିତ ହୋଇଯାଇଥିଲେ ସେ ।

ତାହାର ଯଥାର୍ଥ ପ୍ରତିଫଳନ ହୋଇଥିଲା ଆପଣା ରାଜ୍ୟକୁ ଫେରି ଯୁବକ କୃଷ୍ଣଚନ୍ଦ୍ର ଖେମଣ୍ଡି ରାଜ ସିଂହାସନ ଆରୋହଣ କରିବା ପରେପରେ ।

—୦—



Ama Odisha pdf (aamaodisha@gmail.com)

# ସିଂହାସନାସୀନ କୃଷ୍ଣଚନ୍ଦ୍ର

୧୯୧୩ ମସିହା ଏପ୍ରିଲ୍ ୨୬ ତାରିଖ ।

ସେଦିନ ସକାଳୁ ସକାଳୁ ୨୧ ବର୍ଷରେ ପଦାର୍ପଣ କରିଥିବା ଯୁବକ କୃଷ୍ଣଚନ୍ଦ୍ର ଜଗତର ନାଥ ଶ୍ରୀଜଗନ୍ନାଥଙ୍କ ଦର୍ଶନ କରିଥିଲେ, ପୂଜାର୍ଚ୍ଚନା କରିଥିଲେ; ଆଶିଷ ମାଗିଥିଲେ କେବଳ ତାଙ୍କରି ପ୍ରଜାଗଣଙ୍କର ନୁହେଁ, ଏ ଜାତିର ମଙ୍ଗଳପାଇଁ ଜନସେବା କରିବାକୁ ଯଥେଷ୍ଟ ଶକ୍ତି ଏବଂ ସାମର୍ଥ୍ୟ ପ୍ରଦାନ କରିବାପାଇଁ । ତତ୍‌ପରେ ରାଜ ସିଂହାସନାସୀନ ହେବାପାଇଁ ଆୟୋଜିତ ଉତ୍ସବରେ ଯୋଗ ଦେଇଥିଲେ । ସେଥିପାଇଁ ନିର୍ମିତ ହୋଇଥିଲା ଏକ ସ୍ୱତନ୍ତ୍ର ମଣ୍ଡପ । ହୋଇଥିଲା ହୋମ, ଯଜ୍ଞ ଏବଂ ସ୍ୱତନ୍ତ୍ର ପୂଜାର ଆୟୋଜନ ।

ସେଇ ଉତ୍ସବରେ କୋର୍ଟ ଅଫ୍ ଓ୍ୱାର୍ଡ଼ସଙ୍କ ତରଫରୁ ପ୍ରତିନିଧି ରୂପେ ଯୋଗ ଦେଇଥିଲେ ମି.ଏନ୍ ମେକ୍ ମାଇକଲ୍- ଆଇ.ସି.ଏସ୍. । ସେ ଭାରତ ସରକାରଙ୍କ ତରଫରୁ ପାରଳା ରାଜ୍ୟର ଶାସନଭାର ମହାରାଜା କୃଷ୍ଣଚନ୍ଦ୍ରଙ୍କୁ ଅର୍ପଣ କରିଥିଲେ । ସେଇ ଉତ୍ସବରେ ରାଜକୀୟ ପରମ୍ପରାକ୍ରମେ ଦୁଇଜଣ ମୁସ୍‌ଲିମ୍ ଚୌକିଦାର ଆବୃତି କରିଥିଲେ ''ବୀରଶ୍ରୀ ଗଜପତି ଗୌଡ଼େଶ୍ୱର, ନବକୋଟି କର୍ଣ୍ଣାଟ କଳବର୍ଗେଶ୍ୱର, ବିରାଧିବୀରବର ଶ୍ରୀଶ୍ରୀଶ୍ରୀ ଗଜପତି, ଶ୍ରୀଶ୍ରୀଶ୍ରୀ କ୍ଷେତ୍ରପତି, ଶ୍ରୀଶ୍ରୀଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣଦେବ ମେହରବାନି-ଇ-ଦୋସ୍ତାନ୍' (ମୋ ରାଜ୍ୟ) । ଏହି ଉପାଧିର 'ମେହରବାନି-ଇ-ଦୋସ୍ତାନ' ଅଂଶଟି ଅତୀତରେ ଗୋଲକୋଣ୍ଡାର ଶାସକମାନଙ୍କ ଦ୍ୱାରା ବନ୍ଧୁତାର ନିଦର୍ଶନ ସ୍ୱରୂପ ଖେମଣ୍ଡି ରାଜବଂଶକୁ ପ୍ରଦାନ କରାଯାଇଥିଲା । ତେବେ ଗଜପତି କୃଷ୍ଣଚନ୍ଦ୍ର ଉକ୍ତ ଉପାଧିଟିକୁ କୌଣସି ସାଧାରଣ କାର୍ଯ୍ୟବେଳେ ବ୍ୟବହାର ନକରି କେବଳ ରାଜକାର୍ଯ୍ୟ ସହିତ ସଂପୃକ୍ତ ଉତ୍ସବ ଅନୁଷ୍ଠାନଗୁଡ଼ିକରେ ହିଁ ବ୍ୟବହାର କରୁଥିଲେ ।

ସେ ଥିଲେ ପାରଳାରେ ରାଜସିଂହାସନ ଆରୋହଣ କରିଥିବା ସପ୍ତମ ତଥା ଶେଷ ରାଜା । ଇଂରେଜ ସରକାର ଗୋଟିଏ ଜମିଦାରି ରୂପେ ସ୍ୱୀକାର କରିଥିଲେ ସୁଦ୍ଧା ଖେମଣ୍ଡି ପ୍ରଥମରୁ ଥିଲା ଏକ ସ୍ୱତନ୍ତ୍ର ଏବଂ ସାର୍ବଭୌମ ରାଜ୍ୟ ଏବଂ ତାହାର ଶାସକଗଣ ମଧ୍ୟ ଥିଲେ ଭାରତ ବିଖ୍ୟାତ



Ama Odisha pdf (aamaodisha@gmail.com)

ଗଙ୍ଗବଂଶର ଏକ ଧାରା । ସେଇ କ୍ଷୁଦ୍ର ଧାରାଟିର ବିବରଣୀ ୧୨୪୫ ମସିହାରୁ ଶେଷ ପର୍ଯ୍ୟନ୍ତ ଇତିହାସରେ ଉପଲବ୍ଧ । ପ୍ରସଙ୍ଗକ୍ରମେ ଏଠାରେ ଉଲ୍ଲେଖ କରାଯାଇପାରେ ଯେ ଖେମଣ୍ଡି ରାଜ୍ୟର ପ୍ରଥମ ରାଜଧାନୀ ଗୁଡ଼ାରିକଟକରୁ ପ୍ରାପ୍ତ ତଥ୍ୟ ଅନୁଯାୟୀ, ଅନ୍ୟୂନ ୧୭୩ ବର୍ଷର ଶାସନ ପରେ ଏବଂ ଆଠ ଜଣ ରାଜାଙ୍କ ପରେ ୧୪୨୩ ମସିହାରେ ନଗରୀ କଟକ ବା କଳିଙ୍ଗନଗର ସ୍ଥାନାନ୍ତର ହୋଇଥିଲା । ସେଇ ରାଜଧାନୀରୁ ପ୍ରାୟ ଦୁଇ ଶହ ବର୍ଷ ମଧ୍ୟରେ ସାତ ଜଣ ରାଜା ଶାସନ କରିବା ପରେ ୧୬ତମ ରାଜା ମୁକୁନ୍ଦଦେବଙ୍କ ଅମଳରେ ୧୬୫୬ ଖ୍ରୀଷ୍ଟାବ୍ଦରେ କଳିଙ୍ଗନଗରରୁ ତାହା ପୁରୁଣାପାଟଣାକୁ ସ୍ଥାନାନ୍ତର ହୋଇଥିଲା । ତାର ସମ୍ଭାବ୍ୟ କାରଣ ଥିଲା ଉତ୍କଳରେ ମୁଖ୍ୟ ଗଙ୍ଗବଂଶର ପତନ ଏବଂ ତତ୍‌ପରବର୍ତ୍ତୀ ରାଜନୈତିକ ଉଦ୍‌ବେଳନ ସମଗ୍ର କଳିଙ୍ଗ ସାମ୍ରାଜ୍ୟରେ । ସେଇ ପରିସ୍ଥିତିରେ ନୂତନ ରାଜଧାନୀରେ ଛଅଜଣ ରାଜା ଶାସନ କରିଥିଲେ । ଗଙ୍ଗବଂଶର ୨୧ତମ ରାଜାଙ୍କ ଅମଳରେ ୧୭୫୧ ମସିହାରେ ଶାସନକେନ୍ଦ୍ର ପୁରୁଣାପାଟଣାରୁ ପାରଳାଖେମୁଣ୍ଡିକୁ ସ୍ଥାନାନ୍ତର ହେବାର କାରଣ ଥିଲା, ପିଣ୍ଡାରି-ଜାଠମାନଙ୍କର ବାରମ୍ବାର ଆକ୍ରମଣଜନିତ ସାମାଜିକ ଅସ୍ଥିରତା । ଅପେକ୍ଷାକୃତ ଭାବରେ ନିରାପଦ ମନେ ହେଉଥିବା ପାରଳା ଏବଂ ପୁରାତନ କେନ୍ଦ୍ରରେ କିଛିକିଛି କାଳ ସମ୍ଭବତଃ ଶାସନ କରିଥିଲେ ୨୧ତମ ରାଜା ବୀରପ୍ରତାପରୁଦ୍ର ଦେବ । ସେତେବେଳେ ବର୍ତ୍ତମାନର ପାରଳା ରେଳଷ୍ଟେସନ ନିକଟବର୍ତ୍ତୀ ଅଞ୍ଚଳରେ ରାଜ ଉଆସ ନିର୍ମିତ ହୋଇଥିଲା । ପ୍ରାଥମିକ ଅବସ୍ଥାରେ ରାଜାଗଣ ସେଇ ଗଡ଼ରୁ ହିଁ ଶାସନ କରିଥିଲେ । ୧୮୩୫ ମସିହାରେ ବ୍ରିଟିଶ୍ ସରକାରଙ୍କ ତତ୍ତ୍ୱାବଧାନରେ ସରକାରୀ ସ୍ଥପତି ମି. ଚିଷମ୍‌ଙ୍କ ପ୍ରତ୍ୟକ୍ଷ ପରିଚାଳନାରେ ନୂତନ ଢାଞ୍ଚାରେ ତୟାର ହୋଇଥିଲା ବର୍ତ୍ତମାନର ରାଜପ୍ରାସାଦ । ଏହା ଥିଲା ଇଂଲଣ୍ଡ ରାଜ ଉଆସ ବର୍କିଙ୍ଗ୍‌ହାମ୍ ପେଲେସ୍‌ର ଏକ ଅବିକଳ ନକଲ । ପ୍ରାୟ ୩୩ ଏକର ପରିମିତ ଅଞ୍ଚଳରେ ଏହା ନିର୍ମିତ ହୋଇଥିଲା । ଏଇଠାରେ ହିଁ ମହାରାଜା କୃଷ୍ଣଚନ୍ଦ୍ର ରାଜା/ଜମିଦାରୀ ପଦବୀ ପାଇଥିଲେ ଏବଂ ପଦବୀରୁ ବିଦାୟ ମଧ୍ୟ ନେଇଥିଲେ ।

ହେଲେ ଆଜି ମଧ୍ୟ ପାରଳା ମହାରାଜା/ପାରଳା ଗଜପତି କହିଲେ କେବଳ ଜଣେ ବ୍ୟକ୍ତି କୃଷ୍ଣଚନ୍ଦ୍ର ନାରାୟଣ ଦେବଙ୍କୁ ହିଁ ସୂଚିତ କରିଥାଏ ।

ବିରାଟ ଐତିହ୍ୟଯୁକ୍ତ, କାହିଁ କେଉଁ ଦୀର୍ଘ ଅତୀତରୁ ଚାଲିଆସିଥିବା ଖେମଣ୍ଡି ରାଜ୍ୟରେ ଗଙ୍ଗବଂଶର ଗୋଟିଏ ଧାରାର ଅଂଶ ବିଶେଷ ସେଇ ଗଜପତି କୃଷ୍ଣଚନ୍ଦ୍ର ରାଜ୍ୟାଭିଷେକ ଅବସରରେ ବଂଶ ପରଂପରା ରକ୍ଷାକରି ଅନେକ ଦାନ କରିଥିଲେ । ତାହା ମଧ୍ୟ ଥିଲା ରାଜଧର୍ମର ଅଂଶବିଶେଷ । ପୁଣି କେତେଗୁଡ଼ିଏ ସଂକଳ୍ପ ମଧ୍ୟ କରିଥିଲେ ଯାହା ତାଙ୍କର ବ୍ୟକ୍ତିତ୍ୱର ପରିପ୍ରକାଶ କହିଲେ ଅତ୍ୟୁକ୍ତି ହେବ ନାହିଁ । ସେହି ସଂକଳ୍ପଗୁଡ଼ିକ ସେ ପୂର୍ବରୁ ନିର୍ଦ୍ଧାରଣ କରିଥିଲେ ଗଭୀର ମନୋନିବେଶ କରି ।



Ama Odisha pdf (aamaodisha@gmail.com)

ସେତେବେଳେ ସେ ଯେଉଁ କେତେକ ସଂକଳ୍ପ କରିଥିଲେ ତନ୍ମଧ୍ୟରେ ପ୍ରମୁଖ ଥିଲା ତାହାଙ୍କ ରାଜକୋଷରେ ଗଚ୍ଛିତ ରହିଥିବା ପ୍ରାୟ ୨୫ ଲକ୍ଷ ଟଙ୍କାକୁ ଆପଣାର ବିଳାସବ୍ୟସନପାଇଁ ବ୍ୟବହାର କରିବେ ନାହିଁ । ସେତିକିବେଳେ ସେ ମଧ୍ୟ ସଂକଳ୍ପ କରିଥିଲେ ଯେ ତାଙ୍କର ପୂର୍ବପୁରୁଷଙ୍କ କୀର୍ତ୍ତିକଳାପ ସବୁର କେବଳ ରକ୍ଷଣାବେକ୍ଷଣ ନୁହେଁ, ବରଂ ସେସବୁର ଉତ୍ତରୋତ୍ତର ଭାବରେ ଉନ୍ନତି କରିବାପାଇଁ ମଧ୍ୟ ଉଦ୍ୟମ କରିବେ । ପୁଣି ଅନ୍ୟତମ ସଂକଳ୍ପ ମଧ୍ୟରେ ଥିଲା ପଦବ୍ରଜରେ ବ୍ରହ୍ମକପାଳି ଯାଇ ସେଠାରେ ପିତୃପିତାମହଙ୍କ ଭଳି ପୂର୍ବପୁରୁଷଗଣଙ୍କପାଇଁ ପିଣ୍ଡଦାନ କରିବେ । ଆମ ପରଂପରାନୁକ୍ରମେ ସେଠାରେ ପିତୃଶ୍ରାଦ୍ଧ କରି ପିଣ୍ଡଦାନ କଲେ ପିତୃପୁରୁଷଗଣ ମୁକ୍ତିପାଇଥାନ୍ତି, ସ୍ୱର୍ଗଗାମୀ ହୋଇଥାନ୍ତି । ସେଥିପାଇଁ ସେ ଧର୍ମପ୍ରାଣା ମାଆଙ୍କୁ ମଧ୍ୟ କଥା ଦେଇଥିଲେ, ସେହି କାର୍ଯ୍ୟ ସେ ନିଶ୍ଚିତ ରୂପେ କରିବେ । ଯଥା ସମୟରେ ତାହା ପୂରଣ କରିଥିଲେ ମଧ୍ୟ । ଆଜିକାଲିର ବ୍ୟବସ୍ଥା ପରିବର୍ତ୍ତେ ସେତେବେଳେ ସେଠାକୁ ଯିବାକୁ ହେଲେ ଦୀର୍ଘ ରାସ୍ତା କେବଳ ଦୋଳା କିମ୍ବା ଘୋଡ଼ସବାର ମାଧ୍ୟମ ଗ୍ରହଣ କରିବାକୁ ପଡୁଥିଲା । ଅଧିକାଂଶ ରାସ୍ତା ବରଫାବୃତ୍ତ । ତଥାପି ମହାରାଜା ପଦବ୍ରଜରେ ଯାଇଥିଲେ ସେଠାକୁ ଏବଂ ପିଣ୍ଡଦାନ କରିଥିଲେ । ତାହାଙ୍କର କର୍ତ୍ତବ୍ୟବୋଧଯୋଗୁଁ ସେ ବାସ୍ତବରେ କୌଣସି କଷ୍ଟ ଅନୁଭବ କରିନଥିଲେ । ଅପରନ୍ତୁ ଆତ୍ମିକ ଆନନ୍ଦରେ ବିଭୋର ହୋଇଯାଇଥିଲେ ସେହି କାର୍ଯ୍ୟ ସମାପନ ହେବା ପରେପରେ ।

ଜାତୀୟ ଚେତନାରେ ଉଦ୍‌ବେଳିତ ହୋଇ ସାରିଥିବା ମହାରାଜା କୃଷ୍ଣଚନ୍ଦ୍ର ସେତେବେଳେ ସଂକଳ୍ପ କରିଥିଲେ, ରାଜ୍ୟରେ ପ୍ରଜାମଙ୍ଗଳକାରୀ ଅନୁଷ୍ଠାନମାନ ଗଠନକରି ସେ ଜନହିତକର କାର୍ଯ୍ୟକଳାପରେ ଆପଣାକୁ ନିୟୋଜିତ କରିବେ । ବିଗତ କଲେଜ ପାଠ୍ୟକ୍ରମରେ ସେଇ ସଂପର୍କରେ ରାଜକୁମାରମାନଙ୍କୁ ସାଧାରଣ ଭାବେ ସଚେତନ କରାଇ ଦିଆଯାଉଥିଲା । ସେଇ ପୋଥିପାଠକୁ ସେ ବାସ୍ତବରେ ପରିଣତ କରିବାପାଇଁ ସଂକଳ୍ପ କରିଥିଲେ ରଜ୍ୟାଭିଷେକ ଅବସରରେ । ସେତିକିବେଳେ ଆପଣା ରାଜ୍ୟବାସୀଙ୍କ ଉନ୍ନତିକୁ ଦୃଷ୍ଟି ପରିସରରେ ମୁଖ୍ୟତଃ ରଖିଥିଲେ ସୁଦ୍ଧା ସମୟର ଚକରେ ତାହା ସମଗ୍ର ଓଡ଼ିଆଭାଷୀ ଅଞ୍ଚଳର ଜନଗଣଙ୍କ ପାଇଁ ପ୍ରସାରିତ ହୋଇଯାଇଥିଲା ଏବଂ ପରିଣାମ ହୋଇଥିଲା ଓଡ଼ିଆଭାଷୀ ଲୋକଙ୍କପାଇଁ ସ୍ୱତନ୍ତ୍ର ପ୍ରଦେଶ ଗଠନ । ବିଶେଷ ଉଲ୍ଲେଖଯୋଗ୍ୟ ଯେ ତାଙ୍କର ଏକକ ଉଦ୍ୟମରେ ହିଁ ପାରଳା ଓ ଜୟପୁର ଜମିଦାରିର ମିଶ୍ରଣ ସମ୍ଭବପର ହୋଇଥିଲା । ତାଙ୍କରି ରାଜ୍ୟ ତଥା ରାଜ୍ୟବାସୀ ନୂତନ ଓଡ଼ିଶାରେ ସାମିଲ୍ ହୋଇପାରିଥିଲେ । ତାହାଙ୍କର ରାଜ୍ୟବାସୀଙ୍କର ପରମ ଉନ୍ନତି ସାଧିତ ହୋଇପାରିଥିଲା ।

ପୁଣି ମହାରାଜାଙ୍କର ଅନ୍ୟତମ ସଂକଳ୍ପ ଥିଲା ସ୍ୱିଜରଲାଣ୍ଡ ଜଙ୍ଗଲରେ ପଶୁ ଶିକାର କରିବା । କଲେଜ ଅଧ୍ୟୟନ କାଳରେ ସେ ଜାଣିବାକୁ ପାଇଥିଲେ ଯେ ସ୍ୱିଜରଲାଣ୍ଡର ଜଙ୍ଗଲ ଅତ୍ୟନ୍ତ ଭୟଙ୍କର ଏବଂ ସେଠାରେ ଶିକାର କରିବା ଏକ ପରମ ବୀରୋଚିତ କାର୍ଯ୍ୟ । ବିଶେଷ ଦକ୍ଷତା ନଥିଲେ ସେହିଭଳି ପଦେପଦେ ବିପଦ ସଂକୁଳ ଅରଣ୍ୟରେ ପାଦଦେବା ଅସମ୍ଭବ । ସେବେଠାରୁ



Ama Odisha pdf (aamaodisha@gmail.com)

ତାହାକୁ ଏକ ଚ୍ୟାଲେଞ୍ଜ୍ ରୂପେ ସେ ଗ୍ରହଣ କରିନେଇ ଭବିଷ୍ୟତରେ ସେଠାରେ ପଶୁ ଶିକାର କରିବାକୁ ଅଭିଳାଷ ପୋଷଣ କରିଥିଲେ । ରାଜ୍ୟାଭିଷେକ ବେଳେ କେବଳ ନାମକୁ ମାତ୍ର ସଂକଳ୍ପ କରିବା ଉଦ୍ଦେଶ୍ୟରେ ତାହା ସେ କରି ନଥିଲେ, ସମୟକ୍ରମେ ଆନ୍ତରିକତାର ସହିତ ସେହି ସଂକଳ୍ପଗୁଡ଼ିକୁ ପୂରଣ ମଧ୍ୟ କରିଥିଲେ ।

ରାଜ୍ୟାଭିଷେକ ଭଳି ପରମ ପୁଣ୍ୟ ଅବସରରେ ଦାନକୁ ଏକ ମହତ୍ କାର୍ଯ୍ୟ ରୂପେ ବିବେଚନା କରାଯାଇଥାଏ । ମହାରାଜା କୃଷ୍ଣଚନ୍ଦ୍ର ମଧ୍ୟ ସେତିକିବେଳେ ଅନେକ କିଛି ଦାନ କରିଥିଲେ । ତନ୍ମଧ୍ୟରେ ଅଗ୍ରଗଣ୍ୟ ଥିଲା ଜାତୀୟ ଚେତନା ଜର୍ଜରିତ ସତ୍ୟବାଦୀ ବନବିଦ୍ୟାଳୟର ଛାତ୍ରାବାସ ନିର୍ମାଣପାଇଁ ଏବଂ ଉତ୍କଳ ସାହିତ୍ୟ ସମାଜର ଉନ୍ନତିକଳ୍ପେ ଦାନ । ସେହି ମହତ ଦାନର ପ୍ରାପ୍ତିସ୍ୱୀକାର କରି ଉତ୍କଳ ସାହିତ୍ୟ ସମାଜର ତତ୍କାଳୀନ ସଂପାଦକ କୁଳବୃଦ୍ଧ ମଧୁସୂଦନ ଦାସ କୃତଜ୍ଞତାର ସହିତ ଆପଣା ହୃଦୟ ଖୋଲି ଦେଇଥିଲେ- ''ପାରଳାଖେମୁଣ୍ଡିର କୃତବିଦ୍ୟ ନବୀନ ରାଜା ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ନାରାୟଣ ଦେଓ ମହୋଦୟ କୋର୍ଟ ଅଫ୍ ୱାର୍ଡ଼ସ୍‌ରୁ ରାଜ୍ୟ ଫେରିପାଇବା ଉପଲକ୍ଷେ ଉତ୍କଳ-ସାହିତ୍ୟ-ସମାଜକୁ ଅର୍ଦ୍ଧ ଏକଶତଟଙ୍କା ଦାନ କରିଅଛନ୍ତି । ଯେଉଁ ଘଟନା ଉପଲକ୍ଷ୍ୟରେ ଏବଂ ଯେ ପ୍ରକାର ହୃଦୟରେ ଦାନ କରାଯାଇଅଛି ତାହା ଏକା ସାହିତ୍ୟ-ସମାଜ କାହିଁକି ସାହିତ୍ୟାନୁରାଗୀ ପ୍ରତ୍ୟେକ ଉତ୍କଳୀୟ ଉତ୍ତମ ରୂପେ ଉପଲବ୍‌ଧି କରୁଅଛନ୍ତି । ସମାଜ କୃତଜ୍ଞ ହୃଦୟରେ ଅତ୍ୟନ୍ତ ଯତ୍ନ ଓ ଆଦର ସହକାରେ ଏହି ଦାନ ଗ୍ରହଣ କରିଅଛନ୍ତି । ରାଜ୍ୟ ଲାଭ ସଂଗେସଂଗେ ମାତୃଭାଷା ପ୍ରତି ଏ ପ୍ରକାର ଆଦର ଓ ସହାନୁଭୂତି, ସୁଶିକ୍ଷା ଓ ହୃଦୟବତ୍ତାର ପ୍ରଧାନ ପରିଚାୟକ ଏବଂ ସେହି ହେତୁରୁ ସମସ୍ତେ ଆଶା କରନ୍ତି ଯେ ରାଜା ମହୋଦୟଙ୍କ ରାଜତ୍ୱ କାଳରେ ମାତୃଭାଷା ତଥା ମାତୃଭୂମି ଉକ୍ତ ମହାତ୍ମାଙ୍କଠାରୁ ଉତ୍ତରୋତ୍ତର ଉତ୍ସାହ ଲାଭ କରିବ । ଅୟମାରମ୍ଭଃ ଶୁଭାୟ ଭବତୁ ଏବଂ ଜଗତପିତା ପରମେଶ୍ୱର ରାଜା ମହୋଦୟଙ୍କୁ ଦୀର୍ଘାୟୁ ଓ ଯଶସ୍ୱୀ କରନ୍ତୁ, ଏହା ହିଁ ସମାଜର ଆନ୍ତରିକ କାମନା ।''

ଏହା ୧ ୯ ୧ ୩ ମସିହା ମଇ ମାସର ଶେଷଦିନ 'ଉତ୍କଳଦୀପିକା'ରେ ପ୍ରକାଶ ପାଇଥିଲା । ଅନୁରୂପ ଭାବେ ସତ୍ୟବାଦୀ ବନ ବିଦ୍ୟାଳୟର ସଂପାଦକ ପଣ୍ଡିତ ଗୋପବନ୍ଧୁ ସେହି ବର୍ଷ ଜୁନ୍ ନଅ ତାରିଖ ଦିନ କର୍ମବୀର ଗୌରୀଶଙ୍କରଙ୍କୁ ଲେଖିଥିଲେ-

ମହାଶୟ,

ପାରଳାଖେମୁଣ୍ଡିର ନୂତନ ରାଜା ଶ୍ରୀମାନ୍ କୃଷ୍ଣଚନ୍ଦ୍ର ନାରାୟଣ ଦେଓ ମହୋଦୟ ତାଙ୍କ ଅଭିଷେକୋତ୍ସବ ଉପଲକ୍ଷେ ସତ୍ୟବାଦୀ ବନ ବିଦ୍ୟାଳୟ ନିର୍ମାଣ ନିମନ୍ତେ ୫୦୦ଟଙ୍କା ଦାନ କରିଥିବା ବିଷୟ ଆମ୍ଭମାନଙ୍କୁ ସ୍ୱହସ୍ତାଙ୍କିତ ପତ୍ରଦ୍ୱାରା ଜଣାଇଛନ୍ତି । ବିଦ୍ୟାଳୟର ବର୍ତ୍ତମାନ ବିପନ୍ନ ଅବସ୍ଥାରେ ଏତାଦୃଶ ଅଯାଚିତ ଦାନ ଯେ ଆମ୍ଭେମାନେ କିପରି ଗଭୀର କୃତଜ୍ଞତା ସହକାରେ ଗ୍ରହଣ କରିଅଛୁ ତାହା ବାସ୍ତବ ଭାଷାରେ ପ୍ରକାଶ କରାଯାଇ ନପାରେ । ରାଜନୀତିକ ଘଟନାଚକ୍ରରେ



Ama Odisha pdf (aamaodisha@gmail.com)

ପାରଳାଖେମୁଣ୍ଡି ଉତ୍କଳରୁ ବିଚ୍ଛିନ୍ନ ହେଲେ ହେଁ ଭାଷା, ଶିକ୍ଷା, ସାହିତ୍ୟ, ସାମାଜିକତା ଇତ୍ୟାଦି ନାନାପ୍ରକାର ବନ୍ଧନରେ ଏହା ଉତ୍କଳ ସହିତ ଅବିଚ୍ଛେଦ୍ୟ ଭାବରେ ସଂଶ୍ଲିଷ୍ଟ ରହିଛି ଏବଂ ଚିରକାଳ ରହିବ । ଉତ୍କଳର ବିଖ୍ୟାତଯଶା ପବିତ୍ର ଗଜପତିବଂଶାବତଂସ ନବୀନ ମହାରାଜା ଏହିସବୁ ସମ୍ବନ୍ଧକୁ ଦୃଢ଼ତର ଏବଂ ପୂର୍ଣ୍ଣାବୟବ କରିବେ ବୋଲି ତାଙ୍କର ଉତ୍କଳ କଲ୍ୟାଣକର ପ୍ରାଥମିକ ଅନୁଷ୍ଠାନମାନ ଦେଖି ଆମ୍ଭେମାନେ ସଂପୂର୍ଣ୍ଣ ଆଶା କରୁଅଛୁ । ଭଗବାନ୍ ତାଙ୍କୁ ଦୀର୍ଘ ଜୀବନ ଦିଅନ୍ତୁ ଏବଂ ଆମ୍ଭମାନଙ୍କର ଏହି ଆଶା ପୂର୍ଣ୍ଣ ହେଉ । ଏହା ମଧ୍ୟ ଦୀପିକାର ସେହି ବର୍ଷ ଜୁନ୍ ୧୪ ସଂଖ୍ୟାରେ ପ୍ରକାଶିତ ହୋଇଥିଲା ।''

୧୯୧୩ ଏପ୍ରିଲ୍ ୨୬ରେ ରାଜସିଂହାସନ ଆରୋହଣ କରିବା ପରେ ପରେ ୧୯୧୪ ଜାନୁଆରି ୨୮ ତାରିଖ ଦିନ ପାରଳା ଗଜପତିଙ୍କର ଶୁଭପରିଣୟ ଉତ୍ସବ ଅନୁଷ୍ଠିତ ହୋଇଥିଲା । ଖରସୁଆଁ ରାଜଜେମା ନଳିନୀ ଦେବୀଙ୍କୁ ପତ୍ନୀ ରୂପେ ବରଣ କରିଥିଲେ କୃଷ୍ଣଚନ୍ଦ୍ର ।

ବାସ୍ତବରେ ତୁଳସୀ ଦୁଇପତ୍ରରୁ ବାସିଲା ପରି ସାମାଜିକ ଜୀବନରେ ପାଦ ଥାପୁଥାପୁ ମହାରାଜା କୃଷ୍ଣଚନ୍ଦ୍ରଙ୍କ ପ୍ରତ୍ୟେକ କାର୍ଯ୍ୟକଳାପରେ ଜାତୀୟ ଚେତନାର ଆନ୍ତରିକ ପରିପ୍ରକାଶ ହିଁ ହୋଇଥିଲା । ତାଙ୍କରି ଅନ୍ତର ଯଥାର୍ଥରେ ପ୍ରତିଫଳିତ ହୋଇଥିଲା ଆପଣାର ରାଜ୍ୟବାସୀଙ୍କ ସମେତ ଉତ୍କଳୀୟଙ୍କ ସର୍ବାଙ୍ଗୀନ ଉନ୍ନତିକଳ୍ପେ ଗ୍ରହଣ କରୁଥିବା ବିଭିନ୍ନ ପଦକ୍ଷେପରେ । ପୁଣି ତତ୍କାଳୀନ ଉତ୍କଳୀୟ ନେତୃବର୍ଗ ଓଡ଼ିଶାର ରାଜନୈତିକ ଶାସନ ବାହାରେ ଥିବା ଅଞ୍ଚଳରୁ ଗୋଟିଏ ଉଗ୍ର ଜାତୀୟ ଚେତନାର ସ୍ଫୁରିତ ଅୟମାରମ୍ଭରୁ ଯେଉଁ ଉଜ୍ଜ୍ୱଳ ଆଶାର ଝଲକ ପ୍ରତ୍ୟକ୍ଷ କରି ମନରେ ବିଶେଷ ଆଶା ପୋଷଣ କରିଥିଲେ ତାହା ସମୟକ୍ରମେ ଯଥାର୍ଥ ଭାବରେ ପ୍ରତିଫଳିତ ହୋଇଥିଲା । ସେଇ ଉତ୍କଳୀୟ ଜାତୀୟ ଚେତନାକୁ ସମ୍ଭବତଃ ଆପଣା ରାଜ୍ୟବାସୀଙ୍କ ସହିତ ଘନିଷ୍ଠ କରାଇବା ଉଦ୍ଦେଶ୍ୟରେ ଉତ୍କଳସମ୍ମିଳନୀର ଆଗାମୀ ବାର୍ଷିକ ଅଧିବେଶନ ପାରଳାରେ ଅନୁଷ୍ଠିତ କରାଇବାପାଇଁ ନିମନ୍ତ୍ରଣ ଜଣାଇଥିଲେ ଏବଂ ତାହା ମଧ୍ୟ ସାଦରେ ଗୃହୀତ ହୋଇଥିଲା ।

ସେତେବେଳେ ଓଡ଼ିଆ ଭାଷାଭାଷୀଙ୍କପାଇଁ ଉତ୍କଳ ସମ୍ମିଳନୀ ଥିଲା ଏକମାତ୍ର ଜାତୀୟ ଅନୁଷ୍ଠାନ । ସେହି ଅନୁଷ୍ଠାନଟି ଓଡ଼ିଆ ଲୋକଙ୍କ ସାମୂହିକ ଉନ୍ନତିକଳ୍ପେ ସଂକଳ୍ପବଦ୍ଧ ଥିଲା । ଭାରତର ଚାରୋଟି ପ୍ରାଦେଶିକ ଶାସନ ସହିତ ସଂଯୁକ୍ତ ହୋଇ ରହିବାକୁ ବାଧ୍ୟ ହୋଇଥିଲେ ଉତ୍କଳବାସୀ । ଏକଦା ଗଙ୍ଗାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତାର ଲାଭ କରିଥିବା ଉତ୍କଳ, ଖଣ୍ଡ ବିଖଣ୍ଡିତ ହୋଇ ବିଭିନ୍ନ ଭାଷାଭାଷୀ ଅଞ୍ଚଳ ସହିତ ଯୁକ୍ତ ହୋଇ ରହିବାକୁ ବାଧ୍ୟ ହୋଇଥିଲା । ସମୟ ସୁଅରେ ଅକଥନୀୟ ଦୁଃଖ ଦୁର୍ଦ୍ଦଶା ଭୋଗିବାକୁ ହେଉଥିଲା ଉତ୍କଳୀୟଙ୍କୁ । ସେହି ଦୁଃଖରୁ ମୁକ୍ତିପାଇଁ ଉଦ୍ୟମ କରିବାଲାଗି ସଚେତନ ଉତ୍କଳୀୟ ବୁଦ୍ଧିଜୀବୀଗଣ ଏକତ୍ର ହୋଇ ସଂଗଠନ କରିଥିଲେ ଉତ୍କଳ ସମ୍ମିଳନୀ । ମୁଖ୍ୟ ଉଦ୍ଦେଶ୍ୟ ଥିଲା ଓଡ଼ିଆଭାଷୀ ଲୋକେ ବସବାସ କରି ରହୁଥିବା ଅଞ୍ଚଳଗୁଡ଼ିକର ଏକୀକରଣ; ଓଡ଼ିଆମାନଙ୍କର ସ୍ୱାତନ୍ତ୍ର୍ୟ ରକ୍ଷା । ଉତ୍କଳ ସମ୍ମିଳନୀ



Ama Odisha pdf (aamaodisha@gmail.com)

ମାଧ୍ୟମରେ ସେହି ଏକୀକରଣ ଆନ୍ଦୋଳନକ୍ରମେ ତାହାର ପ୍ରାଥମିକ ଆଭିମୁଖ୍ୟ ପରିବର୍ତ୍ତନ କରି ଓଡ଼ିଆମାନଙ୍କ ପାଇଁ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ ଆନ୍ଦୋଳନରେ ପରିଣତ ହୋଇଯାଇଥିଲା ଏବଂ ବିଶେଷ ଉଲ୍ଲେଖଯୋଗ୍ୟ ଯେ ଆନ୍ଦୋଳନକାରୀଗଣଙ୍କୁ ସେହି ଆଭିମୁଖ୍ୟ ଆପଣେଇନେବାପାଇଁ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଏବଂ ମଧ୍ୟ ସେହି ଦିଗରେ ବିଶେଷ ପ୍ରଭାବିତ କରିଥିଲା ପାରଳାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର ଦଶମ ଅଧିବେଶନ ।

ମହାରାଜାଙ୍କ ପୃଷ୍ଠପୋଷକତାରେ ଉତ୍କଳ ସମ୍ମିଳନୀର ଦଶମ ବାର୍ଷିକ ଅଧିବେଶନ ପାରଳାଖେମୁଣ୍ଡିରେ ଅନୁଷ୍ଠିତ ହୋଇଥିଲା । ସେହି ଅଧିବେଶନଟି ସମ୍ମିଳନୀର ଉଦ୍ଦେଶ୍ୟ ଏବଂ କାର୍ଯ୍ୟପନ୍ଥା ଗ୍ରହଣ ଦୃଷ୍ଟିରୁ ଥିଲା ବିଶେଷ ଗୁରୁତ୍ୱପୂର୍ଣ୍ଣ । ଏପରିକି ସ୍ଥାନ ନିର୍ବାଚନ ଦୃଷ୍ଟିରୁ ସୁଦ୍ଧା ସମ୍ମିଳନୀ ତାହାର ପୂର୍ବ ଗତାନୁଗତିକତା ପରିହାର କରିଥିଲା ।

ଉତ୍କଳ ସମ୍ମିଳନୀର ପ୍ରାରମ୍ଭରୁ ତତ୍‌କାଳ ପର୍ଯ୍ୟନ୍ତ ତାହାର ବାର୍ଷିକ ଅଧିବେଶନଗୁଡ଼ିକ କେବଳ କଟକ, ପୁରୀ, ବ୍ରହ୍ମପୁର ଓ ବାଲେଶ୍ୱର ଭଳି ପ୍ରାୟ କେନ୍ଦ୍ରସ୍ଥଳଗୁଡ଼ିକରେ ହିଁ ଅନୁଷ୍ଠିତ ହୋଇଆସିଥିଲା । ପ୍ରାକୃତିକ ଓଡ଼ିଶାର ଜନଗଣଙ୍କ ମଧ୍ୟରେ ଉକ୍ତ ଅନୁଷ୍ଠାନ ପ୍ରତି ଆଗ୍ରହ ସୃଷ୍ଟି କରାଯିବା ଏବଂ ଓଡ଼ିଆମାନଙ୍କ ମଧ୍ୟରେ ଏହାକୁ ଆଦୃତ କରାଯିବା ଉଚିତ ବୋଲି ମତ ପୋଷଣ କରାଯାଉଥିଲେ ସୁଦ୍ଧା ଏବଂ ସେଇ ଉଦ୍ଦେଶ୍ୟରେ କର୍ମକର୍ତ୍ତାଗଣ ବିଶେଷ ବ୍ୟଗ୍ର ଥିଲେ ସୁଦ୍ଧା ଉପାନ୍ତ ଅଞ୍ଚଳଗୁଡ଼ିକରେ ସେଥିପାଇଁ ସଂଗଠନର ଅଭାବବୋଧ ଯୋଗୁଁ ତାହା ସମ୍ଭବ ହୋଇ ପାରିନଥିଲା ।

ଉଲ୍ଲେଖ କରାଯାଇପାରେ ଯେ ସମ୍ମିଳନୀ ଗଠିତ ହେବା ପରେପରେ ଗଜପତି କୃଷ୍ଣଚନ୍ଦ୍ରଙ୍କ ପିତା ଗୌର ଗଜପତି ତଥା ଦାଦା ପଦ୍ମନାଭ ସେହି ସଂଗଠନର ବାର୍ଷିକ ଅଧିବେଶନ ନିଜ ରାଜ୍ୟ ରାଜଧାନୀରେ ଅନୁଷ୍ଠିତ କରାଇବାପାଇଁ ଉତ୍ସୁକତା ପ୍ରଦର୍ଶନ କରିଥିଲେ ସୁଦ୍ଧା ୧୯୦୫ ଓ ୧୯୦୪ରେ ସେମାନଙ୍କ ଅକାଳ ବିୟୋଗଜନିତ କାରଣରୁ ତାହା କାର୍ଯ୍ୟକାରୀ ହୋଇ ପାରି ନଥିଲା । ସେଇ ପୂର୍ବପୁରୁଷଗଣଙ୍କ ଅସଂପୂର୍ଣ୍ଣ ଇଚ୍ଛାକୁ ପୂରଣ କରାଇବାରେ ସମର୍ଥ ହୋଇଥିଲେ କୃଷ୍ଣଚନ୍ଦ୍ର । କେବଳ ସେତିକି ନୁହେଁ, ତାହା ବାସ୍ତବରେ ଥିଲା ଜାତୀୟ ଚେତନା ପରିପ୍ଲୁତ ଗୋଟିଏ ଦରଦୀ ହୃଦୟର ଅନ୍ତରତମ ପ୍ରଦେଶରୁ ନିର୍ଗତ ଆହ୍ୱାନର ଏକ ସଫଳ ରୂପାୟନ ।

୧୯୦୩ ଡିସେମ୍ବର ୩୦ ତାରିଖ ଦିନ ଉତ୍କଳ ଗୌରବ ମଧୁସୂଦନଙ୍କ ମାନସସନ୍ତାନ ଉତ୍କଳ ସମ୍ମିଳନୀ ସାକାର ରୂପ ଗ୍ରହଣ କରିଥିଲା କଟକର ପଡ଼ିଆରେ । ପାରଳା ରାଜଭ୍ରାତାଙ୍କ ପ୍ରତିନିଧି, ଅବିଭକ୍ତ ଗଞ୍ଜାମର ପ୍ରଥମ ବି.ଏ. ଉପାଧିଧାରୀ ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁଙ୍କ ଅଧ୍ୟକ୍ଷତାରେ ବ୍ରହ୍ମପୁରଠାରେ ଅନୁଷ୍ଠିତ ଗଞ୍ଜାମ ସମ୍ମିଳନୀ / ଗଞ୍ଜାମ ଜାତୀୟ ସମ୍ମିଳନୀର ପ୍ରଥମ ଅଧିବେଶନରେ ନିମନ୍ତ୍ରିତ ଅତିଥି ଭାବେ ଯୋଗ ଦେଇଥିଲେ ଅନ୍ୟମାନଙ୍କ ସହିତ ମଧୁବାବୁ ।



Ama Odisha pdf (aamaodisha@gmail.com)

ରାଜନୀତିକ ବିଚ୍ଛିନ୍ନ ଗଂଜାମବାସୀଙ୍କ ଓଡ଼ିଶାବାସୀଙ୍କ ସହିତ ମିଶ୍ରଣ ଆକାଂକ୍ଷାର ଉଦ୍‌ବେଳିତ ଉଦ୍ଦୀପନାରେ ଭାବବିହ୍ୱଳ ହୋଇ ଯାଇଥିଲେ ସମସ୍ତେ; ବିଶେଷକରି ଓଡ଼ିଶାରୁ ଯୋଗଦେଇଥିବା ନେତୃବୃନ୍ଦ । ସେହି ଏକା ଉଦ୍ଦେଶ୍ୟରେ- ସବୁ ଓଡ଼ିଆଙ୍କୁ ଏକତ୍ର କରିବାପାଇଁ କେବଳ ଗଂଜାମ କାହିଁକି ସଂପୂର୍ଣ୍ଣ ଜାତୀୟ ସ୍ତରରେ ତାହାକୁ ବିସ୍ତାରିତ କରାଇବା ଲକ୍ଷ୍ୟ ନେଇ ପୁନର୍ଗଠିତ କରିବାପାଇଁ ତତ୍‌କାଳ ହିଁ ମନସ୍ଥ କରିଥିଲେ ମଧୁବାବୁ । ସତେଯେମିତି ତାଙ୍କରି ମନ ମଧ୍ୟରେ ଆନ୍ଦୋଳିତ ଏକ ପ୍ରଶ୍ନର ସହଜ ଏବଂ ସଠିକ ସମାଧାନ କରିପାରିଥିଲେ ଗଂଜାମବାସୀଙ୍କ ଉଦ୍ଦୀପନା ଦେଖି । ସେଠାରେ ଉପସ୍ଥିତ ସମସ୍ତେ ତାଙ୍କରି ପ୍ରସ୍ତାବକୁ ଆନ୍ତରିକତାର ସହିତ ଗ୍ରହଣ କରିଥିଲେ ସୁଦ୍ଧା ଏବଂ ପରିଣାମତଃ ଉତ୍କଳ ସମ୍ମିଳନୀ ଗଠିତ ହୋଇଥିଲେ ସୁଦ୍ଧା ଏବଂ ପୁଣି ସେହି ଅନୁଷ୍ଠାନ ସହିତ ସମସ୍ତେ ଏକାତ୍ମ ହୋଇଥିଲେ ସୁଦ୍ଧା ଗଞ୍ଜାମ ସମ୍ମିଳନୀ ତାହାର ସତ୍ତା ବଜାୟ ରଖିଥିଲା ଆହୁରି ଅନେକ କାଳ । ବାସ୍ତବରେ ରମ୍ଭାରାଜବାଟୀରୁ ତାହାର ଅୟମାରମ୍ଭ ହୋଇଥିଲା ଏବଂ ସେଥିପାଇଁ ଖଲିକୋଟ ରାଜା ହରିହର ମର୍ଦ୍ଦରାଜ ଦେଓଙ୍କ ସମେତ ଗଂଜାମର ଶ୍ରୀବତ୍ସ ପଣ୍ଡା, ନୀଳମଣି ବିଦ୍ୟାରତ୍ନ ପ୍ରମୁଖଙ୍କ ସେଥିପାଇଁ ଅବଦାନ ଅବିସ୍ମରଣୀୟ ।

ଗଂଜାମ ଜାତୀୟ ସମିତି ଜନ୍ମଦେଇଥିବା ଉତ୍କଳ ସମ୍ମିଳନୀ ପ୍ରତି ଇଂରାଜୀ ବର୍ଷର ଶେଷ ଦିନରେ ପ୍ରାୟ ଅନୁଷ୍ଠିତ ହେଉଥିଲା । ୧୯୦୩ ଡିସେମ୍ବର ୩୦ ତାରିଖ ଦିନ କଟକର ଇଦ୍‌ଗା ପଡ଼ିଆଠାରେ ଅନୁଷ୍ଠିତ ପ୍ରଥମ ଉତ୍କଳ ସମ୍ମିଳନୀର ଦ୍ୱିତୀୟ ଅଧିବେଶନ ସେଇ କଟକରେ ୧୯୦୪ ଡିସେମ୍ବର ୨୮, ୨୯ରେ ହିଁ ଅନୁଷ୍ଠିତ ହୋଇଥିଲା । ସେଇ ଜନ୍ମସ୍ଥାନରେ ହିଁ ଆୟୋଜିତ ହୋଇଥିଲା ଅନୁଷ୍ଠାନର ଷଷ୍ଠ (୧୯୦୮ ଡିସେମ୍ବର) ଏବଂ ସପ୍ତମ (୧୯୧୦ ଡିସେମ୍ବର ୩୦,୩୧) ଅଧିବେଶନ । ଓଡ଼ିଶାର ଅନ୍ୟତମ ସହର ବାଲେଶ୍ୱରରେ ତୃତୀୟ ଅଧିବେଶନ (୧୯୦୬ ଏପ୍ରିଲ୍ ୧୩,୧୪) ଅନୁଷ୍ଠିତ ହୋଇଥିବା ବେଳେ ଚତୁର୍ଥ (୧୯୦୬ ଡିସେମ୍ବର ୨୬,୨୭) ଏବଂ ଅଷ୍ଟମ (୧୯୧୨ ଏପ୍ରିଲ୍ ୬,୭) ଅଧିବେଶନଗୁଡ଼ିକର ସ୍ଥାନ ଥିଲା ବ୍ରହ୍ମପୁର । ପୁଣି ସେହିଭଳି ପୁରୀଠାରେ ପଞ୍ଚମ (୧୯୦୮ ଏପ୍ରିଲ୍ ୧୮-୧୯) ଏବଂ ନବମ ବାର୍ଷିକ ଅଧିବେଶନଗୁଡ଼ିକ ଅନୁଷ୍ଠିତ ହୋଇଥିଲା । ଅତଏବ ଅନୁଷ୍ଠାନର ଜନ୍ମକାଳରୁ ଏଯାବତ୍ ପ୍ରାକୃତିକ ଉତ୍କଳର କେନ୍ଦ୍ରସ୍ଥଳ ରୂପେ ବିବେଚିତ କଟକ, ପୁରୀ, ବାଲେଶ୍ୱର ଓ ବ୍ରହ୍ମପୁର ଭଳି ସହରଗୁଡ଼ିକରେ ଏହାର ସ୍ୱରୂପ ପ୍ରକାଶିତ ହୋଇଥିବା ବେଳେ ଅନୁଷ୍ଠାନର ଦଶମ ଅଧିବେଶନପାଇଁ ସ୍ଥାନ ସ୍ଥିରୀକୃତ ହୋଇଥିଲା ପାରଳାଖେମୁଣ୍ଡି ।

ଏଣେ ଉକ୍ତ ଜାତୀୟ ଅନୁଷ୍ଠାନ ଜରିଆରେ ଦେଶ ମିଶ୍ରଣ ଦାବି ଦୃଢ଼ ଭାବରେ ଉପସ୍ଥାପିତ ହୋଇ ଆସୁଥିବାବେଳେ ତେଣେ ସେଥି ପ୍ରତି ସଂପୂର୍ଣ୍ଣ ଉଦାସୀନ ଇଂରେଜ ସରକାର ୧୯୧୨ ମସିହାରେ ଓଡ଼ିଶା ଡିଭିଜନକୁ ବଙ୍ଗପ୍ରଦେଶରୁ ବିଚ୍ଛିନ୍ନ କରି ବିହାର ସହିତ ସଂଯୁକ୍ତ କରିଥିଲେ ଏବଂ ବିହାର ଓଡ଼ିଶା ହୋଇଥିଲା ଏକ ନୂତନ ପ୍ରଦେଶ । ବାସ୍ତବରେ ତାହା ଥିଲା



Ama Odisha pdf (aamaodisha@gmail.com)

ଆନ୍ଦୋଳନକାରୀ ଓଡ଼ିଆମାନଙ୍କର କଟାଘା'ରେ ଚୂନ ଦେବା ଭଳି ଏକ ସରକାରୀ ପଦକ୍ଷେପ । ତେଣୁ ୧୯୧୨ ମସିହାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର ଭୂମିକା ଥିଲା ଅତୀବ ଗୁରୁତ୍ୱପୂର୍ଣ୍ଣ । ସମ୍ମିଳନୀ ଆରମ୍ଭରୁ ସେ ପର୍ଯ୍ୟନ୍ତ କୌଣସି ମଣ୍ଡପରେ ରାଜନୈତିକ ବିଷୟବସ୍ତୁ ନେଇ ଆଲୋଚନା ହୋଇ ନଥିଲେ ସୁଦ୍ଧା ସେହି ବର୍ଷଠାରୁ ତାହା ଆଲୋଚନା ପରିସରଭୁକ୍ତ ହୋଇଥିଲା । ଆପାତତଃ ସମ୍ମିଳନୀ ଗଠନର ମୂଳ ଲକ୍ଷ୍ୟ ଥିଲା ଓଡ଼ିଆଭାଷାଭାଷୀ ଅଞ୍ଚଳଗୁଡ଼ିକର ଏକୀକରଣ । ଏହା ବାସ୍ତବରେ ଏକ ରାଜନୈତିକ ବିଷୟ । ତେଣୁ ଏହାର ସଫଳ ରୂପାୟନପାଇଁ ରାଜନୈତିକ ଆଲୋଚନା ଅବଶ୍ୟମ୍ଭାବୀ । ପୁଣି ବିଶେଷକରି ଏହି ଦାବି ପ୍ରତି ସରକାରଙ୍କ ଚରମ ଉଦାସୀନତା ସେଭଳି ଆଲୋଚନାପାଇଁ ସଂଗଠକମାନଙ୍କୁ ବାଧ୍ୟ କରିଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ସେ ପର୍ଯ୍ୟନ୍ତ କୌଣସି ସାମ୍ବିଧାନିକ ନୀତି ନିୟମ ନଥିବା ଉକ୍ତ ଅନୁଷ୍ଠାନପାଇଁ ତାହା ପ୍ରସ୍ତୁତ କରିବାକୁ ଏକ କାର୍ଯ୍ୟ ନିର୍ବାହିକା କମିଟି ଗଠିତ ହୋଇଥିଲା ଏବଂ ତତ୍‌ପରଠାରୁ ଓଡ଼ିଆଙ୍କ ମଧ୍ୟରେ ତୀବ୍ର ଜାତୀୟ ଚେତନା ସୃଷ୍ଟି କରିବାପାଇଁ ସଂଗଠକଗଣ ନିରବଧି ଉଦ୍ୟମ ଚଳାଇଥିଲେ । ସେସବୁ ଦୃଷ୍ଟିରୁ ତତ୍‌ପରବର୍ଷ ପାରଳାରେ ଅନୁଷ୍ଠିତ ଦଶମ ଉତ୍କଳ ସମ୍ମିଳନୀ ଥିଲା ବିଶେଷ ଗୁରୁତ୍ୱପୂର୍ଣ୍ଣ ।

ପାରଳାର ନୂତନ ରାଜା ଗଜପତି କୃଷ୍ଣଚନ୍ଦ୍ରଙ୍କ ନିମନ୍ତ୍ରଣକ୍ରମେ ସେଠାରେ ୧୯୧୪ ଡିସେମ୍ବର ୨୬, ୨୭ ତାରିଖ ଦୁଇଦିନ ଧରି ଅନୁଷ୍ଠାନର ଦଶମ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଏହି ଅଧିବେଶନ ବାସ୍ତବରେ ସେହି ସହର ତଥା ନିକଟବର୍ତ୍ତୀ ଅଞ୍ଚଳ କାହିଁକି ସାରା ଗଞ୍ଜାମର ଜନଗଣଙ୍କ ମନରେ ଜାତୀୟ ଚେତନାକୁ ଅଧିକ ତେଜସ୍କ୍ରିୟ କରିଥିଲା । ବିଶେଷକରି ପାରଳାର ଜନଗଣଙ୍କ ମନରେ ନୂତନ ଉଦ୍ଦୀପନାର ଉଦ୍‌ବେଳନ ସୃଷ୍ଟି କରିଥିଲା ସେଇ ସମ୍ମିଳନୀ । ପ୍ରାକୃତିକ ଉତ୍କଳର ଅନେକ ନେତୃସ୍ଥାନୀୟ ବ୍ୟକ୍ତି ତଥା ବୁଦ୍ଧିଜୀବୀ ଯେଉଁମାନଙ୍କ ନାମ, ଜ୍ଞାନଗରିମା, ଗୁଣ ତଥା କାର୍ଯ୍ୟକଳାପ ସଂପର୍କରେ ସେମାନେ କେବଳ ଶୁଣିଥିଲେ ମଧ୍ୟ କୌଣସି କାଳେ ଦେଖିବାକୁ ସୁଯୋଗ ଲାଭ କରି ପାରି ନଥିଲେ, ପାରଳାବାସୀ ସେଇ ସମସ୍ତଙ୍କୁ ଗୋଟିଏ ମଣ୍ଡପରେ ପାଇଥିଲେ । ଦେଶ ମିଶ୍ରଣ ସଂପର୍କରେ ସେମାନଙ୍କ ଅନାବିଳ ଆନ୍ତରିକତା ସାଧାରଣ ଜନତାଙ୍କୁ ମଧ୍ୟ ଆକୃଷ୍ଟ କରିଥିଲା । ସମସ୍ତଙ୍କୁ ମୁଗ୍ଧ କରିଥିଲା ନେତୃବର୍ଗଙ୍କ ମୁଖନିଃସୃତ ସେଇ ଗୋଟିଏ ବଜ୍ର ଆହ୍ୱାନ- ପ୍ରାକୃତିକ ଓଡ଼ିଶାର ସବୁ ଅଞ୍ଚଳକୁ ଏକୀକରଣ କରାଯାଇ ରଖାଯାଉ ଗୋଟିଏ ଶାସନ କେନ୍ଦ୍ରରେ ।

ମଧୁବାବୁ ସେଠାରେ ପ୍ରସ୍ତାବ ରଖିଥିଲେ- ମାନ୍ଦ୍ରାଜ ଶାସନାନ୍ତର୍ଗତ ଓଡ଼ିଆମାନେ ବିହାର ଓଡ଼ିଶାର ଓଡ଼ିଆଙ୍କ ସହିତ ଏକ ଶାସନାଧୀନ ନହେବା ଯାଏଁ ଉତ୍କଳର ପ୍ରକୃତ ଉନ୍ନତି ଅସମ୍ଭବ ବୋଲି ସମ୍ମିଳନୀ ଦୃଢ଼ ବିଶ୍ୱାସ କରେ । ଅତି ମର୍ମସ୍ପର୍ଶୀ ଭାଷାରେ ଅଥଚ ଅତି ଦୃଢ଼ କଣ୍ଠରେ ଓଡ଼ିଆ ଜନଗଣଙ୍କ ଆନ୍ତରିକ ଆବେଦନ ଇଂରେଜ ଭାଷାରେ ଏକ ପ୍ରସ୍ତାବ ମାଧ୍ୟମରେ ଆଗତ



Ama Odisha pdf (aamaodisha@gmail.com)

କରିଥିଲେ । ତାହାକୁ ଓଡ଼ିଆ ବକ୍ତବ୍ୟ ମାଧ୍ୟମରେ ମଂଜୁଷା ରାଜା ଅନୁମୋଦନ କରିଥିବାବେଳେ ଅନ୍ୟ ଅନୁମୋଦନକାରୀଙ୍କ ମଧ୍ୟରେ ପ୍ରଥମ ଥିଲେ ଆସ୍କାର ଓକିଲ ହରିହର ପଣ୍ଡା । ଇଂରାଜୀରେ ଭାଷଣ ଦେଇ ତତ୍‌କାଳୀନ ଗଂଜାମବାସୀଙ୍କ ବିଭିନ୍ନ କ୍ଷେତ୍ରରେ ଅତ୍ୟନ୍ତ ଦୟନୀୟ ଅବସ୍ଥାର ବିଶେଷ ଆଲୋଚନା କରିଥିଲେ ସେ ।

ସଭାପତୀୟ ଅଭିଭାଷଣ ଦେଇ ଜୟପୁର ମହାରାଜା ବିକ୍ରମଦେବ ବର୍ମା ଦୃପ୍ତ ଆହ୍ୱାନ ଶୁଣାଇଥିଲେ ''ମାନ୍ଦ୍ରାଜ ଅନ୍ତର୍ଗତ ଓଡ଼ିଆ ପ୍ରଦେଶ କି ଜୟପୁର କି ଗଞ୍ଜାମ- ଏହା ପ୍ରାକୃତିକ ଓଡ଼ିଶାର ଏକ ଅବିଚ୍ଛିନ୍ନ ଅଂଶ । ପ୍ରାୟ ସମସ୍ତ ଗଞ୍ଜାମ ଜିଲ୍ଲା ଓ ଜୟପୁର ଓଡ଼ିଆ ରାଜାମାନଙ୍କ ଦ୍ୱାରା ଅଧିକୃତ ଏବଂ ଓଡ଼ିଆ ଲୋକଙ୍କଦ୍ୱାରା ଅଧ୍ୟୁଷିତ ହେଲେ ସୁଦ୍ଧା, ଦୁଃଖର ବିଷୟ, କ୍ଷମତାଶାଳୀ ତେଲଙ୍ଗୀମାନଙ୍କ ପ୍ରଭାବରେ ଓଡ଼ିଆ ଶକ୍ତି ଏକାବେଳକେ ମ୍ରିୟମାଣ ହୋଇଅଛି । ଓଡ଼ିଆ ଆଜି ମୁଣ୍ଡଟେକି ଚାଲିପାରୁ ନାହିଁ । ବିଦ୍ୟାଳୟରେ, ଅଫିସ୍‌ରେ, ରାଜକାର୍ଯ୍ୟରେ ଓଡ଼ିଆ ଏକ ପ୍ରକାର ବର୍ଜିତ । ଓଡ଼ିଆ ଛାତ୍ର ନିଜଭାଷା ଅଧ୍ୟୟନ, ନିଜ ଜାତୀୟ ସାହିତ୍ୟ ଚର୍ଚ୍ଚାରୁ ବଞ୍ଚିତ । ରାଜଦ୍ୱାରରେ ଓଡ଼ିଆ ଅଚିହ୍ନିତ ଓ ଅପମାନିତ । ଓଡ଼ିଆ ଦେଶ ଆଜି ଖଣ୍ଡବିଖଣ୍ଡିତ ।'' ସେହି କାରଣରୁ ''ଆମ୍ଭେମାନେ ଗଭର୍ଣ୍ଣମେଣ୍ଟଙ୍କ ଦ୍ୱାରସ୍ଥ ହେବା ସଙ୍ଗେସଙ୍ଗେ ଦେଶରେ ଦେଶ ମିଶ୍ରଣ ସମ୍ବନ୍ଧରେ ନ୍ୟାୟ ସଙ୍ଗତ ଓ ଆଇନାନୁମୋଦିତ ଆନ୍ଦୋଳନ କରିବାକୁ ହେବ । ଯେଉଁମାନେ ବୁଝିନାହାନ୍ତି ସେମାନଙ୍କୁ ବୁଝାଇବାକୁ ହେବ । ପ୍ରତି ଗ୍ରାମରେ, ସହରରେ ଏହି ଦେଶ ମିଶ୍ରଣ ଆନ୍ଦୋଳନର ସୂତ୍ରପାତ କରିବାକୁ ହେବ । ଆନ୍ଦୋଳନ କେତେକ ଶିକ୍ଷିତ ବ୍ୟକ୍ତିଙ୍କ ମଧ୍ୟରେ ଆବଦ୍ଧ ନାହିଁ, ଏହା ଓଡ଼ିଆର ସରଳ, ସ୍ୱାଭାବିକ ଆକାଙ୍କ୍ଷା ଏବଂ ଓଡ଼ିଶାର ଘରେଘରେ ଦେଶ ମିଶ୍ରଣ ଆଶା ଉଦ୍ରେକ ହୋଇଅଛି- ଏହି କଥା ସରକାର ଜାଣନ୍ତୁ ।''

ଦେଶ ମିଶ୍ରଣ ସଂପର୍କୀୟ ଏହିଭଳି ଆଲୋଚନାଗୁଡ଼ିକର ପ୍ରଭାବ ଯୁବକ ରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଧମନୀରେ ରକ୍ତ ପ୍ରବାହକୁ ଉଷ୍ଣ କରିଦେଇଥିବ ନିଶ୍ଚୟ । କାରଣ ଏଭଳି ମୁକ୍ତ ମଞ୍ଚରେ ଏ ସଂପର୍କୀୟ ଆଲୋଚନାମାନ ଶୁଣିବା ତାଙ୍କପାଇଁ ଥିଲା ପ୍ରଥମ ଅବସର । ଉପସ୍ଥିତ ଜନମାନସ ଭଳି ମହାରାଜାଙ୍କ ମନ ଆକାଶରେ ମଧ୍ୟ ନୀରବ ଭାବରେ ସୃଷ୍ଟି କରିଥିବ ତଡ଼ିତ୍‌ର ଉଷ୍ଣପ୍ରବାହ । ତାଙ୍କରି ମନ ଭିତରେ ଥିବା ଜାତୀୟ ଚେତନାକୁ ଅଧିକ ଉତ୍ତେଜିତ କରିଥିବା ସ୍ୱାଭାବିକ । ମଧୁବାବୁଙ୍କ ସେହି ପ୍ରସ୍ତାବ ବ୍ୟତୀତ ଗୋପବନ୍ଧୁ, ବାରିଷ୍ଟର ବିଶ୍ୱନାଥ ମିଶ୍ର, ଦୟାନିଧି ଦାସ, ଦାଶରଥି ମିଶ୍ର, ବ୍ରଜସୁନ୍ଦର ଦାସ, ସଦାଶିବ ବିଦ୍ୟାଭୂଷଣ ପ୍ରମୁଖମାନେ ଅନ୍ୟାନ୍ୟ ପ୍ରସ୍ତାବମାନ ଆଗତ କରିବା ସଙ୍ଗେସଙ୍ଗେ ସେହି ସଂପର୍କରେ ବିଭିନ୍ନ ଦିଗରୁ ମଧ୍ୟ ଆଲୋଚନା ହୋଇଥିଲା ।

ଆୟୋଜକ ଭାବେ ସେହି ସମ୍ମିଳନୀର ପ୍ରତ୍ୟେକ କାର୍ଯ୍ୟକଳାପ ସହିତ ଆପଣାକୁ ସାମିଲ କରିଥିଲେ ପାରଳା ଗଜପତି । ସମ୍ମିଳନୀର ସଫଳତା ପାଇଁ ପ୍ରଥମରୁ ହିଁ ଆୟୋଜନରେ ଲାଗି ପଡ଼ିଥିଲେ । ସେଥିଲାଗି ଦୀର୍ଘ ପ୍ରାୟ ସାତ ମାସ ପୂର୍ବରୁ ୧୯୧୪ ମଇ ଦଶ ତାରିଖ ଦିନ



Ama Odisha pdf (aamaodisha@gmail.com)

ସ୍ଥାନୀୟ ବାଳିକା ବିଦ୍ୟାଳୟରେ ଏକ ବୈଠକର ଆୟୋଜନ କରିଥିଲେ । ସେଇଠି ସେ ଅତି ସ୍ପଷ୍ଟ ଭାବରେ ପ୍ରକାଶ କରିଥିଲେ ଯେ ରାଜ୍ୟ ପାଇଁ ତଥା ତାଙ୍କ ପାଇଁ ସେଭଳି ଏକ ଅତି ଗୁରୁତ୍ୱପୂର୍ଣ୍ଣ ଅନୁଷ୍ଠାନ ଆୟୋଜନର ତାହା ପ୍ରଥମ ଅବସର ହୋଇଥିବାରୁ ଏବଂ ପୁଣି ସେଥିରେ ରାଜ୍ୟ ତଥା ରାଜ୍ୟବାସୀଙ୍କର ଗୌରବ ନିହିତ ଥିବା କାରଣରୁ ସ୍ଥାନୀୟ ସଜ୍ଜନ ମଣ୍ଡଳୀଙ୍କୁ ନେଇ ଅଭ୍ୟର୍ଥନା କମିଟିଟିଏ ଗଠିତ ହେବା ଆବଶ୍ୟକ । ସମସ୍ତେ ସେଥିରେ ଆନ୍ତରିକ ସହଯୋଗ କରିବା ଚାହି । ସେ ନିଜେ ମଧ୍ୟ ପ୍ରତ୍ୟେକ କାର୍ଯ୍ୟ ସହ ଯୁକ୍ତ ହୋଇ ରହିବେ । ତତ୍‌ପରିଣାମତଃ ଅଭ୍ୟର୍ଥନା ସମିତିର ସଭାପତି ରୂପେ ମହନ୍ତ ଶ୍ରୀ ରାଧାକୃଷ୍ଣ ଦାସ ଗୋସ୍ୱାମୀ ଏବଂ ନିତ୍ୟାନନ୍ଦ ପଟ୍ଟନାୟକ ସଂପାଦକ ରୂପେ କାର୍ଯ୍ୟ ନିର୍ବାହ କରିବାପାଇଁ ସ୍ଥିର ହୋଇଥିଲା ।

ସମ୍ମିଳନୀର ସଫଳତାପାଇଁ ମହାରାଜା ବିଶେଷ ଚଳଚଞ୍ଚଳ ହୋଇଉଠୁଥିଲେ । ଅଧିବେଶନପାଇଁ ମଣ୍ଡପ ନିର୍ମାଣ, ଅତିଥିଗଣଙ୍କୁ ରେଳଷ୍ଟେସନ୍‌ରୁ ଅଣାଇବାଠାରୁ ଆରମ୍ଭକରି ସେମାନଙ୍କୁ ବସାଘର ଯୋଗାଣ, ସେମାନଙ୍କ ଖିଆପିଆ ବ୍ୟବସ୍ଥା, ସମ୍ମିଳନୀ ମଣ୍ଡପ ପର୍ଯ୍ୟନ୍ତ ଯିବା ଆସିବା ପ୍ରଭୃତି ବନ୍ଦୋବସ୍ତର ତଦାରଖ ମଧ୍ୟ ନିଜେ କରୁଥିଲେ । ସେଇଥିଲାଗି ଆପଣା କାର୍ଯ୍ୟାଳୟର କର୍ମଚାରୀଗଣ ପ୍ରାୟ ପାଞ୍ଚଦିନ ପାଇଁ ସଂପୂର୍ଣ୍ଣ ନିୟୋଜିତ ହୋଇଥିଲେ ଅନ୍ୟ ଅନେକ ସେବାକାରୀଙ୍କ ସହିତ । ମହାରାଜାଙ୍କ ପରିଚାଳନାରେ ଥିବା କଲେଜ ହଷ୍ଟେଲ, ବାଳକ ଓ ବାଳିକା ଉଚ୍ଚବିଦ୍ୟାଳୟ, ଅତିଥି ଭବନ ଇତ୍ୟାଦି ସ୍ଥାନଗୁଡ଼ିକ ନିୟୋଜିତ ହୋଇଥିଲା ଅତିଥିଗଣଙ୍କ ରହିବାପାଇଁ । ରାଜନଅର ଭିତରେ ଥିବା ଗଜପତି ପ୍ରେସ୍ ଅବିରତ ଭାବରେ ରାତି-ଦିନ କର୍ମମୁଖର ହୋଇଥିଲା ସେଇ ସମ୍ମିଳନୀ କାର୍ଯ୍ୟରେ । ଅତିଥିଗଣଙ୍କ ମନୋରଂଜନ ପାଇଁ ପ୍ରତ୍ୟେକ ରାତିରେ ବିଭିନ୍ନ ନାଟକ ଅଭିନୀତ ହୋଇଥିଲା । ଦାଦା ପଦ୍ମନାଭ ଦେବଙ୍କ ପବିତ୍ର ସ୍ମୃତିରେ ନାମିତ ପଦ୍ମନାଭ ରଙ୍ଗାଳୟରେ ତାଙ୍କରି ରଚିତ 'ବାଣା ଦର୍ପଦଳନ' ଅଭିନୀତ ହୋଇଥିଲା ପ୍ରଥମ ରାତିରେ । ତତ୍‌ପର ରାତିରେ ମଞ୍ଚସ୍ଥ ହୋଇଥିଲା ପାରଳାର ଅନ୍ୟତମ ଶ୍ରେଷ୍ଠ ନାଟ୍ୟକାର ଆପନ୍ନା ପରିଚ୍ଛାଙ୍କ ଏକ ଅନବଦ୍ୟ ସୃଷ୍ଟି- 'ବିଜୟ ବସନ୍ତ' । ପାରଳା ମହାରାଜାଙ୍କ ଦିଗ୍‌ଦର୍ଶନରେ ଏଭଳି କାର୍ଯ୍ୟକ୍ରମ ସବୁର ଆୟୋଜନ କରାଯାଇଥିଲା ।

ଉତ୍କଳ ସମ୍ମିଳନୀର ପୂର୍ବ ଅଧିବେଶନଗୁଡ଼ିକ ତୁଳନାରେ ଏଠାରେ ବହୁ ଅଧିକ- ପ୍ରାୟ ପାଞ୍ଚ ହଜାର ପ୍ରତିନିଧି ଯୋଗଦେଇଥିଲେ । ସେମାନଙ୍କ ମଧ୍ୟରୁ ପ୍ରାୟ ଦୁଇ ହଜାରରୁ ଊର୍ଦ୍ଧ୍ୱ ବ୍ୟକ୍ତି ଥିଲେ ପାରଳା ରାଜ୍ୟ ବାହାର ଅଞ୍ଚଳର । ଏପରିକି ପ୍ରାକୃତିକ ଓଡ଼ିଶା ବାହାରୁ ସୁଦୂର ମେଦିନାପୁର, ବିଶାଖପାଟଣା, ବିଜୟନଗର ତଥା ଜୟପୁର ଅଞ୍ଚଳରୁ ଅନେକ ପ୍ରତିନିଧି ସେହି ଅଧିବେଶନରେ ଏକାତ୍ମ ହୋଇଥିଲେ । ସେହି ମାତୃପୂଜା ମଣ୍ଡପରେ ଏକତ୍ର ହୋଇଥିଲେ ରାଜା-ପ୍ରଜା, ଜମିଦାର ଓ ରୟତ ସମସ୍ତେ; ରାଜା ରାଜଭ୍ରାତା, ଯୁବରାଜ, ରାଜକବି, ରାଜଗୁରୁ, ସାମନ୍ତ, ଓକିଲ, କବି, ସାହିତ୍ୟିକ, ସାମ୍ବାଦିକ, ସଂପାଦକ, ଡାକ୍ତର, ଦେଓ୍ୱାନ୍, କର୍ମୀ,



Ama Odisha pdf (aamaodisha@gmail.com)

ସମାଜସେବୀ, ପାଦ୍ରୀ ପ୍ରମୁଖ ସମସ୍ତେ ଆପଣାକୁ ମିଶାଇ ଦେଇଥିଲେ ସେହି ମହାମିଳନ ସ୍ଥଳୀରେ । ଓଡ଼ିଶାର ଯେଉଁ ସ୍ୱନାମଧନ୍ୟ ବ୍ୟକ୍ତିବିଶେଷ ପାରଳା ମାଟିରେ ଆତିଥ୍ୟ ଗ୍ରହଣ କରିଥିଲେ ସେମାନଙ୍କ ମଧ୍ୟରେ ଥିଲେ ଜୟପୁର, ମଞ୍ଜୁଷା, ଟିକାଲି, ମଧୁପୁରର ରାଜନ୍ୟବର୍ଗଙ୍କ ସହିତ ତରଳା ଓ ଟିକାଲିର ଯୁବରାଜ ଏବଂ ମଞ୍ଜୁଷା ତଥା ତରଳାର ରାଜଭ୍ରାତାଗଣ । ସେମାନଙ୍କ ସହିତ ଯୋଗ ଦେଇଥିଲେ କଟକରୁ ଉତ୍କଳ ଗୌରବ ମଧୁସୂଦନ, ବ୍ରଜସୁନ୍ଦର ଦାସ, ବିଚିତ୍ରାନନ୍ଦ ଦାସ, ମୋହନୀ ମୋହନ ସେନାପତି, ଗୋକୁଳାନନ୍ଦ ଚୌଧୁରୀ, ବିଶ୍ୱନାଥ କର, ଶଶିଭୂଷଣ ରାୟ ଏବଂ ଗୌରୀଶଙ୍କର ରାୟ ପ୍ରମୁଖ । ସେମାନଙ୍କ ସହିତ ପୁରୀରୁ ପଣ୍ଡିତ ଗୋପବନ୍ଧୁ, ଜଗବନ୍ଧୁ ସିଂହ; ଭଦ୍ରକରୁ କାନ୍ତକବି ଲକ୍ଷ୍ମୀକାନ୍ତ; ସମ୍ବଲପୁରରୁ ଚନ୍ଦ୍ରଶେଖର ବେହେରା ଏବଂ ଦାଶରଥି ମିଶ୍ର, ସତ୍ୟବାଦୀରୁ ପଣ୍ଡିତ ନୀଳକଣ୍ଠ ଏବଂ ଗୋଦାବରୀଶ; ଆସିକାରୁ ବଟକୃଷ୍ଣ ମହାପାତ୍ର ଏବଂ ହରିହର ପଣ୍ଡା; ବଡ଼ଖେମଣ୍ଡିରୁ ନୀଳମଣି ବିଦ୍ୟାରତ୍ନ, ବାଲେଶ୍ୱରରୁ ଫକୀରମୋହନ ଏବଂ ଦୈତ୍ୟାରି ପ୍ରସାଦ ଦାସ, କୁଶୁପୁରରୁ ପଲ୍ଲୀକବି ନନ୍ଦକିଶୋର, ଇଚ୍ଛାପୁରରୁ କବିଶେଖର ଚିନ୍ତାମଣି, ବ୍ରହ୍ମପୁରରୁ ଡାନିଏଲ୍ ମହାନ୍ତି ଏବଂ ଓଡ଼ିଶା ବାହାରୁ ସୁଦୂର ଖରସୁଆଁରୁ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ଏବଂ କଲିକତାରୁ ବାରିଷ୍ଟର ବିଶ୍ୱନାଥ ମିଶ୍ର ମଧ୍ୟ ଯୋଗ ଦେଇଥିଲେ ।

ସମ୍ମିଳନୀର ଅଧିବେଶନ ଆରମ୍ଭରେ କବିବର ରାଧାନାଥଙ୍କର 'ସର୍ବେଷାଂ ନୋ ଜନନୀ ଭାରତ ଧରଣୀ କଳ୍ପଲତେୟଂ' ଗାନ କରାଯାଇ କାର୍ଯ୍ୟକ୍ରମ ଆରମ୍ଭ କରାଯାଇଥିଲା ଏବଂ ଶେଷ ଅଧିବେଶନର ଅନ୍ତିମ ପର୍ଯ୍ୟାୟ ଥିଲା ମଣ୍ଡପ ଉପରୁ ମହାରାଜା କୃଷ୍ଣଚନ୍ଦ୍ରଙ୍କ ଧନ୍ୟବାଦ ଅର୍ପଣ । ସଫଳତାର ସହିତ ଦଶମ ଅଧିବେଶନ ସମାପ୍ତ ହୋଇଥିଲା । ଏହି ଅଧିବେଶନଟି ଓଡ଼ିଆ ବୁଦ୍ଧିଜୀବୀ ତଥା ନେତୃବର୍ଗଙ୍କ ସାମୟିକ ମିଳନପୀଠ ହେବା ସଂଗେସଂଗେ ହୋଇଯାଇଥିଲା ପାରଳା ଅଞ୍ଚଳ / ରାଜ୍ୟର ଅଧିବାସୀଙ୍କ ପାଇଁ ଏକ ପ୍ରେରଣାର ଉତ୍ସ । ସର୍ବୋପରି ମହାରାଜା ଶ୍ରୀକୃଷ୍ଣଚନ୍ଦ୍ର ଗଜପତିଙ୍କ ପାଇଁ ତାହା ଥିଲା ଜାତୀୟତାର ଅଗଣିତ ଉଦ୍‌ବେଳିତ ଜୁଆର ଲହଡ଼ି ଭାଙ୍ଗୁଥିବା ଏକ ବିସ୍ତୀର୍ଣ୍ଣ ବେଳାଭୂମି ।

ନୂତନ କରି ରାଜଗାଦି ଆରୋହଣ କରିଥିଲେ ସୁଦ୍ଧା ଜାତୀୟତାର ମୋହନ ବଂଶୀ ସ୍ୱନରେ ସେତେବେଳକୁ ମହାରାଜା କୃଷ୍ଣଚନ୍ଦ୍ର ବିଶେଷ ଭାବରେ ବଶୀଭୂତ ହୋଇ ସାରିଥିଲେ । ସୁଦୂର ପ୍ରସାରୀ ଅନେକ ଭାବ-ଭାବାନ୍ତର ତାଙ୍କରି ମାନସପଟରେ ସ୍ପନ୍ଦିତ ହେଉଥିଲା । ତେଣୁ ସେଠାରେ ସମ୍ମିଳନୀ ଅବସରରେ ଉତ୍କଳୀୟ ବୁଦ୍ଧିଜୀବୀଙ୍କ ସମାବେଶ ତାହାଙ୍କୁ ଅଧିକ ମାତ୍ରାରେ ଉତ୍ସାହିତ କରିବା ସ୍ୱାଭାବିକ । ପ୍ରଥମ ଓ ପ୍ରଧାନ କଥା ଥିଲା ସେମାନଙ୍କ ସହିତ ପ୍ରତ୍ୟକ୍ଷ ହେବା ଏବଂ ଭାବ ବିନିମୟ କରିବା ଏବଂ ବିଶେଷ ଉଲ୍ଲେଖଯୋଗ୍ୟ ଥିଲା ଅଧିବେଶନ ଅବସରରେ ଅନୁଷ୍ଠିତ ଅଣ-ଆନୁଷ୍ଠାନିକ ବୈଠକଗୁଡ଼ିକରେ ପାରଳା ମହାରାଜାଙ୍କ ସକ୍ରିୟ ଅଂଶଗ୍ରହଣ କରିବା ଏବଂ ଆପଣାର ନିଜସ୍ୱ ମତ ପ୍ରଦାନ କରିବା । ଓଡ଼ିଆମାନଙ୍କର ସର୍ବାଙ୍ଗୀନ ଉନ୍ନତି ଓ ଦେଶମିଶ୍ରଣ



Ama Odisha pdf (aamaodisha@gmail.com)

ପ୍ରସ୍ତାବତ ଥିଲା ସବୁ ଆଲୋଚନାର କେନ୍ଦ୍ରବିନ୍ଦୁ । କେନ୍ଦ୍ରବିନ୍ଦୁ ନିର୍ଦ୍ଦିଷ୍ଟ ଥିଲେ ସୁଦ୍ଧା ସେଥିପାଇଁ ପଥ ଓ ପନ୍ଥା ନେଇ ସମସ୍ତଙ୍କ ମତରେ ଐକ୍ୟ ନଥିଲା । କିନ୍ତୁ ସମସ୍ତେ ସହୃଦୟତାର ସହିତ ଅନ୍ୟକୁ ବୁଝିବାକୁ ଚେଷ୍ଟାଶୀଳ ଥିଲେ ଏବଂ ତେଣୁ ପ୍ରତ୍ୟେକ ମତର ପୁଙ୍ଖାନୁପୁଙ୍ଖ ଆଲୋଚନା କରୁଥିଲେ ପ୍ରକାଶ୍ୟ ଭାବରେ ।

ସେତିକିବେଳେ ପାରଳା ମହାରାଜାଙ୍କର ଉଗ୍ରଜାତୀୟ ଚେତନାର ଉଦ୍‌ଗୀରଣ ତୁଙ୍ଗ ନେତା ମଧୁବାବୁଙ୍କ ସମେତ ଅନେକଙ୍କୁ ବିସ୍ମିତ କରାଇ ଦେଇଥିଲା । ସେ ଯାବତ୍ ଉତ୍କଳ ସମ୍ମିଳନୀ ତଥା ଓଡ଼ିଆ ଆନ୍ଦୋଳନକାରୀଗଣଙ୍କ ପ୍ରମୁଖ ଦାବି ଥିଲା ବିଚ୍ଛିନ୍ନ ହୋଇ ରହିଥିବା ସବୁ ଓଡ଼ିଆ ଭାଷୀ ଅଞ୍ଚଳଗୁଡ଼ିକର ଏକୀକରଣ କରାଯାଇ ଯେ କୌଣସି ଗୋଟିଏ ପ୍ରାଦେଶିକ ଶାସନ ସହିତ ଯୁକ୍ତ କରାଯାଉ । କିନ୍ତୁ ମହାରାଜା କୃଷ୍ଣଚନ୍ଦ୍ର ଆଉ ପାଦେ ଆଗେଇ ଯାଇ ମତ ପ୍ରଦାନ କରିଥିଲେ ଯେ ସବୁ ଓଡ଼ିଆ ଅଞ୍ଚଳର କେବଳ ଏକୀକରଣ ନୁହେଁ, ତତ୍ ସହିତ ଆମର ଦାବି ହେଉ ସେହିଭଳି ଏକୀକୃତ ଅଞ୍ଚଳ ସବୁକୁ ନେଇ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ ଏବଂ ଉତ୍କଳ ସମ୍ମିଳନୀ ତତ୍‌ପରଠାରୁ ଯଥାର୍ଥଭାବେ ସେହି ଲକ୍ଷ୍ୟକୁ ଦୃଷ୍ଟିରେ ରଖି ପଦକ୍ଷେପମାନ ନେବା ଆବଶ୍ୟକ ।

ହେଲେ ମହାରାଜାଙ୍କ ସେହି ମତ କିଛି ତୁଙ୍ଗ ସଂଗଠକଙ୍କୁ ଯଥାଯୋଗ୍ୟ ମନେ ହୋଇ ନଥିଲା; ଏପରିକି ସମ୍ମିଳନୀର ପ୍ରାଣ ପ୍ରତିଷ୍ଠାତା ମଧୁବାବୁ ମଧ୍ୟ ସେମାନଙ୍କ ମଧ୍ୟରେ ଥିଲେ ପ୍ରମୁଖ । ତାଙ୍କରି ମତ ଥିଲା, ସେତେବେଳେ ଏକ ସ୍ୱତନ୍ତ୍ର ପ୍ରଦେଶଦାବି କରାଗଲେ ବ୍ୟୟବହୁଳତା ଆଳରେ କେନ୍ଦ୍ର ସରକାର ସେଭଳି ପ୍ରସ୍ତାବକୁ ସହଜରେ ପ୍ରତ୍ୟାଖ୍ୟାନ କରି ଦେଇ ପାରିବେ । କିଂତୁ ଆପଣା ମତକୁ ସିଦ୍ଧ କରାଇବାପାଇଁ ମହାରାଜାଙ୍କ ଯୁକ୍ତି ଥିଲା– ଲୁହା ତାତିଲା ଅବସ୍ଥାରେ ଥିବାବେଳେ ପାହାର ବସାଇ ଅଭିଳଷିତ ଦ୍ରବ୍ୟ ତିଆରି କରାଯାଇପାରେ । ତେଣୁ ସାଂପ୍ରତିକ ପ୍ରଥମ ବିଶ୍ୱଯୁଦ୍ଧକାଳୀନ ବିଷମ ପରିସ୍ଥିତିରେ ପଡ଼ି ଆମ୍ଭମାନଙ୍କର ସହଯୋଗ କାମନା କରୁଥିବା ବ୍ରିଟିଶ୍ ସରକାରଙ୍କୁ ବର୍ତ୍ତମାନ ସମର୍ଥନ ଜଣାଇ 'ଦେଇଥିଲେ ପାଇ' ନୀତିରେ ପରେ ପରେ ଆମେ ସେମାନଙ୍କଠାରୁ କିଛ ପାଇବାପାଇଁ ମଧ୍ୟ ଉଦ୍ୟମ କରିବା ଆବଶ୍ୟକ । ବର୍ତ୍ତମାନ ସେଇ ସୁଯୋଗ ଉପସ୍ଥିତ ଏବଂ ତାହାକୁ ହାତଛଡ଼ା କରିବା ଉଚିତ ହେବନାହିଁ ।

ଯଦିବା ମଧୁବାବୁଙ୍କ ଭଳି ପ୍ରତିଷ୍ଠିତ ବ୍ୟକ୍ତିତ୍ୱ ତଥା ନେତୃତ୍ୱ ସହିତ ସେତେବେଳକାର ଜଣେ ନବଯୁବକ କୃଷ୍ଣଚନ୍ଦ୍ରଙ୍କୁ ସମତୁଲ ମନେକରାଯିବାର ଅବକାଶ ନଥିଲା, ତଥାପି ସେହି ମତାମତ ପ୍ରତି ସେଠି ସମବେତ ନେତୃମଣ୍ଡଳୀରୁ କେତେଜଣ ସମର୍ଥନ ଜଣାଇଥିଲେ । ଗୋପବନ୍ଧୁ, ଶଶି ରଥ, ଫକୀରମୋହନ, ବ୍ରଜସୁନ୍ଦର, ଜଗବନ୍ଧୁ ସିଂହ, ମଂଜୁଷା ତଥା ଧରାକୋଟର ରାଜାଗଣଙ୍କ ସମେତ ଆହୁରି ଅନେକେ ଯୁବକରାଜାଙ୍କ ଯୁକ୍ତିକୁ ଯଥାର୍ଥ ବିବେଚନା କରିଥିଲେ । ସେହି ପ୍ରସ୍ତାବର ଅଧିକ ଆଲୋଚନା ପରେ ମଧୁବାବୁ ମଧ୍ୟ ତାହାକୁ ସମର୍ଥନ ଜଣାଇଥିଲେ । ବାସ୍ତବରେ ତାହା ହିଁ ଥିଲା ପାରଳା ମହାରାଜାଙ୍କ ହାର୍ଦ୍ଦିକ କାମନା ଏବଂ



Ama Odisha pdf (aamaodisha@gmail.com)



ପ୍ରଥମ ବିଶ୍ୱଯୁଦ୍ଧ ବେଳେ ଅବୈତନିକ କମାଣ୍ଡର

ସେହି କାମନା ପ୍ରାୟ ସେହି ସମୟରୁ ହିଁ ତାଙ୍କରି ଭିତରେ ବସାବାନ୍ଧି ରହିଯାଇଥିଲା ଶେଷ ପର୍ଯ୍ୟନ୍ତ; ବାସ୍ତବରେ ତାହା ପରିପୂରଣ ହେବା ପର୍ଯ୍ୟନ୍ତ ।

ତେବେ ଏହା ମଧ୍ୟ ନିଶ୍ଚିତ ଥିଲା ଯେ ଉତ୍କଳ ସମ୍ମିଳନୀର ଦଶମ ଅଧିବେଶନ ପୂର୍ବରୁ ଶ୍ରୀକୃଷ୍ଣଚନ୍ଦ୍ର ଗଜପତିଙ୍କ ମନରେ ଜାଗରିତ ହୋଇଥିବା ଜାତୀୟ ଚେତନା ତତ୍‌ପରଠାରୁ ଆହୁରି ଅଧିକ ତୀକ୍ଷ୍ଣ, ଆହୁରି ଅଧିକ ଶାଣିତ ହୋଇଥିଲା ନିଶ୍ଚୟ । ତେଣୁ ବିଭିନ୍ନ କାରଣରୁ ଉତ୍କଳ ସମ୍ମିଳନୀର ପଦପାତରେ ଅସ୍ଥିରତା ସତ୍ତ୍ୱେ ସମୟର ଅନୁକ୍ରମରେ ମହାରାଜାଙ୍କର ସେଇ ନିର୍ଦ୍ଦିଷ୍ଟ ଲକ୍ଷ୍ୟବିନ୍ଦୁଟି କ୍ରମଶଃ ଅଧିକରୁ ଅଧିକ ଉଜ୍ଜ୍ୱଳ ରୂପ ହିଁ ପରିଗ୍ରହଣ କରିଥିଲା ।

ସମୟକ୍ରମେ ଉତ୍କଳ ସମ୍ମିଳନୀର ନେତୃତ୍ୱ ତାହାର ଜନ୍ମଦାତା ମଧୁବାବୁଙ୍କ ହାତରୁ ଆପଣା ଛାଏଁ ଚାଲିଯାଇଥିଲା ଗୋପବନ୍ଧୁଙ୍କ ହାତକୁ ଏବଂ ଗୋପବନ୍ଧୁଙ୍କ ଭାବ ଚେତନାକୁ ମହାତ୍ମାଗାନ୍ଧିଙ୍କ ଜାତୀୟ ଆନ୍ଦୋଳନ ତଥା ନୀତିଗତ ଆଦର୍ଶ ସମୟ କ୍ରମେ ସଂପୂର୍ଣ୍ଣ ପ୍ରଭାବିତ କରି ନେଇଥିଲା । ପରିଣାମତଃ ୧୯୨୦ ମସିହାରେ ସମ୍ମିଳନୀର ଚକ୍ରଧରପୁରଠାରେ ଅନୁଷ୍ଠିତ ଅଧିବେଶନରେ ଏହି ଅନୁଷ୍ଠାନ ଭାରତୀୟ



Ama Odisha pdf (aamaodisha@gmail.com)

ଜାତୀୟ କଂଗ୍ରେସ ସହିତ ସାମିଲ୍ ହେବା ନିଷ୍ପତ୍ତି ଗ୍ରହଣ କରାଯାଇଥିଲା । ଏଭଳି ପଦକ୍ଷେପ ଗୋପବନ୍ଧୁଙ୍କ ନେତୃତ୍ୱରେ ହିଁ ନିଆଯାଇଥିଲା ।

ତତ୍‌ପରେ ମହାରାଜା କୃଷ୍ଣଚନ୍ଦ୍ର ସ୍ଥିର କରିଥିଲେ ଯେ ପୂର୍ବ ନିର୍ଦ୍ଧାରିତ ଲକ୍ଷ୍ୟ ବିନ୍ଦୁରେ ପହଞ୍ଚିବା ପୂର୍ବରୁ ସେ ଆପଣାର ଗତିପଥ କଦାପି ସାମାନ୍ୟତମ ଭାବରେ ମଧ୍ୟ ପରିବର୍ତ୍ତନ କରିବେ ନାହିଁ । ପରିଣାମତଃ ତତ୍‌କାଳୀନ ଉତ୍କଳୀୟ ତୁଙ୍ଗ ନେତୃବର୍ଗଙ୍କ ମଧ୍ୟରେ ଏକ ବିଭାଜନ ହୋଇଥିଲା କହିଲେ ଚଳେ । ଯେଉଁ ଗୋଷ୍ଠୀ କଂଗ୍ରେସ ପରିବର୍ତ୍ତେ ସ୍ୱତନ୍ତ୍ର ପ୍ରଦେଶ ଆନ୍ଦୋଳନକୁ ଆପଣେଇ ନେଇଥିଲେ ସେମାନଙ୍କ ମଧ୍ୟରେ ପ୍ରମୁଖ ଥିଲେ ମହାରାଜା । ସେମାନଙ୍କ କ୍ରମାଗତ ଆନ୍ଦୋଳନାତ୍ମକ କାର୍ଯ୍ୟକଳାପ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବାରେ ସମର୍ଥ ହୋଇଥିଲା ଏବଂ ତାର ପରିଣାମ ସ୍ୱରୂପ ବିଭିନ୍ନ ଉତ୍କଳୀୟ ସମସ୍ୟାର ଅନୁସନ୍ଧାନପାଇଁ ସମୟାନୁକ୍ରମେ ଯେଉଁ ସରକାରୀ କମିଟିମାନ ଗଠିତ ହୋଇଥିଲା ସେଥିରେ ଉତ୍କଳୀୟ ସ୍ୱରଲହରୀର ଯଥାର୍ଥ ପ୍ରତିଫଳନ ପାଇଁ ଗଜପତି କୃଷ୍ଣଚନ୍ଦ୍ର ବିଶେଷ କର୍ମତତ୍ପର ହୋଇ ଉଠିଥିଲେ । ତେବେ ସିଂହାସନ ଆରୋହଣ କରିବା ପରେ ଆପଣାର ରାଜ୍ୟବାସୀଙ୍କ ସର୍ବାଙ୍ଗୀନ ଉନ୍ନତି କଳ୍ପେ ବିଭିନ୍ନ କାର୍ଯ୍ୟକୁ ମଧ୍ୟ ଅଗ୍ରାଧିକାର ଦେଇଥିଲେ ମହାରାଜା ।

—୦—



Ama Odisha pdf (aamaodisha@gmail.com)

# ପ୍ରଜାହିତ- ରାଜଧର୍ମ

ରାଜକୁମାର କଲେଜରେ ଶିକ୍ଷାକାଳରେ ପ୍ରଜାଗଣଙ୍କ ହିତପାଇଁ ଜଣେ ରାଜାର କର୍ତ୍ତବ୍ୟ ସଂପର୍କରେ ଶିକ୍ଷାଲାଭ କରିଥିବା ବେଳେ ସେଠାରୁ ଫେରି ରାଜଧାନୀରେ କିଛିକାଳ ରାଜ୍ୟର ବିଭିନ୍ନ ବିଷୟରେ ଉତ୍ସୁକତାର ସହିତ ଅନୁଧ୍ୟାନ କରିଥିଲେ କୃଷ୍ଣଚନ୍ଦ୍ର ସିଂହାସନ ଆରୋହଣ କରିବା ପୂର୍ବରୁ । ସେତେବେଳକୁ ତାହାଙ୍କର ଦୃଢ଼ ହୃଦ୍‌ବୋଧ ହୋଇସାରିଥିଲା ଯେ ସାଧାରଣ ଶିକ୍ଷାର ଉନ୍ନତିରେ ହିଁ ରାଜ୍ୟର ଉନ୍ନତି ସମ୍ଭବ । ଦେଶର ଅଜ୍ଞାନ ଅନ୍ଧକାର ଦୂର କରାଯାଇ ପାରିଲେ ହିଁ ଜନଗଣଙ୍କର, ରାଜ୍ୟର, ଜାତିର ତଥା ସର୍ବୋପରି ଦେଶର ଉନ୍ନତି ସାଧିତ ହୋଇ ପାରିବ । ଏଭଳି ଚିନ୍ତାଧାରା ତାଙ୍କରି ମନରେ ପରିପୁଷ୍ଟ ହେବାରେ ପିତା ଗୌର ଗଜପତି ତଥା ପିତୃବ୍ୟ ପଦ୍ମନାଭ ଦେବଙ୍କ ପ୍ରଭାବ ଥିଲା ସର୍ବାଧିକ ।

ପାରଳାଖେମଣ୍ଡି ରାଜ୍ୟରେ ଶିକ୍ଷାର ପ୍ରସାର ପାଇଁ ଯେଉଁସବୁ ଉଦ୍ୟମମାନ ସେମାନଙ୍କଦ୍ୱାରା ଗୃହୀତ ହେଉଥିଲା ତାହାର ପ୍ରଭାବରେ ବାଳକ କୃଷ୍ଣଚନ୍ଦ୍ର ପ୍ରଭାବିତ ହେଉଥିଲେ । ପୁଣି ସେ ନିଜେ ସେଭଳି ଉଦ୍ୟମର ସିଧାସଳଖ ସୁଫଳ ପାଇଥିଲେ ପିତାଙ୍କଦ୍ୱାରା ପ୍ରତିଷ୍ଠିତ ମହାରାଜା ବାଳକ ହାଇସ୍କୁଲ୍‌ରେ ଶିକ୍ଷାଲାଭ କରି ।

ସ୍କୁଲ୍ ଶିକ୍ଷାର ପରିସମାପ୍ତି ବେଳକୁ ହିଁ କୃଷ୍ଣଚନ୍ଦ୍ରଙ୍କ ମନରେ ରାଜ୍ୟର ବିକାଶପାଇଁ ଉତ୍ତମ ଶିକ୍ଷାର ଆବଶ୍ୟକତା ନେଇ ସତେ ଯେମିତି ସ୍ୱଚ୍ଛ ଧାରଣା ସୃଷ୍ଟି ହୋଇ ସାରିଥିଲା କହିଲେ ବୋଧହୁଏ ଭୁଲ୍ ହେବ ନାହିଁ । ୧୮୯୬ ମସିହାଠାରୁ ପାରଳାଖେମୁଣ୍ଡି ସହରରେ ଏକ ସେକେଣ୍ଡ ଗ୍ରେଡ୍ କଲେଜ (ଆଇ.ଏ ଶ୍ରେଣୀ ପର୍ଯ୍ୟନ୍ତ) ସ୍ଥାପିତ ହୋଇସାରିଥିଲା । ସେଥିପାଇଁ ଦାଦା ଓ ପିତାଙ୍କ ଉଦ୍ୟମ ବିଷୟରେ ସେ ଅଜ୍ଞ ନଥିଲେ । ହେଲେ ୧୯୦୫ ମସିହା ବେଳକୁ ଉଭୟ ରାଜଭ୍ରାତାଙ୍କ ମୃତ୍ୟୁ ପରେ ପରେ ରାଜ୍ୟର ଶାସନ ଭାର କୋର୍ଟ ଅଫ୍ ୱାର୍ଡ୍‌ସ୍ ଗ୍ରହଣ କରିନେଇଥିଲେ । ସେତେବେଳେ ସରକାର ପ୍ରସ୍ତାବ କରିଥିଲେ ପାରଳାଖେମୁଣ୍ଡି ସହରରୁ ସେହି କଲେଜ ପାଠ୍ୟକ୍ରମକୁ ବନ୍ଦ କରିଦେବାପାଇଁ । ପିତାଙ୍କ ଅବର୍ତ୍ତମାନରେ ବାଳକ କୃଷ୍ଣଚନ୍ଦ୍ର



Ama Odisha pdf (aamaodisha@gmail.com)

ସେତେବେଳେ ସେଇ ପ୍ରସ୍ତାବର ଘୋର ବିରୋଧ କରିଥିଲେ କୋର୍ଟ ଅଫ୍ ୱାର୍ଡ୍‌ସଙ୍କ ମାଧ୍ୟମରେ । ବାସ୍ତବରେ ସେତେବେଳକୁ ବାଳକ କୃଷ୍ଣଚନ୍ଦ୍ରଙ୍କ ସାଧାରଣ ଶିକ୍ଷାର ଉପାଦେୟତା ନେଇ ମାନସିକ ବିକାଶ ସଂପୂର୍ଣ୍ଣ ହୋଇ ଥାଉ ବା ନଥାଉ, ପିତା / ପିତୃବ୍ୟଙ୍କ ପ୍ରତି ଗଭୀର ସମ୍ମାନବୋଧ, ସେମାନଙ୍କ ପ୍ରୟାସରେ ସ୍ଥାପିତ ଶିକ୍ଷାନୁଷ୍ଠାନକୁ ବନ୍ଦ କରାଯିବା ପ୍ରସ୍ତାବକୁ ଦୃଢ଼ ପ୍ରତିବାଦ କରିଥିଲେ ସେଇ କଞ୍ଚା ବୟସରେ । ସେତେବେଳେ ସରକାର ମଧ୍ୟ ତାହାଙ୍କର ମତକୁ ସମ୍ମାନ ଦେଇଥିଲେ । ପୂର୍ବ ପରି ସେଇ ମହାରାଜା ହାଇସ୍କୁଲ୍ ପରିସରରେ ହିଁ ଚାଲୁ ରହିଥିଲା କଲେଜଟି ।

ମହାରାଜା କୃଷ୍ଣଚନ୍ଦ୍ର ରାଜଗାଦି ଆରୋହଣ କରିବା ପରେପରେ ରାଜ୍ୟରେ ସାମୂହିକ ପ୍ରଜା ମଙ୍ଗଳକାରୀ କାର୍ଯ୍ୟକ୍ରମଗୁଡ଼ିକ ମଧ୍ୟରେ ସର୍ବପ୍ରଥମ ଥିଲା ରାଜ୍ୟରେ ଥିବା ଶିକ୍ଷା ତଥା ଶିକ୍ଷାୟତନଗୁଡ଼ିକର ଉନ୍ନତିକଳ୍ପେ ବିଭିନ୍ନ ପଦକ୍ଷେପ । ଶିକ୍ଷାକୁ ବିଶେଷ ଗୁରୁତ୍ୱ ଆରୋପ କରୁଥିବା ସଂପର୍କରେ ଯଥାର୍ଥରେ ଅନୁଶୀଳନ କରାଯାଇପାରେ ରାଜଗାଦି ଆରୋହଣ ଅବସରରେ କରିଥିବା ବିଭିନ୍ନ ଦାନରୁ । ସେତିକିବେଳେ, ତାହାଙ୍କର ପ୍ରାଥମିକ ଦାନ ଅବସରରେ ଜାତୀୟବାଦୀ ଚେତନା ଆଧାରରେ ଗଢ଼ି ଉଠୁଥିବା ସତ୍ୟବାଦୀ ବନ ବିଦ୍ୟାଳୟ ନିର୍ମାଣପାଇଁ ଆର୍ଥିକ ସହାୟତା ପ୍ରଦାନ କରିଥିଲେ । ସାମଗ୍ରିକ ଭାବେ ଉତ୍କଳୀୟଙ୍କ ଶିକ୍ଷା ବିକାଶପାଇଁ ଉତ୍ସୁକ ମହାରାଜା ଆପଣା ରାଜ୍ୟରେ ମଧ୍ୟ ଶିକ୍ଷାର ବିସ୍ତାରପାଇଁ ଅର୍ଥ ମଂଜୁର କରିଥିଲେ । ପାରଳାଖେମୁଣ୍ଡି ସହରସ୍ଥିତ ମହାରାଜା କଲେଜର ଉନ୍ନତି କଳ୍ପେ ପ୍ରଥମ ଉଦ୍ୟମ କରିଥିଲେ । ସେତେବେଳେ ବର୍ତ୍ତମାନର ମହାରାଜା ହାଇସ୍କୁଲ୍‌କୁ ଲାଗି ଭୋଇ ସାହି ପାହାଡ଼ର ନିମ୍ନଦେଶ ସମତଳ କରାଇ ନୂତନ କୋଠା ନିର୍ମାଣ କରାଇଥିଲେ । କୃଷ୍ଣଚନ୍ଦ୍ର ଗାଦି ଆସୀନ ହେବା ବର୍ଷରୁ ହିଁ ସେହି କାର୍ଯ୍ୟ ଆରମ୍ଭ ହୋଇ ୧୯୧୬ରେ ଶେଷ ହୋଇଥିଲା । ସେଥିପାଇଁ ସେତେବେଳେ ଖର୍ଚ୍ଚ ହୋଇଥିଲା ପ୍ରାୟ ୬୦ ହଜାର ଟଙ୍କା । ସେହି ନୂତନ କୋଠାର ନାମକରଣ କରାଯାଇଥିଲା 'ମୋରିଶନ୍ ଏକ୍ସଟେନ୍‌ସନ୍' । ମହାରାଜାଙ୍କ କଲେଜ ଜୀବନରେ ନିଉୱିଙ୍ଗ୍‌ଟନ୍ କଲେଜର ଭୂଗୋଳ ଅଧ୍ୟାପକ ତଥା ତାହାଙ୍କର ପ୍ରିୟ ଗୁରୁ ମିଷ୍ଟର ମୋରିସନ୍‌ଙ୍କ ନାମାନୁସରଣରେ ପାରଳା କଲେଜର ସେହି ନୂତନ ନିର୍ମିତ ଅଂଶକୁ ନାମିତ କରାଯାଇଥିଲା । ଉଲ୍ଲେଖଯୋଗ୍ୟ ଥିଲା, ଖୋଦ୍ ସେଇ ସ୍ୱନାମଧନ୍ୟ ଅଧ୍ୟାପକଙ୍କ କରକମଳରେ ହିଁ ତାହା ଉନ୍ମୋଚିତ ହୋଇଥିଲା । ରାଜକୁମାର କଲେଜର ଦଳେ ଛାତ୍ରଙ୍କ ସହ କେବଳ ସେଇଥିପାଇଁ ମିଷ୍ଟର ମୋରିଶନ୍ ପାରଳାଖେମୁଣ୍ଡି ଆସିଥିଲେ । ତାହା ହିଁ ଆଜିର ପାରଳାଖେମୁଣ୍ଡି ସ୍ଥିତ ଶ୍ରୀକୃଷ୍ଣଚନ୍ଦ୍ର ଗଜପତି କଲେଜ । ଅବଶ୍ୟ ସାଂପ୍ରତିକ କାଳରେ ଆବଶ୍ୟକତାକୁ ଚାହିଁ ସେଥିରେ ଆହୁରି କିଛି ଅଂଶ ସଂଯୁକ୍ତ ହୋଇ ସାରିଲାଣି ।

ତାଙ୍କରିଦ୍ୱାରା ପରିଚାଳିତ ସେଇ କଲେଜକୁ ଏକ ଆଦର୍ଶ ସ୍ଥାନୀୟ ଅନୁଷ୍ଠାନରେ ପରିଣତ କରିବାପାଇଁ ମହାରାଜା ଅଧିକ ଯତ୍ନଶୀଳ ଥିଲେ । ସେଥିପାଇଁ ବିଭିନ୍ନ ବିଶ୍ୱବିଦ୍ୟାଳୟର କୃତିତ୍ୱ



Ama Odisha pdf (aamaodisha@gmail.com)

ହାସଲ କରିଥିବା ମେଧାଯୁକ୍ତ ବ୍ୟକ୍ତିବିଶେଷଙ୍କୁ ସେଠାରେ ଅଧ୍ୟାପକ ନିଯୁକ୍ତ କରୁଥିଲେ । ସମସ୍ତ ପ୍ରକାରର ପ୍ରୋତ୍ସାହନ ଦିଆଯାଉଥିଲା ଛାତ୍ରଗଣଙ୍କ ବୌଦ୍ଧିକ ବିକାଶପାଇଁ । ଅନୁଷ୍ଠାନଟିର ଗୁଣାତ୍ମକ ବୃଦ୍ଧିଯୋଗୁଁ ତାହା ୧୯୩୬-୩୭ ମସିହାରେ ଫାଷ୍ଟ୍ ଗ୍ରେଡ୍ କଲେଜ ରୂପେ ସ୍ୱୀକୃତି ଲାଭ କରିଥିଲା ଏବଂ ଛାତ୍ରମାନେ ସେଠାରେ ସ୍ନାତକସ୍ତରୀୟ ଶିକ୍ଷାଲାଭ କରିବାର ସୁଯୋଗ ଲାଭ କରିଥିଲେ । ଏଠାରେ ଉଲ୍ଲେଖଯୋଗ୍ୟ ଯେ କଟକର ରେଭେନ୍ସା କଲେଜକୁ ବାଦ୍‌ଦେଲେ ତାହା ଥିଲା ପ୍ରାକୃତିକ ଉତ୍କଳର ପ୍ରଥମ ଶ୍ରେଣୀୟ ଦ୍ୱିତୀୟ କଲେଜ। ସମଗ୍ର ଓଡ଼ିଶାରେ ତିନୋଟି କଲେଜ ମଧ୍ୟରୁ ତୃତୀୟଟି ହେଲା ବ୍ରହ୍ମପୁରର ଖଲ୍ଲିକୋଟ କଲେଜ- ଆଇ.ଏ. ଶ୍ରେଣୀ ପାଠ୍ୟକ୍ରମଯୁକ୍ତ ଏକ ଦ୍ୱିତୀୟ ଶ୍ରେଣୀୟ କଲେଜ ।

ପାରଳାଖେମୁଣ୍ଡିର ମହାରାଜା କଲେଜଟି କେବଳ ଖେମୁଣ୍ଡି ରାଜ୍ୟର ଛାତ୍ର-ଛାତ୍ରୀଙ୍କ ପାଇଁ ଉଦ୍ଦିଷ୍ଟ ନଥିଲା, ତାହାର ଫାଟକ ଉନ୍ମୁକ୍ତ ଥିଲା ସମସ୍ତଙ୍କପାଇଁ । କେବଳ ସେଇ କଲେଜ କାହିଁକି ପାରଳାର ଶିକ୍ଷାୟତନଗୁଡ଼ିକରେ ଅଧ୍ୟୟନ କରୁଥିବା ଦୂରଦୂରାନ୍ତରର ଛାତ୍ରଗଣଙ୍କ ରହିବାପାଇଁ ମହାରାଜା କୃଷ୍ଣଚନ୍ଦ୍ର ଗୋଟିଏ ବିରାଟ ଦ୍ୱିତଳ ଛାତ୍ରାବାସ ଯୋଗାଇ ଦେଇଥିଲେ । ଗଜପତି କଲେଜର ପ୍ରାୟ ନିକଟରେ ହିଁ ସେହି ଛାତ୍ରାବାସ ନିର୍ମିତ ହୋଇଥିଲା । ପୁଣି ଜାତି, ଧର୍ମ, ଭାଷା ନିର୍ବିଶେଷରେ ପାରଳାର ଶିକ୍ଷାନୁଷ୍ଠାନଗୁଡ଼ିକରେ ମେଧାବୀ ଛାତ୍ରମାନଙ୍କୁ ଅଧିକ ମେଧାଯୁକ୍ତ କରାଇବାପାଇଁ ପ୍ରୋତ୍ସାହନ ସ୍ୱରୂପ ଅନେକଗୁଡ଼ିଏ ଛାତ୍ରବୃତ୍ତି ପ୍ରଦାନ କରାଯାଉଥିଲା । ପୁଣି ଶିକ୍ଷାନୁଷ୍ଠାନଗୁଡ଼ିକରେ ବିଭିନ୍ନ ବୃତ୍ତିଲାଭ କରିବା ସଙ୍ଗେସଙ୍ଗେ ସେମାନଙ୍କର ମାଗଣା ରହିବା ବ୍ୟବସ୍ଥା ମଧ୍ୟ କରାଯାଇଥିଲା । ତତ୍ ସହିତ ଛାତ୍ରାବାସରେ ମାଗଣା ଖାଦ୍ୟପେୟର ମଧ୍ୟ ବ୍ୟବସ୍ଥା ହେଉଥିଲା ସେମାନଙ୍କପାଇଁ । ମେଧାବୀ ଛାତ୍ରଗଣଙ୍କ ସମେତ ବାସ୍ତବରେ ଗରିବ ଶ୍ରେଣୀୟ ଛାତ୍ରଗଣ ମଧ୍ୟ ସେ ସବୁ ସୁବିଧା ପାଇବାପାଇଁ ଯୋଗ୍ୟ ବିବେଚିତ ହେଉଥିଲେ । ଏଭଳି ସୁବିଧା ସମେତ ମହାରାଜା କୃଷ୍ଣଚନ୍ଦ୍ରଙ୍କ ପ୍ରତ୍ୟକ୍ଷ ପରିଚାଳନାରେ ଥିବା ଉକ୍ତ କଲେଜରେ ଉଚ୍ଚମାନର ଶିକ୍ଷା ଉପଲବ୍ଧ ହେଉଥିବା କାରଣରୁ ତାହା ବାସ୍ତବରେ ରାଜନୀତିକ ଓଡ଼ିଶା ବାହାରେ ଥିଲେ ସୁଦ୍ଧା ସମଗ୍ର ପ୍ରାକୃତିକ ଓଡ଼ିଶାବାସୀଙ୍କ ପାଇଁ ଥିଲା ଏକ ପ୍ରିୟ ଶିକ୍ଷାନୁଷ୍ଠାନ ଏବଂ ବିଶେଷକରି ମେଧାବୀଛାତ୍ରଙ୍କ ପାଇଁ ଏକ ଆକର୍ଷଣୀୟ କଲେଜ ।

ସେହିଭଳି ସେତେବେଳକାର ଜଣେ ମେଧାବୀ ଛାତ୍ର ତଥା ପରକାଳରେ ଓଡ଼ିଆ ସାହିତ୍ୟ ଜଗତର ଏକ ଅମ୍ଳାନ ପ୍ରତିଭା ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶଙ୍କ ସ୍ମୃତିଚାରଣ ଏଠାରେ ଉଲ୍ଲେଖଯୋଗ୍ୟ । ମହାରାଜାଙ୍କ ପୃଷ୍ଠପୋଷକତା ଲାଭ କରିଥିବା ଶ୍ରୀଯୁକ୍ତ ଦାଶଙ୍କ ମତରେ 'ଏଥିରେ (ପାରଳାର ଶିକ୍ଷାନୁଷ୍ଠାନଗୁଡ଼ିକରେ) ବାର୍ଷିକ ଲକ୍ଷାଧିକ ଟଙ୍କା ବ୍ୟୟ ହେଉଥିଲା । ଶତଶତ ଛାତ୍ର ବିନା ଦେୟରେ ଛାତ୍ରାବାସରେ ରହି ବିଦ୍ୟାଧ୍ୟୟନ କରୁଥିଲେ। ଏମାନଙ୍କ ମଧ୍ୟରୁ



Ama Odisha pdf (aamaodisha@gmail.com)

ଶତାଧିକ ଲୋକ ଉତ୍କଳରେ ସୁନାମ ଅର୍ଜନ କରିଛନ୍ତି । ପାରଳା ବାହାରେ ମାନ୍ଦ୍ରାଜ, ଉଦକମଣ୍ଡଳ, ବିଶାଖାପାଟଣା ପ୍ରଭୃତି ବି.ଏ, ଏମ୍.ଏ, ଓଭରସିଅରିଂ, ଇଞ୍ଜିନିଅରିଂ, ଡାକ୍ତରି ପ୍ରଭୃତି ଶିକ୍ଷାପାଇଁ ବୃତ୍ତି ପାଇଛନ୍ତି । ମହାରାଜା ଜମିଦାରିର ତେଲୁଗୁ ଓ ଓଡ଼ିଆ ଉଭୟ ସଂପ୍ରଦାୟର କୃତୀଛାତ୍ରମାନଙ୍କୁ ବୃତ୍ତିଦାନରେ ପାତର ଅନ୍ତର ବିଚାର କରି ନାହାନ୍ତି ।''

ପୁଣି ପଣ୍ଡିତ ଦାଶଙ୍କ ଭଳି ଆଉ ଜଣେ ଭୁକ୍ତଭୋଗୀ ସାହିତ୍ୟିକ ଡକ୍ଟର ରାଧାଚରଣ ପଣ୍ଡା । ତାହାଙ୍କର ଆତ୍ମକଥନ ହେଲା- ''୧୯୧୫-୧୯୧୮ ତିନି ବର୍ଷ ମଧ୍ୟରେ ମୁଁ ପାରଳା କଲେଜର ମେଟ୍ରିକ୍ ଛାତ୍ର ଥିଲି । ପ୍ରଥମ ବର୍ଷ ମୁଁ ମୋ ଆଇଙ୍କ ଘରେ ରହି ଫୋର୍ଥ ଫାର୍ମରେ ପଢ଼ିଲି । ସେହି ବର୍ଷ ପରୀକ୍ଷାରେ ଭଲ ପାସ୍ କରିଥିବାରୁ ଆଉ ଦୁଇବର୍ଷ କଲେଜ ଛାତ୍ର ନିବାସରେ 'ମାଗଣା ଖାଦ୍ୟ' ଖାଇବା ସୁବିଧା ମିଳିଲା । ମେଧାବୀ ଛାତ୍ରମାନଙ୍କ ମଧ୍ୟରୁ ୧୫ଜଣ ଓଡ଼ିଆ ଓ ୧୫ ଜଣ ତେଲୁଗୁ ଛାତ୍ର କେବଳ ମାସିକ ଦୁଇଟଙ୍କା ଦେଇ ଛାତ୍ରାବାସରେ ରହୁଥିଲେ ଏବଂ ସେମାନଙ୍କୁ ତିନି ଓଳି ଖାଇବାକୁ ମିଳୁଥିଲା । କୃଷ୍ଣଚନ୍ଦ୍ରଙ୍କ ଏ ବଦାନ୍ୟତାରେ ବହୁ ସଂଖ୍ୟକ ଛାତ୍ର କଲେଜ ପାଠ ପଢ଼ିପାରୁଥିଲେ ।''

ପିତୃସୁଲଭପ୍ରାଣ ସମ୍ପନ୍ନ କୃଷ୍ଣଚନ୍ଦ୍ର କଲେଜ ଛାତ୍ରାବାସରେ ରହୁଥିବା ଅନ୍ତେବାସୀଗଣଙ୍କ ଖାଦ୍ୟପେୟ, ସୁଖ-ସ୍ୱାଚ୍ଛନ୍ଦ୍ୟ ଇତ୍ୟାଦି ବିଷୟରେ ଅନୁସନ୍ଧାନ କରୁଥିଲେ ଅନେକ ସମୟରେ । ବେଳେବେଳେ ରାଜନଅରରେ ଉପଲବ୍ଧ ଖାଦ୍ୟଦ୍ରବ୍ୟ, ପନିପରିବା ଇତ୍ୟାଦି ଅନ୍ତେବାସୀଙ୍କପାଇଁ ପ୍ରେରଣ କରୁଥିଲେ ମଧ୍ୟ । ଅନେକ ସମୟରେ ବିଶେଷ କରି ଗ୍ରୀଷ୍ମ ଋତୁରେ, ରାଜନଅର ଗୋଶାଳାର ଅନ୍ୟତମ ପ୍ରସ୍ତୁତି- ଦହି ଓ ଚହ୍ଲା ବିକ୍ରୀପାଇଁ ବଜାରକୁ ନଯାଇ ଛାତ୍ରାବାସକୁ ଯାଉଥିଲା ମହାରାଜାଙ୍କ ନିର୍ଦ୍ଦେଶକ୍ରମେ ।

ସେହି କଲେଜର ମେଧାବୀ ଛାତ୍ରମାନେ କେବଳ ଯେ ଅଧ୍ୟୟନ ସମୟରେ ବୃତ୍ତିଲାଭ କରୁଥିଲେ ତା' ନୁହେଁ, ସେଠାରେ ବିଦ୍ୟାଶିକ୍ଷା ଶେଷ ହେବା ପରେ ମଧ୍ୟ ବିଶେଷ କୃତିତ୍ୱ ହାସଲ କରୁଥିବା ଛାତ୍ରମାନଙ୍କୁ ବିଦ୍ୟାବିଳାସୀ ଗଜପତି ରାଜ୍ୟ ତଥା ଦେଶ ବାହାରେ ଯାଇ ଅଧିକ ଅଧ୍ୟୟନ / ଗବେଷଣାପାଇଁ ବୃତ୍ତି ପ୍ରଦାନ କରୁଥିଲେ । ସେହି ଦୃଷ୍ଟିରୁ ଦେଖିଲେ ବାସ୍ତବରେ ପାରଳା ଗଜପତି କେବଳ ନଥିଲେ ଜଣେ ଜମିଦାର, ବ୍ୟକ୍ତିବିଶେଷ, ଥିଲେ ବାସ୍ତବରେ ଏକ ଏକ ବିରାଟ ଅନୁଷ୍ଠାନ ।

ଆଧୁନିକ ଇଂରାଜୀ ଶିକ୍ଷା ପ୍ରତି ସେ ଯେତିକି ପରିମାଣରେ ଆଗ୍ରହୀ ଥିଲେ, ସେତିକି ପରିମାଣରେ ମଧ୍ୟ ମମତାମୟ ଥିଲେ ଆର୍ଯ୍ୟ ପରମ୍ପରା ପ୍ରତି; ଆଦି ଭାଷା ସଂସ୍କୃତ ପ୍ରତି । ପରିଣାମତଃ ତାଙ୍କର ରାଜ୍ୟ ରାଜଧାନୀ ପାରଳାଖେମୁଣ୍ଡିଠାରେ ସ୍ଥାପନ କରିଥିଲେ ଏକ ସଂସ୍କୃତ ମହାବିଦ୍ୟାଳୟ । ତାର ଇତିହାସ ପାରଳା ମହାରାଜାଙ୍କ ବିଦ୍ୟୋତ୍ସାହ ମନୋଭାବ ହିଁ ପ୍ରକାଶ କରିଥାଏ ।



Ama Odisha pdf (aamaodisha@gmail.com)

ଗଞ୍ଜାମ ଖଲ୍ଲିକୋଟ ଅଞ୍ଚଳର ଜଣେ ବ୍ୟକ୍ତି ପଣ୍ଡିତ ଆର୍ତ୍ତତ୍ରାଣ ମିଶ୍ର ପେଟ ପୋଷିବାପାଇଁ ଧନ୍ଦା ଅନ୍ୱେଷଣ କରିକରି ପାରଳା ସହରରେ ପହଞ୍ଚିଲେ । ନିଜ ଭଡ଼ାଘରର ବାରଣ୍ଡାରେ ସଂସ୍କୃତ ଶିକ୍ଷାପ୍ରେମୀ ବାଳକଗଣଙ୍କୁ ଶିକ୍ଷାଦାନ ବ୍ୟତୀତ ପଣ୍ଡିତେ ଆଉ କ'ଣ ବା କରିପାରିଥାଆନ୍ତେ ! ତାଙ୍କରି ବାରଣ୍ଡାରେ ବସୁଥିବା ଛାତ୍ରଗଣଙ୍କ ମଧ୍ୟରେ ରାଜଗୁରୁ ପରିବାରର ଅନେକ ଛାତ୍ର ଥିଲେ । କ୍ରମେ ସେହି ଖବର ମହାରାଜାଙ୍କ କାନରେ ପଡ଼ିଥିଲା । ସେ ପଣ୍ଡିତ ମହାଶୟଙ୍କୁ ନଅରକୁ ଡକାଇ ନିଜ ରାଜ୍ୟରେ ସଂସ୍କୃତ ଭାଷାର ଉନ୍ନତି କଳ୍ପେ ଏକ ପାଠଶାଳା ସ୍ଥାପନ ସଂପର୍କରେ ବିଶେଷ ଆଲୋଚନା କରିଥିଲେ । ସେହି ଦାୟିତ୍ୱ ଗ୍ରହଣ କରିବା ନେଇ ମତାମତ ଚାହିଁଥିଲେ । ପଣ୍ଡିତ ମହାଶୟେ ସେଥିରେ ସମ୍ମତ ନହୁଅନ୍ତେ ବା କାହିଁକି ?

ସେଥିପାଇଁ ଗୋଟିଏ କୋଠାଘର ଯୋଗାଇ ଦିଆଯାଇଥିଲା । ହାଇସ୍କୁଲ୍ ନିକଟସ୍ଥ ମହିଳା ମହାବିଦ୍ୟାଳୟ ଚାଲୁଥିବା ଘରଟି ସେତେବେଳେ ସେଥିପାଇଁ ବ୍ୟବହୃତ ହୋଇଥିଲା । ସେଠାରେ ଅଧ୍ୟୟନ କରିବାକୁ ଆସୁଥିବା ଛାତ୍ରଗଣଙ୍କର ରହିବା ତଥା ଖାଇବାର ମଧ୍ୟ ସୁବନ୍ଦୋବସ୍ତ କରାଯାଇଥିଲା । ସେତେବେଳେ ସେଠିକାର ପ୍ରତି ଛାତ୍ରପାଇଁ ମାସକୁ ସାତ ମାଣ ଦୁଇ ଅଡ଼ା (ବର୍ତ୍ତମାନ ପ୍ରାୟ ୨୫ କେଜି) ଚାଉଳ ସହିତ ଭତ୍ତା ପ୍ରଦତ୍ତ ହେଉଥିଲା ପାଞ୍ଚଟଙ୍କା । ତତ୍‌କାଳୀନ ପରିସ୍ଥିତିରେ ଏହା କିଛି କମ୍ ନଥିଲା; ଛାତ୍ରମାନଙ୍କ ସଂସ୍କୃତ ଅଧ୍ୟୟନ ପାଇଁ ପ୍ରୋତ୍ସାହନ ଦୃଷ୍ଟିରୁ ଏହା ଥିଲା ବେଶ୍ ଏକ ଆକର୍ଷଣୀୟ ଯୋଜନା । ସମୟକ୍ରମେ ତାହା ଏକ ସଂସ୍କୃତ କଲେଜ ରୂପେ ପ୍ରତିଷ୍ଠିତ ହୋଇ ବାସ୍ତବରେ ଏକ ବିରାଟ ବୃକ୍ଷରେ ପରିଣତ ହୋଇଥିଲା । ସେହି ଶିକ୍ଷାନୁଷ୍ଠାନର ଜନ୍ମଦାତା ପଣ୍ଡିତ ମିଶ୍ରଙ୍କ ପାଇଁ କୌଣସି ଅବସରକାଳୀନ ବୟସ ନିର୍ଦ୍ଧାରିତ ହୋଇନଥିଲା । ଯେତେଦିନ ପର୍ଯ୍ୟନ୍ତ ସେ ସକ୍ଷମ ଥିଲେ ସେତେଦିନ ଥିଲା ତାଙ୍କର କାର୍ଯ୍ୟକାଳ । ପ୍ରାୟ ୭୫ ବର୍ଷ ବୟସରେ, ୧୯୪୩ ମସିହାରେ ଅଧ୍ୟାପନା କାର୍ଯ୍ୟରୁ ଅବ୍ୟାହତି ନେବାପାଇଁ ସେ ଆପଣାର ଅଭିପ୍ରାୟ ପ୍ରକାଶ କରିବା ପରେ ତାହାଙ୍କୁ ସସମ୍ମାନେ ବିଦାୟ ଦିଆଯାଇଥିଲେ ସୁଦ୍ଧା ଜୀବନର ଶେଷଦିନ ପର୍ଯ୍ୟନ୍ତ ମାସିକ ଦରମା ପାଇଥିଲେ ପାରଳା ରାଜକୋଷରୁ । ତେବେ ସମୟକ୍ରମେ ଅନ୍ୟାନ୍ୟ ଶିକ୍ଷକବୃନ୍ଦ ଯୋଗ ଦେଇଥିଲେ ଏହାର କଳେବର ବୃଦ୍ଧି ପାଇବା ସହିତ । ଛାତ୍ର ସଂଖ୍ୟା ଆଶାତୀତ ଭାବେ ବୃଦ୍ଧିପାଇଥିଲା । ସୁନାମ ମଧ୍ୟ ବଢ଼ିବଢ଼ି ଚାଲିଥିଲା ସେମିତି । ଛୋଟିଆ ପାଠଶାଳାରୁ କଲେଜରେ ପରିଣତ ହୋଇଥିଲା । ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟ ସହିତ ସହବନ୍ଧିତ ହୋଇଥିଲା । ସେଥିପାଇଁ ସ୍ୱତନ୍ତ୍ର କୋଠାଘର ନିର୍ମିତ ହୋଇଥିଲା । ସମୟାନ୍ତରରେ ଏହାର ଅଧ୍ୟକ୍ଷ ରୂପେ କାର୍ଯ୍ୟ ନିର୍ବାହ କରିଥିଲେ କାବ୍ୟତୀର୍ଥ ମଧୁସୂଦନ ମହାପାତ୍ର, ପଣ୍ଡିତ ଚନ୍ଦ୍ରଶେଖର ରଥ ପ୍ରମୁଖ । ସେଠାରେ କିଛିଦିନପାଇଁ ଅଧ୍ୟାପକ ହୋଇଥିଲେ ଭାଷାକୋଷ ପ୍ରଣେତା ପଣ୍ଡିତ ଗୋପୀନାଥ ନନ୍ଦ ତଥା ଖ୍ୟାତିସଂପନ୍ନ ପଣ୍ଡିତ ଅନନ୍ତ ତ୍ରିପାଠୀ ଶର୍ମା ଏବଂ



Ama Odisha pdf (aamaodisha@gmail.com)

ଏକଦା ସେଠିକାର ଛାତ୍ର ଥିବା ଡକ୍ଟର ବେଣୀମାଧବ ପାଢ଼ୀ ଏବଂ ଅନ୍ୟମାନେ । ପୁଣି ସେଠିକାର ଛାତ୍ରଗଣଙ୍କ ମଧ୍ୟରେ ଥିଲେ ଡକ୍ଟର ସତ୍ୟନାରାୟଣ ରାଜଗୁରୁ, ଅଧ୍ୟାପକ ଗୌରୀ କୁମାର ବ୍ରହ୍ମା, ପଣ୍ଡିତ ଯୁଗଳ କିଶୋର ପାଣିଗ୍ରାହୀ ପ୍ରମୁଖଙ୍କ ଭଳି ଆହୁରି ଅନେକ ଯେଉଁମାନେ ଆଜି ଓଡ଼ିଶାର ବିଶେଷ ଗଣ୍ୟମାନ୍ୟ ବ୍ୟକ୍ତି । ଆଜି ସୁଦ୍ଧା ସେହି ଅନୁଷ୍ଠାନ ସେଦିନର ସ୍ମୃତିକୁ ଜୀବନ୍ତ କରି ତୋଳିବାରେ ଏବଂ ମହାରାଜା କୃଷ୍ଣଚନ୍ଦ୍ରଙ୍କୁ ସଶ୍ରଦ୍ଧ ସ୍ମରଣ କରାଇବାରେ ମଧ୍ୟ ସକ୍ଷମ ।

ସଂପ୍ରତି ଦେଶର ମହିଳା ସଶକ୍ତୀକରଣର ଏକ ବିଶିଷ୍ଟ ଅଙ୍ଗ ସ୍ୱରୂପ ନାରୀଶିକ୍ଷାକୁ ଯଥେଷ୍ଟ ଗୁରୁତ୍ୱ ଆରୋପ କରାଯାଉଛି । କାରଣ ଆଜି ସୁଦ୍ଧା ମହିଳାସମାଜ ଶିକ୍ଷା କ୍ଷେତ୍ରରେ ପୁରୁଷମାନଙ୍କଠାରୁ ଅନେକ ଦୂରରେ । ପୁରୁଷପ୍ରଧାନ ଆମ ସମାଜରେ ଆଜି ମଧ୍ୟ ନାରୀ ଅବହେଳିତ । ସାମାଜିକ ଉନ୍ନତିପାଇଁ ନାରୀ ସମାଜ ଯଥାର୍ଥ ଭାବେ ଶିକ୍ଷିତ ହେବା ଆବଶ୍ୟକ ବୋଲି ଆଜକୁ ପ୍ରାୟ ଶହେ ବର୍ଷ ତଳେ ଅନୁଭବ କରିଥିଲେ ପାରଳା ଗଜପତି । ନାରୀ ଶିକ୍ଷାର ଉନ୍ନତି କଳ୍ପେ, ତାଙ୍କରି ରାଜ୍ୟରେ ପ୍ରଥମେ ସଫଳ ପ୍ରୟାସ ମଧ୍ୟ କରିଥିଲେ ।

ସେତେବେଳେ ଆମ ସମାଜରେ ରକ୍ଷଣଶୀଳ ମନୋଭାବ ଦେଶର ଛତ୍ରେଛତ୍ରେ ପ୍ରତିଫଳିତ ହେବା ଭଳି ଓଡ଼ିଶାରେ ତଥା ଗଜପତିଙ୍କ ପାରଳା ରାଜ୍ୟରେ ସୁଦ୍ଧା ପରିପୂର୍ଣ୍ଣ ଥିଲା । ଝିଅମାନେ ଆଠ ଦଶ ବର୍ଷର ହୋଇଗଲେ ଘରୁ ଆଉ ବାହାରକୁ ବାହାରିବାକୁ ପସନ୍ଦ କରୁନଥିଲେ । ବିଶେଷକରି ଆମ ସମାଜରେ ବ୍ରାହ୍ମଣ / କରଣ ଝିଅମାନଙ୍କ ସ୍ଥିତି ଥିଲା ସେହିଭଳି । ସେମାନଙ୍କ ବିଦ୍ୟା ଶିକ୍ଷା ପ୍ରତି ମାତାପିତାଗଣ କିଛିଟା ଅନୁକୂଳ ଭାବ ପୋଷଣ କରି ଘରୋଇ ଭାବରେ ଯାହାକିଛି ବ୍ୟବସ୍ଥା କରୁଥିଲେ । ସେଭଳି ପରିସ୍ଥିତି ଭିତରେ ପାରଳାଖେମୁଣ୍ଡି ସହରର ଜଣେ ବିଶିଷ୍ଟ ସଂଗୀତଜ୍ଞ ତଥା ମର୍ଦ୍ଦଳବାଦକ ଶ୍ରୀ ବୃନ୍ଦାବନ ଚନ୍ଦ୍ର ପାଣିଗ୍ରାହୀଙ୍କ କନ୍ୟାଙ୍କ ମୁଣ୍ଡରେ ଏକ ଉତ୍ତମ ଚିନ୍ତା ସବାର ହୋଇଥିଲା । ସେ ସହରର କିଛି ଝିଅପିଲାଙ୍କୁ ଆପଣା ଘରକୁ ଡକାଇ ଆଣି ସେମାନଙ୍କୁ ଯଥାସମ୍ଭବ ଶିକ୍ଷିତ କରାଇବାପାଇଁ ପ୍ରୟାସ କରିଥିଲେ ।

ସେଇ ସଂବାଦ ପହଞ୍ଚିଥିଲା ନାରୀ ଶିକ୍ଷାର ଉନ୍ନତିପାଇଁ ମନସ୍ଥ କରୁଥିବା ଗଜପତି କୃଷ୍ଣଚନ୍ଦ୍ରଙ୍କ ନିକଟରେ । ସଂସ୍କୃତ ଶିକ୍ଷାପାଇଁ ପଦକ୍ଷେପମାନ ନେବାଭଳି ମହାରାଜା ରାଜ୍ୟରେ ନାରୀଶିକ୍ଷାର ଉନ୍ନତି ପାଇଁ ମଧ୍ୟ ବ୍ୟବସ୍ଥା କରିଥିଲେ । ସେହିଭଳି ପାଠଶାଳାଟିଏ ପ୍ରତିଷ୍ଠା କରିବାପାଇଁ କୋଠାଘରଟିଏର ବ୍ୟବସ୍ଥା କରିଥିଲେ । ତାହା ଆଜିର ପୌର ମାଧ୍ୟମିକ ଉଚ୍ଚ ବିଦ୍ୟାଳୟ । ପ୍ରାଥମିକ କାଳରେ ସେଇଠି ଦୁଇଜଣ ବୃଦ୍ଧା ନିଯୁକ୍ତି ପାଇଥିଲେ । ସେମାନଙ୍କ କାମ ଥିଲା ଘରଘର ବୁଲି, ଝିଅମାନଙ୍କୁ ସାଙ୍ଗରେ ଆଣି ଠିକ୍ ସମୟରେ ସ୍କୁଲ୍‌ରେ ପହୁଞ୍ଚାଇବା ଏବଂ ପଢ଼ାପଢ଼ି ଶେଷ ହେବା ପରେ ସ୍କୁଲ୍‌ରୁ ନେଇ ନିଜ ନିଜ ଘରେ ଛାଡ଼ିଦେଇ ଆସିବା । ସେହିଭଳି ଭାବରେ କିଛିଦିନ ଚାଲିବା ପରେ ସେଠାରେ ଛାତ୍ରୀ ସଂଖ୍ୟା ବୃଦ୍ଧିପାଇଥିଲା ।



Ama Odisha pdf (aamaodisha@gmail.com)

ବିଶେଷଭାବେ ଆନନ୍ଦିତ ହୋଇଥିଲେ ମହାରାଜା ସେହି ଅଣଆନୁଷ୍ଠାନିକ ଶିକ୍ଷାକେନ୍ଦ୍ରରେ ବାଳିକାଗଣଙ୍କ ଆଗ୍ରହ ଲକ୍ଷ୍ୟକରି । ତାହାକୁ ବିଧିବଦ୍ଧ ଭାବେ ଏକ ସ୍କୁଲ୍ ରୂପେ ସ୍ଥାପନ କରାଯିବା ଉଦ୍ଦେଶ୍ୟରେ ଏକ ସ୍ୱତନ୍ତ୍ର କୋଠାଘର ନିର୍ମାଣ କରାଇଥିଲେ । ତାହା ହିଁ ଆଜିର ପାରଳାଖେମୁଣ୍ଡି ସହରସ୍ଥିତ ବାଳିକା ଉଚ୍ଚ ବିଦ୍ୟାଳୟ । ପ୍ରାଥମିକ ଅବସ୍ଥାରେ ସେଠାରେ ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ପାଠ୍ୟକ୍ରମ ପ୍ରଚଳନ କରାଯାଇ ବିଭିନ୍ନ ଆନୁଷ୍ଠାନିକ ପଦକ୍ଷେପମାନ ଗ୍ରହଣ କରାଯାଇଥିଲା । ତା'ପରେ କ୍ରମଶଃ ମାଟ୍ରିକ୍ ପର୍ଯ୍ୟନ୍ତ ପାଠ୍ୟକ୍ରମର ବ୍ୟବସ୍ଥା ହୋଇଥିଲା । ପ୍ରାଥମିକ ଅବସ୍ଥାରେ ବାଳିକାମାନଙ୍କୁ ଶିକ୍ଷାପ୍ରାପ୍ତି ପାଇଁ ଆକୃଷ୍ଟ କରାଇବା ଉଦ୍ଦେଶ୍ୟରେ ସ୍ୱତନ୍ତ୍ର ଉତ୍ସାହପ୍ରଦ ବ୍ୟବସ୍ଥାମାନ ଗ୍ରହଣ କରିଥିଲେ ପାରଳା ଗଜପତି ।

ପ୍ରତିବର୍ଷର ବାର୍ଷିକ ପରୀକ୍ଷାଫଳ ପ୍ରକାଶପାଇବା ପରେ ବିଭିନ୍ନ ପୁରସ୍କାରମାନ ପ୍ରଦାନ କରାଯାଉଥିଲା । ପ୍ରତି ଶ୍ରେଣୀରେ ପ୍ରଥମ ହୋଇ ଉତ୍ତୀର୍ଣ୍ଣ ହୋଇଥିବା ଛାତ୍ରୀ ଜଣକ ପାଉଥିଲେ କାନରେ ପିନ୍ଧାଯାଉଥିବା ସୁନାର ଅଳଙ୍କାର 'ସେବତୀ ଫୁଲ' । ତାହାର ଓଜନ ଥିଲା ତିନିଅଣା (ଆପାତତଃ ଭରିଏ ସୁନାର ଓଜନ ୧୬ ଅଣା ସହିତ ସମାନ) । ସେହିଭଳି ଦ୍ୱିତୀୟ ହୋଇଥିବା ଛାତ୍ରୀଙ୍କପାଇଁ ପ୍ରୋତ୍ସାହିତ ଦ୍ରବ୍ୟ ଥିଲା ଶାଢ଼ିଟିଏ । ତତ୍କାଳୀନ ପରିବେଶରେ ଝିଅପିଲାମାନେ ଟିକିଏ ବଡ଼ ହୋଇଗଲା ପରେ- ପ୍ରାୟ ଆଠ ଦଶବର୍ଷ ବେଳରୁ ଅର୍ଥାତ୍ ସେଇ କୁମାରୀ ବୟସରୁ ହିଁ ଶାଢ଼ିପିନ୍ଧିବା ଆରମ୍ଭ କରୁଥିଲେ । ତେଣୁ ସାମାଜିକ ବ୍ୟବସ୍ଥା ସହିତ ତାଳ ଦେଇ ସେଇ ପ୍ରକାରର ବିବେଚନା ଉତ୍ତମ ବୋଲି ମନେ ହୋଇଥିଲା । ପୁଣି ପ୍ରତ୍ୟେକ ଶ୍ରେଣୀରେ ତୃତୀୟ ହୋଇ ପାସ୍ କରିଥିବା ଛାତ୍ରୀଗଣଙ୍କ ପାଇଁ ମଧ୍ୟ ଉଦ୍ଦିଷ୍ଟ ସେହିଭଳି କିଛିକିଛି ପରିଧାନ ସାମଗ୍ରୀ- ସ୍କର୍ଟ୍, ବ୍ଲାଉଜ୍ ଇତ୍ୟାଦି । ମହାରାଜାଙ୍କ ସେଦିନର ସେହି ଉଦ୍ୟମ ବେଶ୍ ଫଳପ୍ରଦ ମନେହୋଇଥିଲା । ଆପଣା ରାଜ୍ୟରେ ଶିକ୍ଷାର ବିସ୍ତାର ତଥା ସଂସ୍କାରପାଇଁ ମହାରାଜା କୃଷ୍ଣଚନ୍ଦ୍ରଙ୍କ ମନୋବୃତ୍ତି ଏସବୁଥିରୁ ବେଶ୍ କଳନା କରାଯାଇପାରେ ।

ଇଂରେଜ ସରକାର ସିନା ପାରଳା ରାଜ୍ୟକୁ ଏକ ଜମିଦାରି ରୂପେ ଗ୍ରହଣ କରିଥିଲେ, ହେଲେ ଖେମୁଣ୍ଡି ରାଜ୍ୟର ବାସିନ୍ଦାମାନଙ୍କ ହୃଦୟର ବାସ୍ତବିକ ସମ୍ରାଟ ଥିଲେ- ସେ, ସେମାନଙ୍କପାଇଁ ଯଥାର୍ଥରେ ଥିଲେ ଗଜପତି । ଏବଂ ଅନୁରୂପ ଭାବେ ପ୍ରଜାଗଣ ମଧ୍ୟ ଥିଲେ ରାଜାଙ୍କର ସତେଯେମିତି ସନ୍ତାନ । ତେଣୁ ସେମାନଙ୍କର ସର୍ବାଙ୍ଗୀନ ଉନ୍ନତି ହିଁ ଥିଲା ରାଜାଙ୍କର କାମ୍ୟ । ସେମାନଙ୍କର ଉନ୍ନତିରେ ରାଜ୍ୟର ଉନ୍ନତି । ସାମାଜିକ, ନୈତିକ, ଆର୍ଥିକ ସବୁ କ୍ଷେତ୍ରରେ ଉନ୍ନତି ଆବଶ୍ୟକ ।

ରାଜ୍ୟରେ ଆର୍ଥିକ ପ୍ରଗତିପାଇଁ କୃଷି ଓ କୃଷକଙ୍କ ଉନ୍ନତି ସର୍ବାଦୌ ଆବଶ୍ୟକ ବୋଲି ମହାରାଜାଙ୍କ ଆନ୍ତରିକ ଅନୁଭବ ଥିଲା । ତେଣୁ ରାଜ୍ୟର ଅଧିକାଂଶ ଅଶିକ୍ଷିତ ପ୍ରଜାଙ୍କୁ ପରାମର୍ଶ ଦେଇ କୃଷିର ଉନ୍ନତିପାଇଁ ଚେଷ୍ଟା କରିବା କିମ୍ବା ସେଇ ଉପଦେଶଗୁଡ଼ିକୁ ବାସ୍ତବ କ୍ଷେତ୍ରରେ



Ama Odisha pdf (aamaodisha@gmail.com)

ପ୍ରୟୋଗ କରି ତାହାର ପରିଣାମ ସହ ରାଜ୍ୟର କୃଷକଗଣଙ୍କୁ ଅଙ୍ଗୀଭୂତ କରାଇବା ମଧ୍ୟରୁ ଦ୍ୱିତୀୟଟି ହିଁ ଅଧିକ ଫଳପ୍ରଦ ହେବ ବୋଲି ବିବେଚନା କରିଥିଲେ ସେ । ତେଣୁ ଚାଷ କ୍ଷେତ୍ରରେ କୌଣସି ନୂତନ ପଦ୍ଧତିର ପ୍ରଚଳନ କରାଇବା ପୂର୍ବରୁ ପ୍ରଥମେ ଆପଣାର କୃଷି କ୍ଷେତ୍ରରେ ତାହାର ପ୍ରୟୋଗାତ୍ମକ ଦିଗ୍‌ଦର୍ଶନ ଦେଉଥିଲେ ମହାରାଜା । ତା'ପରେ ତାହାର ପରିଣାମ ପ୍ରଜାମାନଙ୍କୁ ଦେଖାଇ ଦେଉଥିଲେ ପ୍ରତ୍ୟକ୍ଷ ଭାବେ ଏବଂ ସେହି ପ୍ରଣାଳୀ / ଚାଷକୁ ଆଦରେଇ ନେବାପାଇଁ କୃଷକଗଣଙ୍କୁ ପ୍ରରୋଚିତ କରୁଥିଲେ ।

ସେଇ ଦୃଷ୍ଟିରୁ ଦେଖିଲେ ବାସ୍ତବରେ ସେ ଥିଲେ ଆଦର୍ଶ କୃଷକ ଏବଂ ଅଭିଜ୍ଞ ମଧ୍ୟ । ଜଣେ କୃଷକର ଭାଷାକୁ ଆପଣେଇ ନେବାରେ ସେ ଗର୍ବ ଅନୁଭବ କରୁଥିଲେ । କୃଷକଗଣଙ୍କ ସହ ଆତ୍ମୀୟ ଭାବ ସ୍ଥାପନ ଯୋଗୁଁ ସେ ସମସ୍ତଙ୍କ ନିକଟରେ ବେଶ୍ ଗ୍ରହଣୀୟ ହୋଇପାରିଥିଲେ ଏବଂ ପରିଣାମତଃ ଦେଶର ଅନ୍ୟାନ୍ୟ ଜମିଦାରିଗୁଡ଼ିକ ତୁଳନାରେ ପାରଳାଖେମୁଣ୍ଡିର ରୟତଗଣ ଆର୍ଥିକ ଦୃଷ୍ଟିରୁ ଉନ୍ନତ ଜୀବନଯାପନରେ ସମର୍ଥ ଥିଲେ । ସବୁବେଳେ ମହାରାଜାଙ୍କ ମତ ଥିଲା କୃଷିକ୍ଷେତ୍ରରେ କୃଷକର ପାଦପଡ଼ିବା ହିଁ ସର୍ବୋତ୍ତମ ସାରର ପ୍ରୟୋଗ । ତେଣୁ ଭୂମ୍ୟଧିକାରୀମାନେ କେବଳ ଘରେ ବସି ମାଲିକାନା ଜାହିର କଲେ ବାସ୍ତବରେ କୃଷିର ଉନ୍ନତି ହୋଇ ପାରିବ ନାହିଁ । ଯେତେବଡ଼ ଭୂମ୍ୟଧିକାରୀ ହୁଅନ୍ତୁ ପଛକେ, କୃଷିକ୍ଷେତ୍ର ବାରମ୍ବାର ପ୍ରଦର୍ଶନ କରିବା ଉଚିତ । ଆପଣାର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ବିଭିନ୍ନ ଚାଷ ହେବା ଉଚିତ । ପରିଣାମତଃ ନିଜେ ଚାଷଜମିର ବିଭିନ୍ନ ସୁବିଧା ଅସୁବିଧା ସଂପର୍କରେ ଅବଗତ ହେବା ସଂଗେସଂଗେ ଚାଷବାସର ବିଭିନ୍ନ ପର୍ଯ୍ୟାୟର କାର୍ଯ୍ୟ ତଦାରଖ କରିବା ଆବଶ୍ୟକ । ସେଇ ଆବଶ୍ୟକତାକୁ ନିଜ ରାଜ୍ୟର କୃଷକଗଣଙ୍କୁ ଯଥାର୍ଥରେ ଉପଲବ୍ଧି କରାଇବାରେ ସଫଳ ପ୍ରଚେଷ୍ଟା ମଧ୍ୟ କରୁଥିଲେ ।

ଉନ୍ନତ କୃଷିଲାଗି ରାସାୟନିକ ସାରର ପ୍ରୟୋଗ ତଥା ଉନ୍ନତ ଧରଣର ବିହନର ଉପଯୋଗିତା ସଂପର୍କରେ ରାଜ୍ୟବାସୀଙ୍କୁ ବୁଝାଇବା ପରିବର୍ତ୍ତେ ପ୍ରଥମେ ଆପଣା କ୍ଷେତ୍ରରେ ସେସବୁର ପ୍ରୟୋଗ କରି ପରୀକ୍ଷାମୂଳକ ଭାବେ ଦେଖାଇ ଦେଉଥିଲେ । ତା'ପରେ ସେସବୁର ସେହି ଭାବରେ ଉପଯୋଗ କରିବାଲାଗି ଚାଷୀମାନଙ୍କୁ ପରାମର୍ଶ ଦେଉଥିଲେ । ପରିଣାମତଃ ସେଇସବୁ ପଦ୍ଧତି ରାଜ୍ୟରେ ବେଶ୍ ଆଦୃତ ହେଉଥିଲା ।

ପାରଳାଖେମୁଣ୍ଡିରୁ ଗୁମ୍ମା ଯିବା ରାସ୍ତାରେ ଏବଂ ରାଜଧାନୀ ସହରଠାରୁ ଅନତିଦୂରରେ ମହାରାଜାଙ୍କର ଏକ ବିରାଟ କୃଷି ଫର୍ମ- 'ହୋମ୍‌ଫାର୍ମ୍' ରହିଥିଲା । ଯେତେସବୁ ଆଧୁନିକ ଚାଷପ୍ରଣାଳୀର ପ୍ରୟୋଗ, ରାସାୟନିକ ସାର / କୀଟନାଶକ ଔଷଧର ବ୍ୟବହାର, ନୂତନ ଫସଲ ଆମଦାନୀର ନମୁନା ସବୁ ସେଇଠି ଆରମ୍ଭ ହେଉଥିଲା । ସେଠାକୁ ଯାଇ ରାଜ୍ୟର କୃଷକଗଣ ସେଇ ସବୁର ପରୀକ୍ଷା ନିରୀକ୍ଷା ତଥା ତାର ଫଳାଫଳକୁ ଅନୁଶୀଳନ କରୁଥିଲେ ପ୍ରଥମେ । ସେଠାରେ ବିଭିନ୍ନ ଫୁଲ ଓ ଫଳ ଚାଷରୁ ଆରମ୍ଭ କରି ଧାନ, ମାଣ୍ଡିଆ, ଆଖୁ ଇତ୍ୟାଦି ଫସଲ



Ama Odisha pdf (aamaodisha@gmail.com)

ହେଉଥିଲା ମହାରାଜାଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ । ପ୍ରତିଦିନ ମହାରାଜା ପ୍ରାୟ ଦୁଇ ବେଳା ସେଠାକୁ ଯାଉଥିଲେ ପାରଳାରେ ରହିବା ଅବସରରେ । ଅନେକ ସମୟରେ ନିଜେ ସେ ଫୁଲଗଛଗୁଡ଼ିକରେ ପାଣିଦେବାଠାରୁ ଆରମ୍ଭ କରି ଘାସ ବାଛିବା କାର୍ଯ୍ୟ ମଧ୍ୟ କରୁଥିଲେ । ସେଠାରୁ ଫେରିବାବେଳେ କଅଁଳ ଛନଛନିଆ ଘାସ ଆପଣା ଦାମୀ କାରର୍ ସାରା ପଛସିଟ୍‌ରେ ବୋଝେଇ କରି ଫେରିଆସୁଥିଲେ ରାଜ ନଅରକୁ । ରାଜ ନଅର ଭିତରେ ରହୁଥିବା ଗୋରୁ ଗାଈଙ୍କ ପାଇଁ ସେଇ ଘାସର ପ୍ରୟୋଜନ ।

ଗୋପାଳନ ମହାରାଜାଙ୍କର ଥିଲା ଅନ୍ୟ ଏକ ସଉକ । ନିଜ ଗୋଶାଳାରେ କେବଳ ଦେଶୀୟ ଗୋରୁଗାଈଙ୍କୁ ନରଖି ବିଭିନ୍ନ ଉନ୍ନତ କିସମର ଗାଈଗୋରୁଙ୍କୁ ପାଳନ କରୁଥିଲେ । ସେଥିରେ ମହାରାଜାଙ୍କର ଦୁଇଟି ଉଦ୍ଦେଶ୍ୟ ଥିଲା– ପ୍ରଥମ ହେଲା ରାଜ୍ୟରେ ପ୍ରଚୁର ପରିମାଣରେ ଦୁଗ୍ଧ ଓ ଦୁଗ୍ଧଜାତୀୟ ଦ୍ରବ୍ୟର ଉପଲ୍‌ବ୍‌ଧି ଏବଂ ଦ୍ୱିତୀୟ– ଗୋଶାଳାରୁ ଉପଲବ୍‌ଧ ଗୋବର ଇତ୍ୟାଦି ଖତର କୃଷି କ୍ଷେତ୍ରରେ ପ୍ରୟୋଗ । କମ୍ପୋଷ୍ଟ ଖତ ତୟାର କରିବାପାଇଁ ଯେଉଁ ପନ୍ଥା ସହଜରେ ରାଜ୍ୟର ଗ୍ରାମ୍ୟ କୃଷକଗଣ ଅନୁକରଣ କରିପାରିବେ ସେଭଳି ବ୍ୟବସ୍ଥା ପ୍ରଥମେ ଗ୍ରହଣ କରୁଥିଲେ । ବଡ଼ବଡ଼ ଗଛର ଛାଇ ତଳେ ପ୍ରାୟ ତିନି ଫୁଟ ଗଭୀରର ଗାତଟିଏ ଖୋଳି ସେଥିରେ ଗୁହାଳରୁ ବାହାରୁଥିବା ଗୋବର, ଗୋମୂତ୍ର ମିଶ୍ରିତ ପାଳ, ନଡ଼ା, କୁଟା ଇତ୍ୟାଦି ମଇଳା ସେଇ ଖାତରେ ଦୈନିକ ଭର୍ତ୍ତି ହେଉଥିଲା । ସେଥିରେ କିଛି ସୁପରଫସ୍‌ଫେଟ୍ ମିଶାଇ ଦେଇ କିଛି ଦିନ ଛାଡ଼ିଦିଆଯାଉଥିଲା । ତା'ପରେ ତାହାକୁ ବାହାର କରିଆଣି ଚାଷ ଜମିରେ ବ୍ୟବହୃତ ହେଉଥିଲା । ପରିଣାମତଃ ଫସଲ ଅମଳରେ ବୃଦ୍ଧି ପରିଲକ୍ଷିତ ହେଉଥିଲା ଜମି ଉର୍ବର ହେବା କାରଣରୁ । ମହାରାଜାଙ୍କ ସେହି ପ୍ରଣାଳୀ ରାଜ୍ୟର କୃଷକମାନଙ୍କଦ୍ୱାରା ବେଶ୍ ଆଦୃତ ହେବା ସଙ୍ଗେ ରାଜ୍ୟର ଗ୍ରାମେ ଗ୍ରାମେ ବହୁଳ ଭାବରେ ଅନୁସୃତ ହୋଇଥିଲା । ଅନେକ ସମୟରେ ଉନ୍ନତ ଧରଣର ଗାଈଗୋରୁଗୁଡ଼ିକୁ ରାଜ୍ୟର ପ୍ରଜାଙ୍କୁ ଉପହାର ତଥା ବିକ୍ରୀ ମାଧ୍ୟମରେ ଦେବା ଫଳରେ ଗାଆଁଗଣ୍ଡାରେ ଉନ୍ନତ ଜାତିର ଗାଈଗୋରୁଙ୍କ ପାଇଁ ଆଦର ବୃଦ୍ଧି ପାଉଥିଲା । ଦେଶୀୟ ପଶୁପାଳନ ସଂଗେସଂଗେ ଉନ୍ନତ ଧରଣର ପଶୁଙ୍କୁ ବି ପାଳନ କରି କୃଷକଗଣ ବେଶ୍ ଲାଭବାନ ହୋଇପାରୁଥିଲେ ।

ଆପଣା ନଅର ଗୋଶାଳାରେ ଏକ ସମୟରେ ପ୍ରାୟ ପଚାଶରୁ ଷାଠିଏ ଗୋରୁ ରହୁଥିବାବେଳେ 'ହୋମ୍‌ଫାର୍ମ୍'ରେ ମଧ୍ୟ ଏକ ବିରାଟ ଗୋଶାଳା ରହିଥିଲା । ସେଇ ଗୋରୁଗାଈଙ୍କ ଉତ୍ତମ ରକ୍ଷଣାବେକ୍ଷଣ ପାଇଁ ବିଶେଷ ତତ୍ପର ଥିଲେ ମହାରାଜା । ସେମାନଙ୍କ ସ୍ୱାସ୍ଥ୍ୟ-ତତ୍ତ୍ୱାବଧାନପାଇଁ ଜଣେ ଅଭିଜ୍ଞ ପଶୁଡାକ୍ତରଙ୍କୁ ନିଯୁକ୍ତି ଦିଆଯାଇଥିଲା । ଏକ ଚିକିତ୍ସାଳୟର ଆୟୋଜନ ମଧ୍ୟ ହୋଇଥିଲା । ସେଇ ପଶୁଡାକ୍ତରଖାନାର ଦ୍ୱାର ରାଜ୍ୟର ସମସ୍ତଙ୍କ ଲାଗି ସର୍ବଦା ଉନ୍ମୁକ୍ତ ରହିଥିଲା ।



Ama Odisha pdf (aamaodisha@gmail.com)

ରାଜ୍ୟରେ କୃଷିର ବିକାଶ ପାଇଁ ମହାରାଜାଙ୍କ ଦିଗ୍‌ଦର୍ଶନ ବାସ୍ତବରେ ବିଶେଷ ଉଲ୍ଲେଖଯୋଗ୍ୟ । ପରୀକ୍ଷାମୂଳକ ଭାବେ ସେ ପ୍ରଥମେ କୋଏମ୍ବାଟୁର୍ ଜାତୀୟ ଆଖୁଚାଷ ହୋମ୍‌ଫାର୍ମ୍‌ରେ ଆରମ୍ଭ କରିଥିଲେ । ତାହା ବିଶେଷ ଲାଭଦାୟକ ପ୍ରମାଣିତ ହେବା ପରେ ପରେ ରାଜ୍ୟର ଚାଷୀଗଣଙ୍କୁ ତାହା ବ୍ୟବହାର କରିବାପାଇଁ ଉତ୍ସାହିତ କରିଥିଲେ । ଆପଣା କୃଷିଫାର୍ମରୁ ରାଜ୍ୟବାସୀଙ୍କ ପାଇଁ ପ୍ରଥମେ ବିହନ ଯୋଗାଣର ବ୍ୟବସ୍ଥା କରାଇଥିଲେ । ତାଙ୍କ ଦ୍ୱାରା ଆଖୁରୁ ଗୁଡ଼ ତିଆରି ପଦ୍ଧତି, ଆଖୁଶାଳର ଚୁଲା ନିର୍ମାଣ, ଆଖୁରୁ ରସ ବାହାର କରିବାପାଇଁ ପେଡ଼ିବା ବ୍ୟବସ୍ଥା ତଥା ଗୁଡ଼ ସାଇତା ଢଙ୍ଗ ସାରା ରାଜ୍ୟରେ ବେଶ୍ ଜନପ୍ରିୟତା ହାସଲ କରିଥିଲା । ସେଇ ସବୁକୁ ଲୋକେ ଦେଖି ଅନୁକରଣ କରିଥିଲେ । ଯେଉଁସବୁ ଶୁଖିଲା ଜମିରେ କୂଅ ଖୋଳାଯାଇପାରୁଥିଲା, ମହାରାଜାଙ୍କ କରୁଣା ଲାଭ କରି ତାଙ୍କରି ପ୍ରଜାଗଣ ସେଇସବୁ ସ୍ଥାନରେ ଲେମ୍ବୁଜାତୀୟ ଫଳବଗିଚା ଛିଡ଼ା କରାଇଥିଲେ ।

ଜମିଦାରିର ସମତଳ ଅଞ୍ଚଳଗୁଡ଼ିକରେ ଧାନ, ମାଣ୍ଡିଆ ପ୍ରଭୃତି ମୁଖ୍ୟ ଫସଲ ଉତ୍ପାଦିତ ହେଉଥିବା ବେଳେ ପାହାଡ଼ିଆ ଅଞ୍ଚଳଗୁଡ଼ିକରେ ଯବ, ମକା ଇତ୍ୟାଦି ଚାଷ ହେଉଥିଲା । ମହାରାଜା କୃଷ୍ଣଚନ୍ଦ୍ରଙ୍କ ପ୍ରେରଣା ଲାଭକରି ରାଜ୍ୟର କୃଷକମାନେ ଆଳୁ, ବିଭିନ୍ନ ପ୍ରକାରର କୋବି, ମୂଳା ତଥା ଉନ୍ନତ କିସମର ମକା ଚାଷ କରି ବେଶ୍ ଉପକୃତ ହେଉଥିଲେ । ମୁଖ୍ୟତଃ ସେସବୁ କରାଯିବା ଫଳରେ ସାରା ରାଜ୍ୟର ପ୍ରଜାଗଣ ପନିପରିବାର ଅଭାବ ଅନୁଭବ କରିପାରୁ ନଥିଲେ ।

ରାଜ୍ୟର ବିଭିନ୍ନ ଫସଲ ଉତ୍ପାଦନପାଇଁ ବିଶେଷ ସହାୟକ ହେଉଥିଲା ବିଭିନ୍ନ ଜଳସେଚନ ଯୋଜନା । ପାରମ୍ପରିକ ଭାବରେ ରାଜ୍ୟରେ କୃଷିପାଇଁ ଜଳସେଚନ ଉପରେ ବିଶେଷ ଗୁରୁତ୍ୱ ଆରୋପ କରିଥିଲେ ପାରଳାର ରାଜନ୍ୟବର୍ଗ । ଏହାହିଁ ତ ରାଜଧର୍ମର ନମୁନା । ପ୍ରାୟ ଦୁଇଶହ ଏକର ଜମି ଜଳସେଚିତ ହୋଇପାରିବା ଭଳି ଯୋଜନା ବୃହତ୍ ଯୋଜନା ରୂପେ ପରିଗଣିତ ହେଉଥିଲା । ଗଜପତି କୃଷ୍ଣଚନ୍ଦ୍ରଙ୍କ ଅମଳରେ ରାଜ୍ୟରେ ସେହିଭଳି ୩୬ଟି ବୃହତ୍ ଯୋଜନା କାର୍ଯ୍ୟକ୍ଷମ ହେବାବେଳେ ଅନ୍ୟ ୪୭୯ଟି କ୍ଷୁଦ୍ର ଜଳସେଚନ ଯୋଜନା କାର୍ଯ୍ୟକାରୀ ହେଉଥିଲା ସମଗ୍ର ରାଜ୍ୟରେ । ସେହି ସମସ୍ତ ୫୧୫ଟି ପ୍ରକଳ୍ପ କାର୍ଯ୍ୟକ୍ଷମ ହୋଇ ପ୍ରାୟ ୨୭,୪୩୮ ଏକର ଜମିରେ ଜଳସେଚନ ସୁବିଧା ହୋଇପାରିଥିବାରୁ ବର୍ଷସାରା ଜମିଗୁଡ଼ିକ ଫସଲ ଉତ୍ପାଦନ ପାଇଁ ଯୋଗ୍ୟ ଥିଲା । ତାଙ୍କର ଅମଳରେ ଗଜପତି ମହାରାଜା ଆଉ ଦୁଇଟି ବୃହତ୍ ଜଳପ୍ରକଳ୍ପର ସଫଳ ରୂପାୟନ କରିଥିଲେ । ସେଥିରୁ ଗୋଟିକର ନାମକରଣ ହୋଇଥିଲା ନିଜ ନାମାନୁସାରେ କୃଷ୍ଣଚନ୍ଦ୍ର ସାଗର ଏବଂ ଅନ୍ୟଟି ମହାରାଣୀଙ୍କ ନାମାନୁଯାୟୀ ହୋଇଥିଲା ନଳିନୀକୃଷ୍ଣ ସାଗର । ତାହାକୁ ଲୋକେ 'ବାଗା' ସାଗର ବୋଲି କହୁଥିଲେ । ରାଜ୍ୟବାସୀଙ୍କ ପାଇଁ ଉଦ୍ଦିଷ୍ଟ ସେହି ଜନହିତକର ଜଳସେଚନ ପ୍ରଣାଳୀଗୁଡ଼ିକର ରକ୍ଷଣାବେକ୍ଷଣପାଇଁ ଜଣେ ବିଶେଷଜ୍ଞ ପ୍ରବାସୀ ଇଂଜିନିୟରଙ୍କୁ ନିଯୁକ୍ତ କରିଥିଲେ ମହାରାଜା । ସେ ବିଶେଷ କରି କୃଷି ଉତ୍ପାଦନ ସଂପର୍କୀୟ ଦୀର୍ଘ ମିଆଦୀ ଯୋଜନାଗୁଡ଼ିକୁ ଅଧିକ ଗୁରୁତ୍ୱ ଦେଉଥିଲେ ।



Ama Odisha pdf (aamaodisha@gmail.com)

କୃଷି ପଶୁପାଳନ କ୍ଷେତ୍ରରେ ମହାରାଜା କୃଷ୍ଣଚନ୍ଦ୍ରଙ୍କ ସମୁନ୍ନତ ଚିନ୍ତାଧାରା ଏବଂ କାର୍ଯ୍ୟପ୍ରଣାଳୀ ଯଥା ସମୟରେ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିପାରିଥିଲା । ସମ୍ଭବତଃ ସେହି କାରଣରୁ କୋଏମ୍ବାଟୁର୍ ସରକାରୀ କୃଷି କଲେଜର ଜଣେ ଉପଦେଷ୍ଟା ତଥା ପରିଦର୍ଶକ ହିସାବରେ ସେ ଗୃହୀତ ହୋଇଥିଲେ । ପୁଣି ଦିଲ୍ଲୀ ସ୍ଥିତ ଭାରତୀୟ ରିସର୍ଚ୍ଚ ଫଣ୍ଡ୍ ପରିଷଦର ପରିଚାଳନା ସମିତି ଏବଂ ବୈଜ୍ଞାନିକ ଉପଦେଷ୍ଟା କମିଟିର ସଭ୍ୟ ରୂପେ ମଧ୍ୟ ମନୋନୀତ ହୋଇଥିଲେ । ସବୁଠାରୁ ଅଧିକ ଉଲ୍ଲେଖଯୋଗ୍ୟ ଥିଲା, ୧୯୨୭ ମସିହାରେ ଗଠିତ ଭାରତୀୟ କୃଷି କମିଶନ୍‌ରେ ତାହାଙ୍କୁ ସଭ୍ୟ ମନୋନୟନ । ଭାରତର କୃଷିର ଉନ୍ନତିକଳ୍ପେ ଉପଯୁକ୍ତ ପରାମର୍ଶ ଦେବାପାଇଁ ଗଠିତ, ବିଶେଷ ସମ୍ମାନଜନକ, ରୟାଲ୍ କୃଷି କମିଶନ୍‌ରେ ଗଜପତି ମହାରାଜାଙ୍କୁ ଜଣେ ସଭ୍ୟ ଭାବରେ ଗ୍ରହଣ କରିଥିଲେ ସରକାର । ଉକ୍ତ ରାଜକୀୟ କୃଷି କମିଶନ୍‌ରେ ସେ ଥିଲେ ଜଣେ ମାତ୍ର ଭାରତୀୟ ସଭ୍ୟ । ସେହି କମିଟିର ଅଧ୍ୟକ୍ଷ ଥିଲେ ଲର୍ଡ୍ ଲିନ୍ ଲିଥ୍ ଗୋ ।

କୃଷି କମିଶନ୍‌ରେ ଯୋଗଦେଇ ସାରା ଭାରତର ବିଭିନ୍ନ ପ୍ରାନ୍ତରରେ ଉପୁଜୁଥିବା କୃଷି ସମସ୍ୟାଗୁଡ଼ିକର ଅବଗତ ହୋଇପାରିଥିଲେ ସେ । ଜନଗଣଙ୍କ ରକ୍ଷଣଶୀଳ ମନୋଭାବ ଭଳି ଅନେକ ସମସ୍ୟା ଆପଣା ଜମିଦାରିର କୃଷକଙ୍କ ମନୋଭାବର ପ୍ରାୟ ଅନୁରୂପ ଥିଲା । ଉନ୍ନତ ପ୍ରଣାଳୀରେ ଚାଷ, ସାର ପ୍ରୟୋଗ ଇତ୍ୟାଦି ପାଇଁ ବିଶେଷ ଭାବରେ କୁଣ୍ଠିତ ଥିଲେ ଅନେକ ଅଞ୍ଚଳର ଚାଷୀଗଣ । ତତ୍‌ସହିତ ବିଭିନ୍ନ ଅଞ୍ଚଳରେ ବିଭିନ୍ନ ପ୍ରକାରର ଚାଷ ପ୍ରଣାଳୀ ତଥା ଆହୁରି କିଛି ଅଞ୍ଚଳରେ ଉତ୍ପାଦିତ ହେଉଥିବା ଅନେକ ଉନ୍ନତ କିସମର ଫସଲ ସଂସ୍ପର୍ଶରେ ଆସିଥିଲେ ମହାରାଜା । ସେହି ବାବଦରେ ଯଥାର୍ଥରେ ଅନେକ ଅଭିଜ୍ଞତା ହାସଲ କରିଥିଲେ ସେ । ସେହି ଗସ୍ତ କାଳରେ ବିଭିନ୍ନ ଅଞ୍ଚଳରୁ କେତେକ ଉନ୍ନତ କିସମର ବିହନ ସାଙ୍ଗରେ ଆଣି ହୋମଫାର୍ମରେ ବ୍ୟବହାର କରି, ତାହାର ଉତ୍ତରୋତ୍ତର ଉନ୍ନତି କରାଇଥିଲେ ଆପଣା ରାଜ୍ୟର ଚାଷୀଗଣଙ୍କୁ ଉପକୃତ କରାଇବାପାଇଁ । ପୁଣି ଅନେକ ଅଞ୍ଚଳରେ ଚାଷୀଗଣ ଆପଣା ରାଜ୍ୟର ଅନୁରୂପ ମନୋଭାବ ପୋଷଣ କରୁଥିବା ଲକ୍ଷ୍ୟକରି ରାସାୟନିକ ସାର, କୀଟନାଶକ ଔଷଧ ତଥା ବିଭିନ୍ନ ବୈଜ୍ଞାନିକ ଉଦ୍‌ଭାବନକୁ ଯଥାର୍ଥ ଭାବରେ କୃଷିକ୍ଷେତ୍ରରେ ଉପଯୋଗ କରିବାପାଇଁ ସେମାନଙ୍କର ମନୋଭାବ ପରିବର୍ତ୍ତନ କରାଯାଇ ଅନୁକୂଳ ପରିବେଶ କିପରି ସୃଷ୍ଟି କରାଯାଇପାରିବ ସେଥିପାଇଁ ଅନେକ ସୁଚିନ୍ତିତ ପରାମର୍ଶ ଦେଇଥିଲେ କମିଟିକୁ । ସେଥିରୁ ଅଧିକାଂଶ ପରାମର୍ଶକୁ କମିଟି ମଧ୍ୟ ଗ୍ରହଣ କରିଥିଲେ । ସେଭଳି ପରାମର୍ଶଗୁଡ଼ିକର ପ୍ରଚ୍ଛଦରେ ଥିଲା ଆପଣା ରାଜ୍ୟରେ କୃଷକଙ୍କ ମନୋଭାବକୁ ପରିବର୍ତ୍ତନ ଦିଗରେ ମହାରାଜାଙ୍କର ପ୍ରତ୍ୟକ୍ଷ ଅନୁଭୂତି । ବାସ୍ତବରେ ସେହି ଅନୁଭୂତିମୂଳକ ପରାମର୍ଶଗୁଡ଼ିକ ଦେଶରେ କୃଷି ଉତ୍ପାଦନ ବୃଦ୍ଧି କରାଇବାପାଇଁ ମଧ୍ୟ ବେଶ୍ ଉପଯୁକ୍ତ ମନେ ହୋଇଥିଲା ।



Ama Odisha pdf (aamaodisha@gmail.com)



ରୟାଲ୍ କୃଷି କମିଶନ୍‌ରେ ସଭ୍ୟ



Ama Odisha pdf (aamaodisha@gmail.com)

ସେଇ ଅବସରରେ, ରାଜକୀୟ କୃଷି କମିଶନ୍‌ର ସଦସ୍ୟ ରୂପେ ଦେଶସାରା ଗସ୍ତକରି ସରକାରଙ୍କଠାରୁ ଗସ୍ତଖର୍ଚ୍ଚ ବାବଦରେ ପ୍ରାୟ ଏକ ଲକ୍ଷ ଏକ ହଜାର ଟଙ୍କା ପାଇଥିଲେ । ସେହି ଅର୍ଥକୁ ଉଦାରମନା ପାରଳା ଗଜପତି ଦାନ କରିଦେଇଥିଲେ ଆମ ଦେଶରେ କୃଷିର ଉନ୍ନତିକଳ୍ପେ ଅଧିକତର ଗବେଷଣାପାଇଁ । ଆନ୍ଧ୍ରର କୁନ୍ନୁରଠାରେ ସ୍ଥାପିତ ହୋଇଥିବା ଏକ କୃଷି ଅନୁଷ୍ଠାନରେ ଉଚ୍ଚତର ଗବେଷଣା କେନ୍ଦ୍ରଟିଏ ସ୍ଥାପନ ଉଦ୍ଦେଶ୍ୟରେ ସେହି ଅର୍ଥକୁ ସେ ଦାନ କରିଦେଇଥିଲେ । ଦେଶର କୃଷିଜାତ ପଦାର୍ଥର ଉତ୍ପାଦନ ବୃଦ୍ଧିଲାଗି ଅଧିକରୁ ଅଧିକ ଗବେଷଣା ହେଲେ ସାରା ଦେଶରେ କୃଷିର ଉନ୍ନତି ହେବ ବୋଲି ସେ ଗଭୀର ଆସ୍ଥାବାନ୍ ଥିଲେ । କେବଳ ଆପଣା ରାଜ୍ୟବାସୀଙ୍କର ନୁହେଁ, ସାରା ଦେଶର କୃଷି ଓ କୃଷକଙ୍କପାଇଁ ମହାରାଜା କୃଷ୍ଣଚନ୍ଦ୍ରଙ୍କ ମନୋଭାବନା ଏଥିରୁ ସ୍ପଷ୍ଟ । କୃଷି କମିଶନ୍‌ରେ ଅଙ୍ଗୀଭୂତ ସଦସ୍ୟ ଭାବରେ ସେ ସେତିକିବେଳେ ବର୍ମା ମଧ୍ୟ ଯାତ୍ରା କରିଥିଲେ ଏବଂ ସେଠି ବସବାସ କରି ରହିଥିବା ଓଡ଼ିଆମାନଙ୍କୁ ଓଡ଼ିଆ ଜାତିର ଉଜ୍ଜ୍ୱଳ ପରମ୍ପରା ବଜାୟ ରଖିବା ସଂଗେସଂଗେ ଏ ଜାତିର ଗୌରବ ଅକ୍ଷୁଣ୍ଣ ରଖିବା ଲାଗି ପରାମର୍ଶମାନ ଦେଇଥିଲେ ।

ପ୍ରଗତିଶୀଳ ମନୋଭାବାପନ୍ନ ଗଜପତି ଆପଣା ରାଜ୍ୟର ପ୍ରଜାଗଣଙ୍କ ସାମୂହିକ ଜୀବନର ମାନୋନ୍ନତିପାଇଁ ଶିଳ୍ପ ବିକାଶ କ୍ଷେତ୍ରରେ ମଧ୍ୟ ବିଭିନ୍ନ ପଦକ୍ଷେପମାନ ଗ୍ରହଣ କରିଥିଲେ । ଉଦ୍ୟମ କରିଥିଲେ ରାଜ୍ୟବାସୀ-ବିଶେଷକରି ଯୁବମାନସରେ ଶିଳ୍ପ ସଚେତନତା ସୃଷ୍ଟି କରିବାପାଇଁ । ପାରଳାଖେମୁଣ୍ଡି ସହରରେ ପ୍ରତିଷ୍ଠା ଲାଭ କରିଥିଲା ଏକ ଶିଳ୍ପ ତାଲିମ୍ କେନ୍ଦ୍ର । ସାଧାରଣ ଜନତା ବିଶେଷକରି ଗ୍ରାମାଞ୍ଚଳର ଲୋକମାନଙ୍କର ବିଶେଷ ଆବଶ୍ୟକତାକୁ ଭିତ୍ତିକରି ସେଠାରେ ତାଲିମ୍ ନେଉଥିବା ଯୁବକମାନଙ୍କପାଇଁ ତାଲିମ କାର୍ଯ୍ୟକ୍ରମର ବ୍ୟବସ୍ଥା ହୋଇଥିଲା । ପରିଣାମତଃ ତାଲିମ୍ ଶେଷହେବା ପରେ ଆପଣା ଉଦ୍ୟମରେ ନିଜ ନିଜ ପରିବେଶ ଭିତରେ ପେଟ ପାଟଣା ସମ୍ଭାଳି ନେବାରେ ସକ୍ଷମ ହେବା ସଙ୍ଗେସଙ୍ଗେ ସାଧାରଣ ଲୋକଙ୍କର ଚାହିଦା ମଧ୍ୟ ପୂରଣ ହୋଇପାରୁଥିଲା । ରାଜ୍ୟର ଜନସାଧାରଣଙ୍କର ଦୈନନ୍ଦିନ ଚାହିଦା ପୂରଣପାଇଁ ମହାରାଜା ତାହାଙ୍କ ବ୍ୟକ୍ତିଗତ ଉଦ୍ୟମରେ ଏକ ବୃହଦାକାର ଚାଉଳକଳ ଏବଂ ତେଲକଳ ପ୍ରତିଷ୍ଠା କରିଥିଲେ ପାରଳା ସହରରେ । ପୁଣି ସେଇଠି ମଧ୍ୟ ସ୍ଥାପନା କରିଥିଲେ ଏକ କ୍ଷୁଦ୍ର ଲୁହା କାରଖାନା । ସେଠାରେ ଘର ତୟାରି ପାଇଁ ଅତ୍ୟାବଶ୍ୟକ କବ୍‌ଜା, ବାଲ୍‌ଟି, ବିଭିନ୍ନ ପ୍ରକାରର ଟିଣ ପେକେଟ୍, ଟ୍ରଙ୍କ୍ ଆଦି ପ୍ରସ୍ତୁତ ହେଉଥିଲା । ସେହିଭଳି ପଳାସା ନିକଟବର୍ତ୍ତୀ ପୁଣ୍ଡିଠାରେ ପ୍ରତିଷ୍ଠା କରିଥିଲେ ଏକ ଲୁଣ କାରଖାନା, ପ୍ରଜାଗଣଙ୍କ ଦୈନନ୍ଦିନ ଜୀବନର ଏକ ଅତ୍ୟାବଶ୍ୟକ ପଦାର୍ଥର ପ୍ରସ୍ତୁତିପାଇଁ । ବର୍ତ୍ତମାନ ଆନ୍ଧ୍ରପ୍ରଦେଶରେ ସାମିଲ୍ ହୋଇଥିବା ସେହିସବୁ ଅଞ୍ଚଳଗୁଡ଼ିକ ଖେମଣ୍ଡି ରାଜ୍ୟର ଅନ୍ତର୍ଗତ ଥିଲା । ସେହିସବୁ ଉଦ୍ୟମ ମୂଳରେ ଥିଲା ରାଜ୍ୟବାସୀଙ୍କ ଉନ୍ନତିପାଇଁ ପାରଳା ମହାରାଜାଙ୍କ ଯଥାର୍ଥ ପରିକଳ୍ପନା ଏବଂ ଯୋଜନା ।



Ama Odisha pdf (aamaodisha@gmail.com)

ସେହିଭଳି ଅନ୍ୟ ଏକ ବିଶେଷ ଉଲ୍ଲେଖଯୋଗ୍ୟ ପଦକ୍ଷେପ ଥିଲା, ରାଜ୍ୟରେ ରେଳପଥର ବିକାଶ । ବାଣିଜ୍ୟ-ବ୍ୟବସାୟରେ ଉନ୍ନତି ତଥା ରାଜ୍ୟବାସୀଙ୍କ ସହଜ ଯାତାୟାତ ପାଇଁ ସେ ପରିକଳ୍ପନା କରିଥିଲେ ରେଳରାସ୍ତାର ସଂପ୍ରସାରଣପାଇଁ । ତାହାଙ୍କ ପିତାଙ୍କ ଅମଳରେ ନଉପଡ଼ାଠାରୁ ପାରଳାଖେମୁଣ୍ଡି ପର୍ଯ୍ୟନ୍ତ ରେଳରାସ୍ତା ନିର୍ମିତ ହୋଇସାରିଥିଲା । ରାଜ୍ୟବାସୀଙ୍କ ସ୍ୱାର୍ଥରକ୍ଷାପାଇଁ ସେ ସେଇ ରେଳପଥକୁ ଗୁଣପୁର ପର୍ଯ୍ୟନ୍ତ ସଂପ୍ରସାରିତ କରିବାପାଇଁ ପଦକ୍ଷେପ ନେଇଥିଲେ । ସେଥିପାଇଁ ରାଜ୍ୟ ରାଜକୋଷରୁ ପ୍ରାୟ ୧୮ ଲକ୍ଷ ଟଙ୍କାର ବ୍ୟୟବରାଦ ହୋଇଥିଲା । ନୂତନ ଭାବେ ନିର୍ମିତ ହୋଇଥିଲା ଏହି ୫୬ କିଲୋମିଟର ରେଳରାସ୍ତା । ଆଜି ମଧ୍ୟ ତାହା ବିଶେଷ ଜନହିତକର ପ୍ରମାଣିତ ହେବା ସଂଗେସଂଗେ ମହାରାଜା କୃଷ୍ଣଚନ୍ଦ୍ରଙ୍କର ଯଶଗାନପାଇଁ ସମର୍ଥ ।

ଆପଣାର ରକ୍ଷକଭାବେ ଖେମଣ୍ଡି ରାଜ୍ୟର ପ୍ରଜାଗଣ ପିତୃତୁଲ୍ୟ ମହାରାଜା କୃଷ୍ଣଚନ୍ଦ୍ରଙ୍କୁ ଗ୍ରହଣ କରୁଥିବା ବେଳେ ସେଇମାନଙ୍କର ହିତକୁ ହିଁ ରାଜଧର୍ମ ରୂପେ ଗ୍ରହଣ କରି ସେ ଆପଣାର ସ୍ଥିତି ସ୍ଥାପନା କରିଥିଲେ ସିଂହାସନ ଆରୋହଣ କରିବା ଦିନଠାରୁ । ତାହା ମଧ୍ୟ ଥିଲା କୃଷ୍ଣଚନ୍ଦ୍ରଙ୍କ ପୂର୍ବପୁରୁଷଗଣଙ୍କ ଆଦର୍ଶ । ସେହି କାରଣରୁ ଅତୀତରେ ନିକଟବର୍ତ୍ତୀ ଅଞ୍ଚଳଗୁଡ଼ିକରୁ ଅନେକ ଅନେକ ପରିବାର ଖେମଣ୍ଡି ରାଜଶାସନରେ ଅନ୍ତର୍ଭୁକ୍ତ ହେବାପାଇଁ ଚାଲି ଆସିଥିଲେ ଏହି ରାଜ୍ୟକୁ । ସ୍ୱତନ୍ତ୍ର ଓଡ଼ିଶାପାଇଁ ସୀମାକମିଟିର ସଭ୍ୟଗଣ ଏହି ତଥ୍ୟ ଆବିଷ୍କାର କରିଥିଲେ ସଂପୃକ୍ତ ସୀମାନ୍ତ ଅଞ୍ଚଳସବୁ ଗସ୍ତ କରିବା ଅବସରରେ । ଆଗନ୍ତୁକମାନଙ୍କ ମଧ୍ୟରେ ଅନେକ ତେଲୁଗୁ ଏବଂ ଆଦିବାସୀ ସଂପ୍ରଦାୟ ଅନ୍ତର୍ଭୁକ୍ତ ଥିଲେ ।

ସେହି ଦାୟରେ ପାରଳା ମହାରାଜା ସବୁବେଳେ ଉଦ୍ୟମରତ ଥିଲେ ରାଜ୍ୟରେ ପ୍ରଜାଗଣଙ୍କ ମଧ୍ୟରେ ଥିବା ଆଦିବାସୀ ସଂପ୍ରଦାୟର ବ୍ୟକ୍ତିବିଶେଷଙ୍କ ମଙ୍ଗଳପାଇଁ । ସେମାନଙ୍କ ସଂଖ୍ୟା ବେଶ୍ ଅଧିକ ଥିଲା ରାଜ୍ୟର ପାହାଡ଼ିଆ ମାଳ ଅଞ୍ଚଳଗୁଡ଼ିକରେ । ସେମାନେ ତ ବଣ ଜଙ୍ଗଲର ଅଧିବାସୀ । ବିଶେଷ ଭାବରେ ଅଶିକ୍ଷିତ ସାଧାରଣ ଲୋକଙ୍କପାଇଁ ସେସବୁ ଅଞ୍ଚଳକୁ ସହଜରେ ଯିବା ଆସିବା ସମ୍ଭବ ନୁହେଁ । ତେଣୁ ବିନା ଜୁଲମ କିମ୍ବା ଅତ୍ୟାଚାରରେ ନିଜ ନିଜ ଅଞ୍ଚଳରେ ସ୍ୱାଭାବିକ, ସ୍ୱାଚ୍ଛନ୍ଦ୍ୟ ଜୀବନଯାପନପାଇଁ ସେମାନଙ୍କ ଆକାଂକ୍ଷା ସବୁକୁ ଫଳବତୀ କରାଇବାପାଇଁ ବିଭିନ୍ନ ସମୟରେ ବିଭିନ୍ନ ଆଦେଶ ସବୁ ଦେଉଥିଲେ ରାଜକର୍ମଚାରୀମାନଙ୍କୁ । ଆଦିବାସୀ ସମାଜ ପ୍ରତି କୌଣସି ଅବହେଳା ପ୍ରଦର୍ଶନ କରାଗଲେ ସଂପୃକ୍ତ କର୍ମଚାରୀ କଠୋର ଦଣ୍ଡରେ ଦଣ୍ଡିତ ହେବେ ବୋଲି ମଧ୍ୟ ଘୋଷଣା କରିଥିଲେ । କେବଳ ସେତିକିରେ ସେ ସନ୍ତୁଷ୍ଟ ହୋଇ ରହିଯାଇ ନଥିଲେ । ବେଳେବେଳେ ନିଜେ ଯାଉଥିଲେ ସଉରା ପଲ୍ଲୀକୁ; ଆଦିବାସୀ ଗାଁଗଣ୍ଡାକୁ, ତାହାଙ୍କର ଆଦେଶ ସବୁ ପାଳିତ ହେଉଛି କି ନାହିଁ ତାହା ତଦାରଖ କରିବାପାଇଁ; ଆଦିବାସୀ ଅଞ୍ଚଳଗୁଡ଼ିକରେ ସେମାନଙ୍କ ଜୀବନ ସହ ପ୍ରତ୍ୟକ୍ଷ ସଂପର୍କ ସ୍ଥାପନପାଇଁ ।



Ama Odisha pdf (aamaodisha@gmail.com)

ତାଙ୍କରି ଜମିଦାରିରେ ଅତି ଅନୁନ୍ନତ ଲାଞ୍ଜିଆ ସଉରା ସଂପ୍ରଦାୟର ସଂଖ୍ୟା ଥିଲା ବେଶ୍ ଅଧିକ । ତେଣୁ ସେ ମନେ କରୁଥିଲେ, ବାସ୍ତବରେ ସେଇମାନଙ୍କର ହିଁ ସେ ରାଜା । ତେଣୁ ସେମାନଙ୍କୁ ଅନୁଧ୍ୟାନପାଇଁ ସେ ସଉରାମାଳକୁ ଗସ୍ତ କରୁଥିଲେ । ହେଲେ ରାଜପୋଷାକରେ ନୁହେଁ କିମ୍ବା ଥାଟବାଟ ନେଇ ନୁହେଁ, ଯାଉଥିଲେ ଜଣେ ଲାଞ୍ଜିଆ ସଉରା ଭଳି । ଅଚାନକ ଭାବରେ ଥରେଥରେ କିଛି ରାଜକର୍ମଚାରୀଙ୍କୁ ଆଦେଶ ଦେଉଥିଲେ ତାଙ୍କରି ସହିତ ଯିବାପାଇଁ । ସେଥର ଯେଉଁ ଅଞ୍ଚଳକୁ ଯିବାଲାଗି ସେ ମନସ୍ଥ କରୁଥିଲେ ତାହାର ସୀମାପର୍ଯ୍ୟନ୍ତ ଯାତ୍ରା କରୁଥିଲେ କାର୍ ଯୋଗେ । ସେଠାରୁ ସଉରା ପଲ୍ଲୀକୁ ଯିବା ପୂର୍ବରୁ ଜଣେ ଆଦିବାସୀ ବେଶରେ ସଜ୍ଜିତ ହେବା ପରେପରେ ଫେରାଇ ଦେଉଥିଲେ ଆପଣା କାର୍ ଏବଂ ରାଜକର୍ମଚାରୀଗଣଙ୍କୁ । ନିର୍ଦ୍ଦେଶ ଦେଉଥିଲେ ପୁଣି କେଉଁଦିନ, କେତେବେଳେ ଏବଂ କେଉଁସ୍ଥାନକୁ ଗାଡ଼ି ଆସିବ ଫେରି ଯିବାପାଇଁ । ସେହି ସମୟର ବ୍ୟବଧାନ ବେଳେବେଳେ ସାତ ଆଠ ଦିନରୁ ଆରମ୍ଭ କରି ଦଶ ପନ୍ଦର ଦିନ ପର୍ଯ୍ୟନ୍ତ ହେଉଥିଲା ।

ସୀମାନ୍ତରେ ଓହ୍ଲାଇ ପଡ଼ି ପ୍ରଥମେ ଆପଣାର ପୋଷାକ ପରିବର୍ତ୍ତନ କରୁଥିଲେ । ପରିଧାନରେ ପାଲଟି ଯାଉଥିଲେ ଯଥାର୍ଥରେ ଜଣେ ଲାଞ୍ଜିଆ ସଉରା । ଚାଖଣ୍ଡେ ଓସାରର ପ୍ରାୟ ୨୦ ହାତ ଲମ୍ବର 'ଲେଞ୍ଜା' (ଧୋତିପଟି) ଲେଙ୍ଗ୍‌ଟି ଭଳି ପିନ୍ଧୁଥିଲେ । ତାହା ଏଭଳି ଭାବରେ ପିନ୍ଧା ହେଉଥିଲା ଯେ ସେଇ ଲେଞ୍ଜାର ଦୁଇ ମୁଣ୍ଡରୁ ଗୋଟିଏ ପିଠି ପଟରେ ଲାଞ୍ଜ ଭଳି ଝୁଲି ରହୁଥିବା ବେଳେ ଆରପଟଟି ସାମନାପଟରେ ଆଣ୍ଠୁ ପର୍ଯ୍ୟନ୍ତ ଝୁଲି ରହୁଥିଲା । ଧୋତିପଟିର ମଝି ଅଂଶଟି ବେଶ୍ ଶକ୍ତ ଭାବେ ଅଣ୍ଟାରେ ଗୁଡ଼ା ହୋଇ କୌପୀନ୍ ଭଳି ଦେଖାଯାଉଥିଲା । ଲେଞ୍ଜାର ଦୁଇ ଝୁଲା ଅଂଶରେ ପ୍ରାୟତଃ ନାଲି ସୂତାରେ ଖଚିତ ହେଉଥିଲା ବେଶ୍ କାରୁକାର୍ଯ୍ୟ । ଅଣ୍ଟା ଉପରକୁ ସାରାଦେହ ଫୁଙ୍ଗୁଳା ପ୍ରାୟ, ସେମିତି ଦୁଇଟିଯାକ ଗୋଡ଼ । ବେକରେ କିଛି କିଛି ମାଳି- ତାହା କାଠଖଣ୍ଡର ହେଉ ବା ହେଉ ଜଙ୍ଗଲର କିଛି ଫଳ ମଂଜିରେ ପ୍ରସ୍ତୁତ । ଦୁଇ ହାତରେ ବଳା- ସେହିଭଳି ମାଳି ଗୁନ୍ଥା ହୋଇ ବି ହୋଇପାରେ । ମୁଣ୍ଡରେ ଅଣ ଓସାରିଆ ପଟି- ବିଶେଷକରି ନାଲି ରଂଗର ଏବଂ ମଧ୍ୟ କିଛି କାରୁକାର୍ଯ୍ୟଯୁକ୍ତ । ସେଇ ପଟିରେ ଖୁଞ୍ଚା ହୋଇଥିବ ମୟୂରପୁଚ୍ଛ, ପୁଣି ବଗ ତଥା ଅନ୍ୟାନ୍ୟ ରଂଗବେରଂଗ ପକ୍ଷୀ ପରର ଅପୂର୍ବ ସମାବେଶ । ଗୋଟିଏ କାନ୍ଧରେ ଝୁଲୁଥିବ ଧନୁ ଓ ତୂଣୀର, ଅନ୍ୟ କାନ୍ଧରେ ଟାଙ୍ଗିଆଟିଏ । ଖୋପ ଭିତରେ ଥାଇ ଲମ୍ବାଛୁରୀଟିଏ ଓହଳି ରହିଥିବ ଅଣ୍ଟାରେ । ପୁଣି ଦୁଇ ତିନୋଟି ଲାଉ ତୁମ୍ବା ଲମ୍ବା ଡୋରିରେ ବନ୍ଧାହୋଇ ଝୁଲି ରହିଥିବ କାନ୍ଧରୁ । କେଉଁଥିରେ ପିଇବାପାଣି ତ କେଉଁଥିରେ ଅନ୍ୟ କିଛି ଖାଦ୍ୟପାନୀୟ ।

ସେଭଳି ବେଶ ପୋଷାକ ସହିତ ମହାରାଜା ସାଂଗରେ ନେଉଥିଲେ ନିଜର ବନ୍ଧୁକ ଏବଂ ବେକରୁ ଅଣ୍ଟାଯାଏଁ ଝୁଲୁଥିବା ଚମଡ଼ା ବେଲ୍‌ଟରେ ସଜ୍ଜିତ ହୋଇ ରହିଥିବା ଗୁଳି । ପାଦରେ ଯୋତା କିମ୍ବା ଚପଲ । ସେଭଳି ବେଶ ସାଙ୍ଗକୁ ବେଳେବେଳେ ମଧ୍ୟ ନେଉଥିଲେ ହାଫ୍ ପ୍ୟାଣ୍ଟ୍, ସାର୍ଟ ଏବଂ ଟୋପି । ସେଇ କେତେଦିନପାଇଁ ସେତକ ଯଥେଷ୍ଟ । ତୁଳିତଳ୍ପ ଶଯ୍ୟା



Ama Odisha pdf (aamaodisha@gmail.com)

ତ୍ୟାଗକରି ଆଦିବାସୀ ଅଞ୍ଚଳକୁ ଯାତ୍ରା କରୁଥିବା ମହାରାଜା କୃଷ୍ଣଚନ୍ଦ୍ର ସାଙ୍ଗରେ ଅନ୍ୟ କିଛି ବିଛଣା, ନିତ୍ୟ ବ୍ୟବହାର୍ଯ୍ୟ ଜିନିଷ କିମ୍ବା ସ୍ୱତନ୍ତ୍ର ଖାଦ୍ୟ ପଦାର୍ଥ ନେଉ ନଥିଲେ । ସଉରା ପଲ୍ଲୀରେ ସେଇମାନଙ୍କ ଖାଦ୍ୟ ଖାଇ ସେମାନଙ୍କ ସହିତ ଦିନ ବିତାଉଥିଲେ ସେଇ କିଛି କାଳ । ସେମାନଙ୍କ ଭାଷାରେ କଥାବାର୍ତ୍ତା ହେଉଥିଲେ; ପିଲା, ବୁଢ଼ା ତଥା ଆଦିବାସୀ ମହିଳା ସମସ୍ତଙ୍କ ସହିତ ମିଶୁଥିଲେ ଅତି ଅନ୍ତରଙ୍ଗ ଭାବେ । ସେମାନଙ୍କ ସହ ନାଚଗୀତ ବି କରୁଥିଲେ । ଚାଲିଚାଲି ଏ ଗାଆଁରୁ ସେ ଗାଆଁକୁ ଯାଉଥିଲେ । ବେଳେବେଳେ ସେମାନଙ୍କ ସହ ପାରିଧି ବି କରୁଥିଲେ । କେଉଁଠି ମଣିଷଖିଆ ବାଘ ମାତିଥିବା ଖବର ପାଇଲେ 'ଡୋକରାବେଣ୍ଟ' (ସେଇ ବାଘର ପାଦଚିହ୍ନକୁ ଅନୁସରଣ କରିକରି ତାହାକୁ ଠାବ କରିବା ପରେ ବାଘକୁ ମୁହାଁମୁହିଁ ଶିକାର କରିବା) କରି ଶିକାର କରୁଥିଲେ । ସେଇ ଅଞ୍ଚଳର ଆତଙ୍କ ଦୂର କରୁଥିଲେ । ସେଇଥିପାଇଁ ତ ସେ ରାଜା; ରାଇଜର ମୁଖିଆ ।

ସଉରାପଲ୍ଲୀକୁ ମହାରାଜାଙ୍କର ଆଗମନ ସମ୍ବାଦ ପବନରେ ପବନରେ ପ୍ରଚାରିତ ହୋଇଯାଉଥିଲା । ଗାଆଁଗାଆଁରୁ ସଉରାମୁଖ୍ୟ-ଗମାଙ୍ଗମାନେ ଚାଲିଆସୁଥିଲେ ମହାରାଜାଙ୍କୁ ସଙ୍ଖୋଳିବାପାଇଁ । ସେଥିପାଇଁ 'ବଳଦିଆ' (ଜିଗର କରିବା)କରୁଥିଲେ; ଅଳି, ତକରାଳ କରୁଥିଲେ । କୁଆଡୁକୁଆଡୁ ମହିଳାଗଣ ରାତି ଦିନ ନମାନି ଚାଲିଆସୁଥିଲେ ତାଙ୍କରି ନିକଟକୁ, ବେଢ଼ି ଯାଉଥିଲେ ତାହାଙ୍କୁ- ସେମାନେ ସମସ୍ତେ ଥିଲେ ମହାରାଜାଙ୍କ ମାଆ, ଭଉଣୀ, ଝିଅ... ମହାରାଜା ଉଦ୍ୟମ କରୁଥିଲେ ସମସ୍ତଙ୍କୁ ସନ୍ତୁଷ୍ଟ କରିବାପାଇଁ । ହେଲେ ଏସବୁ ଭିତରେ ପ୍ରଥମେ ସେ ସେମାନଙ୍କର ସମସ୍ୟା ବୁଝି ନେଉଥିଲେ । ଟିପି ରଖୁଥିଲେ ଟିପା ଖାତାରେ । ନଅରକୁ ଫେରିଗଲା ପରେ ସେଇସବୁ ସମସ୍ୟାର ସମାଧାନପାଇଁ ପ୍ରଥମେ ପ୍ରାଶାସନିକ ଗୁରୁତ୍ୱ ଦେଉଥିଲେ । ବେଳେବେଳେ କେବଳ ତାହାଙ୍କୁ ଦର୍ଶନ କରିବାପାଇଁ ଏବଂ ପୁଣି ଗୁହାରି ଜଣାଇବାପାଇଁ ମଧ୍ୟ ଆଦିବାସୀ ଗଣ ରାଜ ନଅରକୁ ଆସୁଥିଲେ । ମହାରାଜା ପ୍ରଥମେ ସେମାନଙ୍କୁ ଶୁଣୁଥିଲେ । ବେଳେବେଳେ ଆଦିବାସୀବୁଢ଼ାଟିଏ ତାହାଙ୍କୁ କୁଣ୍ଢାଇ ପକାଇ ଗେଲ କରି କହୁଥିଲା । 'କେତେଦିନ ହେଲା ତତେ ଦେଖିନାହିଁ ବୋଲି ମନଟା ଉଚ୍ଛନ୍ନ ହେଲା । ମୁଁ ବଞ୍ଚିଥିଲି ବୋଲି ସିନା ତତେ ଦେଖିଲି...' କି ଆନ୍ତରିକତା ! କି ହାର୍ଦ୍ଦିକତା ! ବ୍ୟାଘ୍ରୋପମ ତଥା ଭାବ ଗାମ୍ଭୀର୍ଯ୍ୟପୂର୍ଣ୍ଣ ମହାରାଜ କିନ୍ତୁ ସେମାନଙ୍କ ଗହଣରେ ନିହାତି ସରଳ-ତରଳ ମଣିଷଟିଏ ପାଲଟି ଯାଉଥିଲେ । ହୋଇଯାଉଥିଲେ କଳକଳ ଛଳଛଳ ହୋଇ ବହି ଯାଉଥିବା ଆଦିବାସୀ ଜନଜୀବନର କ୍ଷୁଦ୍ର ଜଳଧାରାଟିଏ ।

ଜ୍ଞାନପୀଠ ବିଜେତା ପ୍ରଖ୍ୟାତ ଔପନ୍ୟାସିକ ଗୋପୀନାଥ ମହାନ୍ତିଙ୍କ ଦ୍ୱାରା ସଂଗୃହୀତ ଏହି ତଥ୍ୟ ପ୍ରଜାଗଣଙ୍କ ପାଇଁ ମହାରାଜା କୃଷ୍ଣଚନ୍ଦ୍ରଙ୍କ ଦରଦୀ ହୃଦୟର ଏକ ନିଛକ ପରିପ୍ରକାଶ ଏବଂ



Ama Odisha pdf (aamaodisha@gmail.com)

ପ୍ରଜାମଙ୍ଗଳପାଇଁ ରାଜାର ପବିତ୍ର କର୍ତ୍ତବ୍ୟବୋଧର ସଂପୂର୍ଣ୍ଣ ପ୍ରତିଫଳନ । ରାଜ୍ୟବାସୀଙ୍କ ସୁରକ୍ଷାପାଇଁ ମହାରାଜା ଥିଲେ ସଦାସର୍ବଦା ତତ୍ପର ।

ଥରକର ଘଟଣା (ସମ୍ଭବତଃ ତାହା ଥିଲା ୧୯୨୧ ମସିହା ସେପ୍ଟେମ୍ବର ମାସ ।)

ଆକାଶକୁ ଘୋଡ଼ାଇ ପକାଇଥିଲା କଳାହାଣ୍ଡିଆ ମେଘ । ପ୍ରବଳ ଘଡ଼ଘଡ଼ି ଚଡ଼ଚଡ଼ି ସାଙ୍ଗକୁ ହେଲା ପ୍ରବଳ ବର୍ଷା । ସେହିଭଳି ଚାଲିଲା ତିନିଦିନ ତିନିରାତି । ସେଭଳି ବର୍ଷଣ ମୁଖର ରାତିରେ ମହାରାଜାଙ୍କ ନିଦ ଭାଙ୍ଗି ଯାଇଥିଲା । ଅକସ୍ମାତ୍ ତାଙ୍କରି ହୃଦ୍‌ବୋଧ ହୋଇଥିଲା ଯେ ସେମିତି ବର୍ଷା ଅଧିକ ଲାଗି ରହିଲେ ବଂଶଧାରା ନଦୀକୂଳସ୍ଥ କାଶୀନଗରରେ ତ ପାଣି ପଶିଯିବ ! ପୁଣି ମଧ୍ୟ ନଈକୂଳିଆ ଗାଆଁଗଣ୍ଡାର ଲୋକେ ବିପତ୍ତି ଭିତରକୁ ଟାଣି ହୋଇଯିବେ !

ପ୍ରବଳ ବର୍ଷାଯୋଗୁଁ ରାଜ୍ୟର ବିଭିନ୍ନ ଅଞ୍ଚଳ କିଭଳି ପ୍ରଭାବିତ ହୋଇଛି/ ହେବାର ସମ୍ଭାବନା ଅଛି ସେ ନେଇ ପ୍ରଥମ ଦିନର ବର୍ଷା ବିପ୍ଲାବ ପରେ ପରେ ହିଁ ସେ ଖବର ସଂଗ୍ରହ କରିଥିଲେ । ସମ୍ଭବତଃ ସେତିକିବେଳେ ହିଁ ସେ ଜାଣିବାକୁ ପାଇଥିଲେ ଯେ କାଶୀନଗର ନିକଟରେ ନଦୀ ବନ୍ଧ ବିଶେଷ ଦୁର୍ବଳ ରହିଛି । ତା' ପରେ ତ ଆହୁରି ଅଧିକ ବର୍ଷା ହେଲାଣି ।

ସେ କି ଆଉ ସମ୍ଭାଳି ରହିପାରନ୍ତେ । ଉଠି ବସିଲେ । ଦେଖିଲେ ରାତି ଦୁଇଟା ! ତଥାପି ତତ୍କାଳ ଖବର ପଠାଇଥିଲେ ଇଂଜିନିୟର ମି. ମୁଲ୍ଲାରଙ୍କୁ । ସେ ଥିଲେ ରାସ୍ତାଘାଟ ନିର୍ମାଣ ତଥା ଜଳସେଚନ ପ୍ରଣାଳୀଗୁଡ଼ିକର ତଦାରଖ ପାଇଁ ଥିବା ଇଂଜିନିୟରିଂ ବିଭାଗର ମୁଖ୍ୟ । ସେ ଖବର ପାଇ ତତ୍କାଳ ଉଆସରେ ପହଞ୍ଚିଥିଲେ । ପ୍ରଜାଙ୍କପାଇଁ ମହାରାଜାଙ୍କର କି କାତର ଭାବ ! ଅଭିଭୂତ ହୋଇଯାଇଥିଲେ ବିଦେଶୀ ଇଞ୍ଜିନିୟର ମି. ମୁଲ୍ଲାର । ସେ ସଂଗେସଂଗେ ପ୍ରସ୍ତୁତି ଆରମ୍ଭ କରିଥିଲେ କାଶୀନଗର ଯିବାପାଇଁ । କର୍ମଚାରୀମାନଙ୍କୁ ଡକାଇ ପଠାଇବା ସଂଗେସଂଗେ ସେହି କାର୍ଯ୍ୟପାଇଁ ମଧ୍ୟ ଯଥାସମ୍ଭବ ପ୍ରସ୍ତୁତିର ଆୟୋଜନ କରିଥିଲେ । ସେଥିପାଇଁ ପ୍ରାୟ ଦୁଇ ଘଣ୍ଟା ଲାଗି ଯାଇଥିଲା । ତା'ପରେ ବାହାରିଥିଲେ ସମସ୍ତେ ଚାଲିଚାଲି ।

ଖୋଦ୍ ମହାରାଜା ଆଗରେ । ସାଙ୍ଗରେ ୨୦/୨୫ ଜଣ ଲୋକ । ସେମାନେ ପାରଳାରୁ ବାହାରି ହାଡ଼ଭାଙ୍ଗିଠାରେ ପହଞ୍ଚିବା ବେଳକୁ ରାତି ପାହିଆସିଲାଣି । ପ୍ରଭାତୀ ଆଲୋକରେ ରାସ୍ତାରେ ପ୍ରଜାଏଁ ଦେଖିଥିଲେ ସ୍ୱୟଂ ମହାରାଜା ଚାଲିଛନ୍ତି କାଶୀନଗର ଆଡ଼କୁ । ସେଠାରୁ ଆହୁରି ପ୍ରାୟ ଦଶ କିଲୋମିଟର ରାସ୍ତା । ତଥାପି ବର୍ଷା ଚାଲିଛି । ତାରି ଭିତରେ ଯିଏ ମହାରାଜାଙ୍କୁ ଯେଉଁଠି ଦେଖିଲା, ଆସି ସାମିଲ୍ ହୋଇ ଯାଉଥିଲା ଦଳରେ । ମି. ମୁଲ୍ଲାରଙ୍କ ପରାମର୍ଶକ୍ରମେ ରାସ୍ତାରୁ ଆପଣାର ଶକ୍ତି ମୁତାବକ ଖଣ୍ଡେ ଖଣ୍ଡେ ପଥର ଉଠାଇ ନେଉଥିଲେ ସେହି ଦଳର ସମସ୍ତେ । ମହାରାଜାଙ୍କ ସମେତ ସମସ୍ତେ ପ୍ରାୟ ବର୍ଷା ଜଡ଼ସଡ଼ ହୋଇ ମଧ୍ୟ ଚାଲିଥିଲେ ଆଗକୁ । ପ୍ରାୟ ସମସ୍ତଙ୍କ ହାତରେ ଛୋଟବଡ଼ ଖଣ୍ଡେଖଣ୍ଡେ ପଥର । ସେହି ଦଳର କଳେବର ମଧ୍ୟ ବୃଦ୍ଧିପାଇ ଚାଲିଥିଲା ସମୟକ୍ରମେ ।



Ama Odisha pdf (aamaodisha@gmail.com)

ସେହି ଦଳ କାଶୀନଗରରେ ପହଞ୍ଚିଲା ବେଳକୁ ଦେଖାଯାଇଥିଲା ସତକୁ ସତ ବଂଶଧାରା ନଦୀର ଜଳସ୍ତର ବଢ଼ୁଥିଲା ପ୍ରବଳ ବେଗରେ । ସୀମା ଟପିବା ବେଳ ! ପାହାଡ଼ିଆ ନଈ । ମିଷ୍ଟର ମୁଲ୍ଲାରଙ୍କ ତତ୍ତ୍ୱାବଧାନରେ ନଈବନ୍ଧର ଦୁର୍ବଳ ସ୍ଥାନରେ ବନ୍ଧ ଆକାରରେ ପଥର ସବୁକୁ ସଜାଇ ଦିଆଯାଇଥିଲା । ମାତ୍ର ଅଧଘଣ୍ଟା ମଧ୍ୟରେ ଏକ ବିରାଟ ପଥରବନ୍ଧ ନିର୍ମିତ ହୋଇଯାଇଥିଲା । ସେତେବେଳକୁ ନଈର ବର୍ଷା ପାଣି ବିପରୀତ ଦିଗର ବିସ୍ତୀର୍ଣ୍ଣ ପ୍ରାନ୍ତର ତଥା ବିଲ-ବଣ-ତୋଟାରେ ଉଛୁଳି ଉଠୁଥିଲା । ମି. ମୁଲ୍ଲାରଙ୍କ ନେତୃତ୍ୱରେ ସମସ୍ତେ ଲାଗି ପଡ଼ିଥିଲେ ପଥରବନ୍ଧ ତୟାରିରେ । ମହାରାଜା ବି ସେମାନଙ୍କ ମଧ୍ୟରେ ଥିଲେ ଅନ୍ୟତମ । ସମସ୍ତେ ପ୍ରାୟ ପାଣିକାଦୁଅରେ ଜଡ଼ସଡ଼ । କେତେବେଳୁ ଏମାନେ ସମସ୍ତେ ବର୍ଷାରେ ଭିଜିଭିଜି ରାତିର ଅନ୍ଧାରରେ ସୁଦ୍ଧା ପାରଳାରୁ ଚାଲିଚାଲି କାଶୀନଗର ଆସି ନଦୀବନ୍ଧ ସଜାଡ଼ିବାରେ ସଂପୂର୍ଣ୍ଣ ନିୟୋଜିତ ଯେ ! କର୍ମଚାରୀଗଣଙ୍କୁ ବର୍ଷଣ ରାତିରେ ଚାଲିବାକୁ ଦେଇ ସେ କେମିତି ଗାଡ଼ିରେ ଆସିପାରିଥାନ୍ତେ ! ପୁଣି ପଦବ୍ରଜରେ ଆସିଥିବା ଯୋଗୁଁ ସିନା ଏତେବଡ଼ ସେବାଦଳଟିଏ ମନକୁ ମନ ଗଢ଼ି ଉଠିଥିଲା- ପଥରର ପାହାଡ଼ଟିଏ ସାଙ୍ଗରେ ଅଣାଯାଇ ପାରିଥିଲା !

ସେଭଳି ଅସ୍ୱାଭାବିକ ପରିସ୍ଥିତିରେ ପଥରବନ୍ଧ ନିର୍ମିତ ହୋଇସାରିବା ପରେ ମହାରାଜାଙ୍କ ଆତ୍ମସନ୍ତୋଷକୁ କିଏ ବା କଳନା କରିପାରିବ ! ଏଭଳି ଦରଦୀ ହୃଦୟଯୁକ୍ତ ମହାରାଜା କୃଷ୍ଣଚନ୍ଦ୍ରଙ୍କ ରାଜ୍ୟର ପ୍ରଜାଗଣ ତାହାଙ୍କୁ ପିତୃତୁଲ୍ୟ ମନେ କରିବେ ନାହିଁ କେମିତି ?

କେବଳ ରାଜ୍ୟର ପ୍ରଜାଗଣଙ୍କ ବସ୍ତୁବାଦୀ / ପାର୍ଥିବ ଜୀବନର ଉନ୍ନତି କଳ୍ପେ ଯେ ସେ ଧ୍ୟାନ ଦେଉଥିଲେ ତା' ନୁହେଁ, ରାଜ୍ୟର ପ୍ରଜାଗଣଙ୍କ ସମେତ ଓଡ଼ିଆମାନଙ୍କର ବୌଦ୍ଧିକ ଉନ୍ନତି ପାଇଁ ମଧ୍ୟ ସେ ଦରଦୀ ଥିଲେ । ସେ ଯଥାର୍ଥରେ ଥିଲେ ଓଡ଼ିଆ ସାହିତ୍ୟର ଜଣେ ପରମ ପୃଷ୍ଠପୋଷକ । ମହାରାଜାଙ୍କ ଜାତୀୟ ପ୍ରୀତି ହିଁ ଓଡ଼ିଆ ସାହିତ୍ୟ ପ୍ରୀତିକୁ ଅଧିକ ଅନୁରଣିତ କରିଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ସେହି ଦୃଷ୍ଟିରୁ ଦେଖିଲେ, ଓଡ଼ିଆ ସାହିତ୍ୟ ଇତିହାସରେ ସ୍ୱଷ୍ଟ ସ୍ୱାକ୍ଷର ରଖିପାରିବା ଭଳି ସୃଷ୍ଟି ତଥା ତାହାର ସ୍ରଷ୍ଟାଙ୍କୁ ଲୋକଲୋଚନକୁ ଆଣିବାପାଇଁ ଉଦ୍ୟମ କରିଥିଲେ ସେ । ବାସ୍ତବରେ ଗାଦି ଆସୀନ ହେବାବେଳକୁ 'ଗଜପତି ପ୍ରେସ୍' ସ୍ଥାପିତ ହୋଇ ସାରିଥିଲା । ଏଠାରେ ବିଶେଷ ଉଲ୍ଲେଖଯୋଗ୍ୟ ଯେ ଓଡ଼ିଶା ବାହାରେ ଥିବା ସେଇ ପୁଣ୍ୟଭୂମିରେ ଅନେକ ମୌଳିକ ଚିନ୍ତାଶୀଳ ଲେଖକ ସୃଷ୍ଟି ହୋଇଥିଲେ । ତାହାର ଅନ୍ୟତମ କାରଣ ହୋଇପାରେ ରାଜପରିବାରର ପୃଷ୍ଠପୋଷକତା । ମହାରାଜା କୃଷ୍ଣଚନ୍ଦ୍ର ମଧ୍ୟ ସେଥିରୁ କୌଣସି ବ୍ୟତିକ୍ରମ ନଥିଲେ ବରଂ ସେତେବେଳକୁ ସମଗ୍ର ଓଡ଼ିଶାରେ ଭାଷା ସାହିତ୍ୟର ସୁରକ୍ଷା ନୁହେଁ, ତାହାର ଉନ୍ନତିକଳ୍ପେ ବିଭିନ୍ନ ପଦକ୍ଷେପ ଅପରିହାର୍ଯ୍ୟ ମନେ ହୋଇଥିଲା ପ୍ରତ୍ୟେକ ସ୍ୱାଭିମାନୀ ଓଡ଼ିଆଙ୍କପାଇଁ ।

ଓଡ଼ିଆ ସାହିତ୍ୟ ଜଗତର ପୁରାତନ କୃତି ସମୂହର ପୁନଃପ୍ରକାଶନ ଲାଗି କଟକ, ବାଲେଶ୍ୱର, ବାମଣ୍ଡା ପ୍ରଭୃତି ସ୍ଥାନରେ ଉଦ୍ୟମ ଆରମ୍ଭ ହୋଇ ସାରିଥିଲା । ସେହି କ୍ରମରେ ମହାରାଜା



Ama Odisha pdf (aamaodisha@gmail.com)

କୃଷ୍ଣଚନ୍ଦ୍ର, ତାଙ୍କର ପୂର୍ବ ବଂଶଧର ରାଜା ଜଗନ୍ନାଥ ଗଜପତି ନାରାୟଣ ଦେବଙ୍କର ଶ୍ରୀ ବୃନ୍ଦାବନ ଚନ୍ଦ୍ର ବିହାର (୧୭୬୬) କାବ୍ୟଟିକୁ ପ୍ରକାଶ କରିଥିଲେ (୧୯୧୭) । ସେହିଭଳି ପିତୃବ୍ୟ ପଦ୍ମନାଭ ଦେବଙ୍କ ଭାବବତୀ, ଚନ୍ଦ୍ରାବତୀ ସ୍ୱୟଂବର, ବାଣା ଦର୍ପଦଳନ, ଅହଲ୍ୟା ଶାପମୋଚନ, ଦାନ ପରୀକ୍ଷା ଇତ୍ୟାଦି ନାଟକ ସମେତ ପିତା ଗୌର ଗଜପତିଙ୍କ ଧ୍ରୁବ ନାଟକ ଏବଂ ଉଷା ପରିଣୟର ମୁଦ୍ରଣ କରାଇଥିଲେ ।

ଆପଣା ରାଜ୍ୟର କୃତି ସାହିତ୍ୟିକମାନଙ୍କ ସୃଷ୍ଟିଗୁଡ଼ିକ ମଧ୍ୟରୁ ନୀଳମଣି ରଥଶର୍ମାଙ୍କ ପାରଳା ପ୍ରଶଂସା; ସୀମାଦ୍ରି ପଟ୍ଟନାୟକଙ୍କ ପୃଥ୍ୱୀରାଜ; ସୀମାଦ୍ରି ପରିଚ୍ଛାଙ୍କ ନବାନୁରାଗ; ଶ୍ୟାମସୁନ୍ଦର ରାଜଗୁରୁଙ୍କ ପ୍ରବନ୍ଧାବଳୀ; ଅପର୍ଣ୍ଣା ପଣ୍ଡାଙ୍କ ପଦ୍ମନାଭ ଜୀବନୀ ଏବଂ ଦଶମାଳିକା ତତ୍ତ୍ୱବୋଧିନୀ ଇତ୍ୟାଦି ଗଜପତି ପ୍ରେସ୍‌ରୁ ପ୍ରକାଶଲାଭ କରିଥିଲା । ବିଶେଷ ଉଲ୍ଲେଖଯୋଗ୍ୟ ଯେ ପ୍ରକାଶିତ ଗ୍ରନ୍ଥଗୁଡ଼ିକ ମଧ୍ୟରେ ଗୋପାଳକୃଷ୍ଣ ପଦ୍ୟାବଳୀ, ଗୌରହରି (ପରିଚ୍ଛା) ଗ୍ରନ୍ଥାବଳୀ, ହରିବନ୍ଧୁ (ବେବର୍ତ୍ତା) ପଦ୍ୟାବଳୀ ଇତ୍ୟାଦି ମଧ୍ୟ ମୁଦ୍ରିତ ହୋଇଥିଲା ।

ତଦ୍‌ବ୍ୟତୀତ ପ୍ରାକ୍ତନ ଓଡ଼ିଶାର ସାହିତ୍ୟିକମାନଙ୍କୁ ପ୍ରୋତ୍ସାହନ ଦେବାରେ ମହାରାଜାଙ୍କ ଅବଦାନ ମଧ୍ୟ ସ୍ମରଣୀୟ । ସେଥିପାଇଁ ଓଡ଼ିଶାର ପ୍ରଖ୍ୟାତ ସାହିତ୍ୟିକ ଗୋପାଳଚନ୍ଦ୍ର ପ୍ରହରାଜ ଭାଷାକୋଷର ପଞ୍ଚମ ଖଣ୍ଡରେ ମହାରାଜାଙ୍କ ପ୍ରତି କୃତଜ୍ଞତା ଅର୍ପଣ କରିଥିଲେ- 'ଏହି ପୂର୍ଣ୍ଣଚନ୍ଦ୍ର ଭାଷାକୋଷର ପଞ୍ଚମ ଖଣ୍ଡର ମୁଦ୍ରଣ ବ୍ୟୟ ପାଇଁ ପାଞ୍ଚ ହଜାର ଟଙ୍କା ଦାନ କରି ଶ୍ରୀ ଛାମୁ ମାତୃଭୂମି, ମାତୃଭାଷା ଓ ଜାତିପ୍ରୀତିର ଯେଉଁ ଜ୍ୱଳନ୍ତ ଉଦାହରଣ ଓ ଆଦର୍ଶ ପ୍ରଦର୍ଶନ କରିଅଛନ୍ତି ତାହା ସର୍ବଥା ପ୍ରଶଂସନୀୟ ।'' ସେହିଭଳି କବିଶେଖର ଚିନ୍ତାମଣିଙ୍କ ମତରେ ତାହାଙ୍କ ସାହିତ୍ୟିକ ଜୀବନର ମୁଖ୍ୟ ପ୍ରେରଣାଦାତା ଥିଲେ ଗଜପତି କୃଷ୍ଣଚନ୍ଦ୍ର । ଦୀର୍ଘ ୨୨ ବର୍ଷ ପାଇଁ ସେ ମାସିକ ବୃତ୍ତି ଲାଭ କରିଥିଲେ କେବଳ ସାହିତ୍ୟ ସୃଷ୍ଟିପାଇଁ ସୁଯୋଗ ପାଇଁ । ମହାରାଜାଙ୍କ ଅର୍ଥ ସହାୟତାରେ ପ୍ରକାଶ ପାଇଥିବା ତାଙ୍କରି ଗ୍ରନ୍ଥାବଳୀର ଦ୍ୱିତୀୟ ଖଣ୍ଡକୁ ତାହାଙ୍କୁ ଉପହାର ସ୍ୱରୂପ ଅର୍ପିତ ହୋଇଥିଲା ମହାରାଜାଙ୍କ ଗୁଣଗାନ କରିବା ସମେତ । କବିଙ୍କ ରଚିତ ମହେନ୍ଦ୍ର କାବ୍ୟ ମଧ୍ୟ ସେଭଳି ଆର୍ଥିକ ସହାୟତାକ୍ରମେ ପ୍ରକାଶ ଲାଭ କରିଥିଲା । ସେହିପରି ଅନ୍ୟ ଯେଉଁ ଗ୍ରନ୍ଥ ସମୂହ ଗଭୀର କୃତଜ୍ଞତାର ନିଦର୍ଶନ ସ୍ୱରୂପ ମହାରାଜାଙ୍କୁ ଅର୍ପିତ ହୋଇଥିଲା ସେଗୁଡ଼ିକ ମଧ୍ୟରେ ଥିଲା ପଣ୍ଡିତ ଗୋପୀନାଥ ନନ୍ଦଙ୍କ ଜାନକୀଶ ପରିଣୟ, ଓଡ଼ିଆ ଶବ୍ଦତତ୍ତ୍ୱବୋଧ ଅଭିଧାନ, ଓଡ଼ିଆ ଭାଷାତତ୍ତ୍ୱ ପ୍ରଭୃତି ଅନେକ ଗ୍ରନ୍ଥ ସମେତ ଅଦ୍ୱୈତ ଚରଣ ମହାନ୍ତିଙ୍କ ବନ୍ଦୀ ଓଡ଼ିଆ, ହରିବନ୍ଧୁ ବେବର୍ତ୍ତାଙ୍କ ହରିବନ୍ଧୁ ପଦ୍ୟାବଳୀ, ଅପର୍ଣ୍ଣା ପଣ୍ଡାଙ୍କ ଢଗମାଳିକା, ତତ୍ତ୍ୱବୋଧିନୀ ପ୍ରଭୃତି । ମହାରାଜାଙ୍କ ଆର୍ଥିକ ସହାୟତାକ୍ରମେ ମଧ୍ୟ ପ୍ରକାଶ ପାଇଥିଲା ଜଗବନ୍ଧୁ ସିଂହଙ୍କ ପ୍ରାଚୀନ ଉତ୍କଳ ଏବଂ କେଶବ ପଟ୍ଟନାୟକଙ୍କ ନୃତ୍ୟ ରାମାୟଣ ପ୍ରଭୃତି । ପଣ୍ଡିତ ଗୋପୀନାଥ ନନ୍ଦଙ୍କୁ ସାହିତ୍ୟିକ ପ୍ରୋତ୍ସାହନ ତ ସର୍ବାଦୌ ସ୍ମରଣୀୟ ।



Ama Odisha pdf (aamaodisha@gmail.com)

ଏଇ ଜାତିର ସାହିତ୍ୟ ପାଇଁ ଏକ ଅମୂଲ୍ୟ ଗ୍ରନ୍ଥ- ପ୍ରଥମ ପୂର୍ଣ୍ଣାଙ୍ଗ ଅଭିଧାନ- ଓଡ଼ିଆ ଶବ୍ଦତତ୍ତ୍ୱ ଅଭିଧାନର ପ୍ରଣେତା ପଣ୍ଡିତ ଗୋପୀନାଥ ନନ୍ଦ ସେତେବେଳେ ଥିଲେ ପାରଳା କଲେଜର ଓଡ଼ିଆ ତଥା ସଂସ୍କୃତ ଅଧ୍ୟାପକ । ସେହି ଅଭିଧାନର ପାଣ୍ଡୁଲିପି ପ୍ରସ୍ତୁତି ଇତ୍ୟାଦି କାର୍ଯ୍ୟପାଇଁ ଶ୍ରୀଯୁକ୍ତ ନନ୍ଦ କୃତଜ୍ଞତା ପ୍ରକାଶ କରିଥିଲେ- 'ମୁଁ ଏହି ଅଭିଧାନ ଖଣ୍ଡକର ଲେଖକ ମାତ୍ର, କିନ୍ତୁ ଶ୍ରୀମାନ୍ ପାରଳାଧୀଶ୍ୱର ମହାରାଜା ମହୋଦୟ ଏହାର ପରିପୋଷକ ଓ ଜୀବନଦାତା ଅଟନ୍ତି ।''

ସାହିତ୍ୟାନୁରାଗୀ ମହାରାଜା ନିଜ ଉଆସରେ ଏକ ସମୃଦ୍ଧଶାଳୀ ପାଠାଗାର ସ୍ଥାପନ କରିଥିଲେ ଏବଂ ପର ସମୟରେ ତାହାକୁ କଲେଜକୁ ଦାନ କରିଦେଇଥିଲେ । ମହାରାଜାଙ୍କ ୭୮ତମ ଜୟନ୍ତୀ ଅବସରରେ ଓଡ଼ିଆ ଭାଷା ସାହିତ୍ୟ ଜଗତକୁ ମହାରାଜାଙ୍କ ଅବଦାନ ସ୍ମରଣ କରି 'ସମାଜ'ର ଯଥାର୍ଥ ଶ୍ରଦ୍ଧାଞ୍ଜଳି ଥିଲା- 'ବହୁ କବି, କଳାକାର, ସାହିତ୍ୟିକ ଓ ଶିଳ୍ପୀ ତାଙ୍କର ବଦାନ୍ୟତା ଓ ସାହାଯ୍ୟ ଫଳରେ ଓଡ଼ିଶାର ବାଣୀଭଣ୍ଡାରକୁ ସମୃଦ୍ଧ କରିଯାଇଛନ୍ତି ଏବଂ ସାହିତ୍ୟ କ୍ଷେତ୍ରରେ ଆମ୍ଭେମାନେ ସେସବୁ ବିଭବକୁ ଅନ୍ୟ ଆଗରେ ଦେଖାଇ ଗୌରବ ଓ ଗର୍ବରେ ଫୁଲି ଉଠୁଛୁ ।'

ଓଡ଼ିଆ ସାହିତ୍ୟର ପୃଷ୍ଠପୋଷକତା ଭଳି ସଂଗୀତ, କଳା ଏବଂ ସଂସ୍କୃତିର ମଧ୍ୟ ଜଣେ ସକ୍ରିୟ ପୃଷ୍ଠପୋଷକ ଥିଲେ ସେ । ବିଚ୍ଛିନ୍ନାଞ୍ଚଳ ସିଂହଭୂମିରେ ଓଡ଼ିଆ ଭାଷା ସାହିତ୍ୟ ଓ ସଂସ୍କୃତିର ସାମୂହିକ ବିକାଶପାଇଁ ତାଙ୍କର ପାଞ୍ଚ ହଜାର ଟଙ୍କାର ସହାୟତା ତତ୍କାଳୀନ ପ୍ରେକ୍ଷାପଟରେ ଏକ ବିଶେଷ ଉଲ୍ଲେଖଯୋଗ୍ୟ ଘଟଣା । ପାରଳାରେ ଆଧୁନିକ ରଙ୍ଗମଞ୍ଚ ସ୍ଥାପନ କରିବାରେ ଅଗ୍ରଣୀ ଥିଲେ ମହାରାଜା । ଏପରିକି ନଅରର ଅନ୍ତେବାସୀଗଣଙ୍କ ମନୋରଂଜନ ପାଇଁ ରାଜନଅର ମଧ୍ୟରେ ଏକ ଅସ୍ଥାୟୀ ରଂଗମଞ୍ଚ ନିର୍ମାଣ କରାଇଥିଲେ । ପାରଳାରେ ସମୟ ସମୟରେ ସଂଗୀତ ଆସରମାନ ଆୟୋଜନ କରାଇ ଦେଶର ବିଶିଷ୍ଟ ସଂଗୀତ ଶିଳ୍ପୀମାନଙ୍କୁ ନିମନ୍ତ୍ରଣ କରି ଅଣାଉଥିଲେ । ଆପଣା ଦରବାରରେ ମଧ୍ୟ ନିଯୁକ୍ତି ଦେଇଥିଲେ ସଂଗୀତଜ୍ଞ ତଥା ବିଭିନ୍ନ ଯନ୍ତ୍ରସଂଗୀତ ବାଦକଗଣଙ୍କୁ । ଦଶହରା ଅବସରରେ ସହରରେ ଆୟୋଜିତ ପାଇକ ଆଖଡ଼ା ଖେଳରେ ଯୋଗଦେଇ ଖେଳାଳିଗଣଙ୍କୁ ବିଶେଷ ଉତ୍ସାହିତ କରୁଥିଲେ ମହାରାଜା ।

ଏ ସବୁଥିରୁ ରାଜ୍ୟର ପ୍ରଜା ତଥା ସାମଗ୍ରିକ ଭାବରେ ଓଡ଼ିଆମାନଙ୍କ ଉନ୍ନତିକଳ୍ପେ ମହାରାଜାଙ୍କ ଦରଦୀ ହୃଦୟର ଆକଳନ କରାଯାଇପାରେ ।

—୦—



Ama Odisha pdf (aamaodisha@gmail.com)

# କେନ୍ଦ୍ରମଞ୍ଚର କେନ୍ଦ୍ରବିନ୍ଦୁରେ

ବହୁଧା ବିଭାଜିତ ପ୍ରାକୃତିକ ଓଡ଼ିଶାର ଏକୀକରଣ ପରିବର୍ତ୍ତେ ପାରଳା ଗଜପତିଙ୍କ ପ୍ରସ୍ତାବ ଅନୁଯାୟୀ ଉତ୍କଳ ସମ୍ମିଳନୀର ଆଭିମୁଖ୍ୟ ପରିବର୍ତ୍ତିତ ହୋଇଥିଲା । ଓଡ଼ିଆମାନଙ୍କ ଲାଗି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନପାଇଁ ଆନ୍ଦୋଳନ ସମୟକ୍ରମେ ବେଶ୍ ଦାନା ବାନ୍ଧିଥିଲା । କିନ୍ତୁ ସେହି ଧାରାକୁ ମଧ୍ୟ ଅନେକ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଥିଲା, ସେଇ ଉତ୍କଳ ସମ୍ମିଳନୀର ଏକ ପ୍ରଭାବଶାଳୀ ଗୋଷ୍ଠୀ ତଥା ସେତେବେଳେ ତାହାର ମଙ୍ଗ ଧରିଥିବା ଗୋପବନ୍ଧୁଙ୍କ ସମେତ ତାଙ୍କ ସମର୍ଥକମାନଙ୍କର କାର୍ଯ୍ୟକଳାପ ଯୋଗୁଁ । ୧୯୨୦ ମସିହାରେ ବାପୁଜୀଙ୍କ ସହିତ ସଂପର୍କ ସ୍ଥାପନ ପରେ ବାପୁଙ୍କ ଭଳି ଗୋପବନ୍ଧୁଙ୍କର ମଧ୍ୟ ହୃଦ୍‌ବୋଧ ହୋଇଥିଲା ଯେ ଭାରତୀୟ ଜାତୀୟ କଂଗ୍ରେସର ସଂଗ୍ରାମ ଆସନ୍ତା ବର୍ଷକ ମଧ୍ୟରେ ସୁଫଳ ଆଣିଦେବ ନିଶ୍ଚୟ ଏବଂ ଦେଶ ସ୍ୱାଧୀନ ହୋଇଯିବା ପରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଭଳି ଆଞ୍ଚଳିକ ସମସ୍ୟାଗୁଡ଼ିକ ଆପେଆପେ ସ୍ୱାଧୀନ ସରକାରଙ୍କ ଦ୍ୱାରା ସମାହିତ ହୋଇପାରିବ । ତେଣୁ ଜାତୀୟ ଆନ୍ଦୋଳନକୁ ସର୍ବାନ୍ତଃକରଣରେ ସହାୟତା ଦେବା ସଙ୍ଗେସଙ୍ଗେ ସ୍ୱାଧୀନତା ଆନ୍ଦୋଳନକୁ ବେଶ୍ ଦୃଢ଼ କରିବାକୁ ହେବ ସମଗ୍ର ଭାରତର ପୁରପଲ୍ଲୀରେ ।

ଗାନ୍ଧିଜୀଙ୍କ ସେହି ମତରେ ବେଶ୍ ପ୍ରଭାବିତ ହୋଇଯାଇଥିଲେ ପଣ୍ଡିତ ଗୋପବନ୍ଧୁ । ତେଣୁ ସତ୍ୟବାଦୀ ଗୋଷ୍ଠୀ ସହିତ ଗୋପବନ୍ଧୁଙ୍କ ସମର୍ଥକଗଣ କଂଗ୍ରେସର ସଭ୍ୟ ଶ୍ରେଣୀଭୁକ୍ତ ହୋଇ ତାହାର ଜାତୀୟ କାର୍ଯ୍ୟକ୍ରମଗୁଡ଼ିକରେ ସକ୍ରିୟ ଅଂଶଗ୍ରହଣ କରିବା ସହିତ ଉତ୍କଳ ସମ୍ମିଳନୀର କାର୍ଯ୍ୟକଳାପକୁ ଅଧିକ ଗୁରୁତ୍ୱ ଦେଇ ନଥିଲେ ।

ତତ୍‌ପରଠାରୁ ଉତ୍କଳ ସମ୍ମିଳନୀର ନେତୃବର୍ଗଙ୍କ ମଧ୍ୟରେ ଏକ ବିଭାଜନ ସୃଷ୍ଟି ହୋଇଥିଲା କହିଲେ ଚଳେ । ମଧୁବାବୁ ଓ ପାରଳା ମହାରାଜାଙ୍କ ଭଳି ଅନେକ ସମ୍ମିଳନୀ ସଂଗଠକଙ୍କ ହୃଦ୍‌ବୋଧ ହୋଇଥିଲା ଯେ ଅନୁଷ୍ଠାନର ଲକ୍ଷ୍ୟବିନ୍ଦୁ ତଥାପି ଅପହଞ୍ଚ ହୋଇ ରହିଥିବା ଯୋଗୁଁ ସେଥିପାଇଁ ଚାଲିଥିବା ଉଦ୍ୟମରୁ ବିରତି ନେବା ସ୍ପୃହଣୀୟ ନୁହେଁ । ଅପର ପକ୍ଷରେ ସମ୍ମିଳନୀର



Ama Odisha pdf (aamaodisha@gmail.com)

ଆନ୍ଦୋଳନାତ୍ମକ କାର୍ଯ୍ୟକଳାପ ଜାତୀୟ କଂଗ୍ରେସର କାର୍ଯ୍ୟଧାରାରେ କୌଣସି ପ୍ରକାର ପ୍ରତିବନ୍ଧକ ସୃଷ୍ଟି ନକରି ବରଂ ସହାୟକ ହୋଇପାରିବ । ସେହି କାରଣରୁ ସମ୍ମିଳନୀ କଂଗ୍ରେସ ଅନୁଷ୍ଠାନରେ ସଂପୂର୍ଣ୍ଣ ମିଳେଇ ନଯାଇ ତାହାର ସ୍ୱତନ୍ତ୍ର ସତ୍ତା ବଜାୟ ରଖିବା ଆବଶ୍ୟକ । ଏବଂ ପରିଣାମତଃ ପୂର୍ବବତ୍ ଅନୁଷ୍ଠାନ ତରଫରୁ ଆନ୍ଦୋଳନାତ୍ମକ କାର୍ଯ୍ୟକଳାପ ଚାଲୁ ରହିଥିଲା ।

ମାନ୍ଦ୍ରାଜ ପ୍ରଦେଶାନ୍ତର୍ଗତ ବର୍ତ୍ତମାନର ଅବିଭକ୍ତ ଗଞ୍ଜାମ ଅଞ୍ଚଳରେ ସେଇ ଆନ୍ଦୋଳନର ଧାରା ଥିଲା ଅତି ତୀବ୍ର । ତତ୍‌କାଳୀନ ଓଡ଼ିଶାର ଓଡ଼ିଆମାନଙ୍କ ସହିତ ଏକତ୍ର ହୋଇ ରହିବାପାଇଁ ସର୍ବପ୍ରଥମ ସ୍ୱର ଉତ୍ତୋଳନ କରିଥିଲେ ସେମାନେ । ଉତ୍କଳୀୟଙ୍କ ହିତ ସାଧନପାଇଁ କଟକଠାରେ ମଧୁବାବୁ ଓ କର୍ମବୀର ଗୌରୀଶଙ୍କରଙ୍କ ଉଦ୍ୟମରେ ୧୮୮୨ରେ ଗଠିତ ହୋଇଥିଲା ଉତ୍କଳ ସଭା- ଏକ ରାଜନୈତିକ ଅନୁଷ୍ଠାନ । ସମଚିନ୍ତାଧାରାସଂପନ୍ନ ଅନ୍ୟ ଅନୁଷ୍ଠାନ- ଉତ୍କଳ ହିତୈଷିଣୀ ସମାଜ ଗଠିତ ହୋଇଥିଲା ଓଡ଼ିଶା ବାହାରେ ସୁଦୂର ପାରଳାଖେମଣ୍ଡି ସହରରେ ରାଜଭ୍ରାତା ପଦ୍ମନାଭ ଦେବଙ୍କ ଅଧିନାୟକତ୍ୱରେ । ଦକ୍ଷିଣ ବିଚ୍ଛିନ୍ନାଞ୍ଚଳର ଜନଗଣଙ୍କ ଦୁଃଖଦୁର୍ଦ୍ଦଶା ବିଶେଷକରି ଗଂଜାମର ଓଡ଼ିଆ ଜନଗଣଙ୍କ ପ୍ରତି ହେଉଥିବା ଅବିଚାର ଏବଂ ଅବହେଳା ସବୁର ବିସ୍ତୃତ ଆଲୋଚନା ତଥା ପ୍ରତିକାର ପାଇଁ ତତ୍ପର ହୋଇଉଠିଥିଲା ଉତ୍କଳ ହିତୈଷିଣୀ ସମାଜ । ଓଡ଼ିଶା ଡିଭିଜନ୍ ସହିତ ଏକତ୍ର ରହିବାପାଇଁ ବଳବତ୍ତର ଆକାଂକ୍ଷା ପ୍ରତିଫଳିତ ହୋଇଥିଲା ତାହାରି ମାଧ୍ୟମରେ । ତତ୍‌ପରେପରେ ଗଠିତ ହୋଇଥିଲା ଗଂଜାମ ଜାତୀୟ ସମିତି ସେଇ ଏକା ଉଦ୍ଦେଶ୍ୟରେ । ସବୁ ଅନୁଷ୍ଠାନର ମୁଖ୍ୟ ଦାବିଗୁଡ଼ିକ ମଧ୍ୟରେ ପ୍ରାଧାନ୍ୟ ଲାଭ କରିଥିଲା ଗଞ୍ଜାମ ଓ ବିଶାଖାପାଟଣା ମାଳ ଅଞ୍ଚଳଗୁଡ଼ିକର ପ୍ରାକୃତିକ ଓଡ଼ିଶା ସହ ମିଶ୍ରଣପାଇଁ କାର୍ଯ୍ୟପନ୍ଥା ଗ୍ରହଣ । ବ୍ରହ୍ମପୁରଠାରେ ଅନୁଷ୍ଠିତ ତାହାର ପ୍ରଥମ ସମ୍ମିଳନୀରେ ପ୍ରତିଫଳିତ ଜନଉଦ୍ଦୀପନା ହିଁ ମଧୁବାବୁଙ୍କୁ ବିଶେଷଭାବେ ପ୍ରୋତ୍ସାହିତ କରିଥିଲା ବିଚ୍ଛୁରିତ ହୋଇ ରହିଥିବା ସବୁ ଓଡ଼ିଆଙ୍କୁ ଏକତ୍ର କରିବାପାଇଁ ଏକ ବୃହତ୍ତର ଅନୁଷ୍ଠାନ ଗଠନ କରିବା ଲାଗି । ତାହା ଉତ୍କଳ ସମ୍ମିଳନୀ ରୂପେ ଜନ୍ମ ଲାଭ କରିଥିଲା । କେବଳ ଗଂଜାମ / ବିଶାଖପାଟଣା ଅଞ୍ଚଳ ନୁହେଁ, ସମଗ୍ର ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକୀକରଣପାଇଁ ସେହି ଅନୁଷ୍ଠାନ ତୀବ୍ର ଆନ୍ଦୋଳନ ଚଳାଇଥିଲା ।

ସେଭଳି ବେସରକାରୀ ଉଦ୍ୟମ ସାଙ୍ଗକୁ ସରକାରୀ ସ୍ତରରେ ମଧ୍ୟ ଓଡ଼ିଆଭାଷୀ ଅଞ୍ଚଳଗୁଡ଼ିକର ଏକୀକରଣପାଇଁ ଅନୁକୂଳ ମତ ମଧ୍ୟ ପ୍ରକାଶ ପାଇଥିଲା ବିଖ୍ୟାତ୍ ଭାଷାବିଦ୍ ଗ୍ରୀୟରସନ୍‌ଙ୍କ ମତାମତକୁ ଭିତ୍ତିକରି । ସରକାରଙ୍କ ୧୮୯୪-୯୫ ବାର୍ଷିକ ବିବରଣୀ ଅନୁଯାୟୀ ଓଡ଼ିଶା ଅଞ୍ଚଳର କମିଶନର ଦାୟିତ୍ୱରେ ଥିବା ମି. ଏଚ୍.ଜି କୁକ୍ ଆଇ.ସିଏସ୍ ଶାସନଗତ ସୁବିଧା ଦୃଷ୍ଟିରୁ ଗଂଜାମ ସମେତ ସମ୍ବଲପୁର ଅଞ୍ଚଳକୁ ମିଶାଇ ଓଡ଼ିଶା ଡିଭିଜନ୍‌ର ସୀମା ବୃଦ୍ଧି କରାଯିବା ସଂପର୍କରେ ଦୃଢ଼ ମତ ବ୍ୟକ୍ତ କରିଥିଲେ । ୧୮୯୭ ମସିହାରେ ମଧୁବାବୁ ଉତ୍କଳ ସଭା ତରଫରୁ ସେଇ ପ୍ରସ୍ତାବକୁ ଇଂଲଣ୍ଡରେ ଭାରତ ବିଭାଗରେ ଉପସ୍ଥାପିତ କରିବା ସଂଗେସଂଗେ ଭାରତର



Ama Odisha pdf (aamaodisha@gmail.com)

ବଡ଼ଲାଟଙ୍କୁ ମଧ୍ୟ ସେହି ଦିଗରେ ପ୍ରଭାବିତ କରାଇବାପାଇଁ ଉଦ୍ୟମ କରିଥିଲେ । କିନ୍ତୁ ୧୯୦୨ ମସିହାରେ ସେଇ ସମସ୍ତ ପ୍ରସ୍ତାବକୁ ଭାରତ ବିଭାଗ ସଚିବ ପ୍ରତ୍ୟାଖ୍ୟାନ କରି ଦେଇଥିଲେ ସୁଦ୍ଧା ବଡ଼ଲାଟ୍ ଲର୍ଡ଼୍ କର୍ଜନ ଓଡ଼ିଶା ସମସ୍ୟା ପ୍ରତି ସମ୍ବେଦନଶୀଳ ଥିଲେ । ବଡ଼ଲାଟ୍ ଭାବେ ବିଗତ ଶହେ ବର୍ଷର ରେକର୍ଡ଼ ଭଙ୍ଗକରି ସେ ଓଡ଼ିଶା ପରିଭ୍ରମଣରେ ଆସିଥିଲେ । ତତ୍‌ପରେପରେ ତାଙ୍କର ହୃଦ୍‌ବୋଧ ପ୍ରତିଫଳିତ ହୋଇଥିଲା ୧୯୦୩ ମସିହାର ବଙ୍ଗ ବିଭାଜନ / ରିସ୍‌ଲେ ସର୍କୁଲାର ମାଧ୍ୟମରେ । ସବୁ ଓଡ଼ିଆଭାଷୀ ଅଞ୍ଚଳର ଏକୀକରଣ ପ୍ରସ୍ତାବ ସେଥିରେ ରହିଥିଲା ।

ହେଲେ ଅନ୍ୟାନ୍ୟ ପ୍ରସଙ୍ଗକୁ କେନ୍ଦ୍ରକରି ରିସ୍‌ଲେ ସର୍କୁଲାର ବିରୁଦ୍ଧରେ ସାରା ଦେଶରେ ପ୍ରବଳ ଜନମତ ସୃଷ୍ଟି ହୋଇଥିଲା । ପୁଣି ସେହି ବର୍ଷ ଡିସେମ୍ବରରେ ଅନୁଷ୍ଠିତ ଭାରତୀୟ ଜାତୀୟ କଂଗ୍ରେସର ମାନ୍ଦ୍ରାଜ ଅଧିବେଶନରେ ଆଞ୍ଚଳିକ ନେତାଗଣଙ୍କ ଦ୍ୱାରା ପ୍ରଭାବିତ ହୋଇ ଏକ ପ୍ରସ୍ତାବ ଗୃହୀତ ହୋଇଥିଲା ଯେ ମାନ୍ଦ୍ରାଜ ପ୍ରାଦେଶିକ ଶାସନରୁ ଗଂଜାମ ଅଞ୍ଚଳକୁ ବିଚ୍ଛିନ୍ନ କରାନଯାଉ । ତେବେ ରିସ୍‌ଲେ ସର୍କୁଲାରର ଓଡ଼ିଆ ଏକୀକରଣ ମତାମତକୁ ବଙ୍ଗଳାର ଛୋଟ ଲାଟ ପୂରାପୂରି ସମର୍ଥନ କରିଥିଲେ ସୁଦ୍ଧା କେତେକ ସର୍ତ୍ତରେ କେନ୍ଦ୍ର (ମଧ୍ୟ) ପ୍ରାଦେଶିକ ସରକାର ତାହାକୁ ସମର୍ଥନ ଜଣାଇଥିଲେ । କିନ୍ତୁ ମାନ୍ଦ୍ରାଜ ସରକାର ତାହାର ତୀବ୍ର ବିରୋଧ କରିଥିଲେ ୧୯୦୪ ମସିହାରେ । ସେଥିପାଇଁ ଓଡ଼ିଆମାନଙ୍କ ମଧ୍ୟରେ ସୁଦ୍ଧା ତୀବ୍ର ପ୍ରତିକ୍ରିୟା ପ୍ରକାଶ ପାଇଥିଲା । ସେତେବେଳେ ସାରା ଗଂଜାମରେ ତେଲୁଗୁ ରାଜକର୍ମଚାରୀଙ୍କ ସଂପୂର୍ଣ୍ଣ ଆଧିପତ୍ୟ ଥିଲା ଏବଂ ସେମାନଙ୍କ ହୀନ ଚକ୍ରାନ୍ତ ଯୋଗୁଁ ହିଁ ସରକାର ବିଶେଷ ଭାବେ ପ୍ରଭାବିତ ହେଉଥିଲେ । ସେମାନେ ମଝିରେ ମଝିରେ ଅତି କ୍ଷୁଦ୍ର କ୍ଷୁଦ୍ର ଘଟଣାକୁ କେନ୍ଦ୍ରକରି ଓଡ଼ିଆ ବିରୋଧୀ ଆନ୍ଦୋଳନମାନ କରୁଥିଲେ ଗଂଜାମ ଅଞ୍ଚଳରେ । ସ୍ମାରକପତ୍ର ତଥା ସମ୍ବାଦପତ୍ରଗୁଡ଼ିକୁ ସେମାନେ ସେଥିପାଇଁ ମାଧ୍ୟମ ରୂପେ ବ୍ୟବହାର କରୁଥିଲେ । ୧୯୦୫ ଫେବ୍ରୁଆରିରେ ମାନ୍ଦ୍ରାଜ ଗଭର୍ଣ୍ଣର ଲର୍ଡ଼୍ ଏମ୍ପ୍‌ଥିଲ୍ ବ୍ରହ୍ମପୁର ଆସିବା ଅବସରରେ ଟାଉନ୍‌ହଲ୍‌ଠାରେ ସ୍ପଷ୍ଟ ଘୋଷଣା କରିଥିଲେ ଯେ ଗଞ୍ଜାମ ଅଞ୍ଚଳକୁ ମାନ୍ଦ୍ରାଜ ଅଞ୍ଚଳରୁ ବାଦ୍ ଦିଆ ନଯିବାପାଇଁ ସେ ଦୃଢ଼ ଭାବରେ ଭାରତ ସରକାରଙ୍କୁ ଜଣାଇ ଦେଇଅଛନ୍ତି ।

ଓଡ଼ିଆମାନଙ୍କର ଭାଗ୍ୟର ବିଡ଼ମ୍ବନା, ଠିକ୍ ସେତିକିବେଳକୁ ଭାରତର ବଡ଼ଲାଟ୍ ଲର୍ଡ଼୍ କର୍ଜନ ଛୁଟି ନେଇଯିବା ପରେ ତାଙ୍କରି ଦାୟିତ୍ୱରେ ରହିଥିଲେ ଲର୍ଡ଼୍ ଏମ୍ପ୍‌ଥିଲ୍ । ଏବଂ ଆହୁରି ଦୁର୍ଭାଗ୍ୟ, ସେତିକିବେଳକୁ ହିଁ ଓଡ଼ିଆ ସମସ୍ୟାର ଶେଷ ନିଷ୍ପତ୍ତି ପାଇଁ ଫାଇଲ୍ ଯାଇଥିଲା ବଡ଼ଲାଟ୍‌ଙ୍କ ନିକଟକୁ । ସେହି ରେକର୍ଡ଼ପତ୍ରରେ ସମ୍ବଲପୁର ଅଞ୍ଚଳର ଓଡ଼ିଶା ସହ ମିଶ୍ରଣ ପ୍ରସ୍ତାବକୁ ବଡ଼ଲାଟ୍ ହିସାବରେ ଲର୍ଡ଼୍ ଏମ୍ପ୍‌ଥିଲ୍ ସମ୍ମତି ପ୍ରଦାନ କରିଥିଲେ ସୁଦ୍ଧା ଗଂଜାମ ଓ ବିଶାଖ ପାଟଣା ଅଞ୍ଚଳକୁ ମାନ୍ଦ୍ରାଜରୁ ବିଚ୍ଛିନ୍ନ କରାଯାଇ ପାରିବ ନାହିଁ ବୋଲି ଶେଷ ନିଷ୍ପତ୍ତି ରେକର୍ଡ଼ଭୁକ୍ତ କରିଦେଇଥିଲେ । ସେହିକ୍ରମରେ ୧୯୦୫ରେ ସମ୍ବଲପୁର ଏବଂ ତନ୍ନିକଟବର୍ତ୍ତୀ ଅଞ୍ଚଳର ଓଡ଼ିଶା ଡିଭିଜନ୍ ସହିତ



Ama Odisha pdf (aamaodisha@gmail.com)

ମିଶ୍ରଣ ହୋଇପାରିଥିଲା । ତତ୍‌ଫଳରେ ଗଂଜାମର ଓଡ଼ିଆମାନେ ତୀବ୍ର ପ୍ରତିବାଦ କରିବା ସଂଗେସଂଗେ ଏହି ଅଞ୍ଚଳର ପ୍ରକୃତ ଜନମତ ଜାଣିବାପାଇଁ ଗୋଟିଏ କମିଶନ୍ ଗଠନ କରାଯାଉ ବୋଲି ଦାବି କରିଥିଲେ । ତତ୍‌ସହିତ ପ୍ରସ୍ତାବ ମଧ୍ୟ ହୋଇଥିଲା ଯେ ଆବଶ୍ୟକ ହେଲେ ସେଥିପାଇଁ ସମସ୍ତ ଖର୍ଚ୍ଚ ଗଂଜାମବାସୀ ବହନ କରିବେ । ସେଭଳି ଦେଶମିଶ୍ରଣ ଆନ୍ଦୋଳନ କ୍ରମାଗତ ଭାବରେ ଚାଲୁ ରହିଥିଲା ।

ସେଇ ପରିସ୍ଥିତି ଭିତରେ ୧ ୯ ୦ ୫ ମସିହା ଅକ୍ଟୋବରରୁ ଶାସନଗତ ବ୍ୟବସ୍ଥାରେ ପରିବର୍ତ୍ତନ କରାଯାଇ ବଙ୍ଗ-ବିହାର-ଓଡ଼ିଶା ଅଞ୍ଚଳକୁ ଜଣେ ଲେଫ୍‌ଟନାଣ୍ଟ ଗଭର୍ଣ୍ଣରଙ୍କ ଅଧୀନରେ ରଖାଯାଇ ପୂର୍ବବଙ୍ଗ ଓ ଆସାମ ଅଞ୍ଚଳକୁ ସେହିଭଳି ଅନ୍ୟଜଣଙ୍କ ଅଧୀନରେ ରଖାଗଲା । କିନ୍ତୁ ଦକ୍ଷିଣ ବିଚ୍ଛିନ୍ନାଞ୍ଚଳର ବ୍ୟବସ୍ଥା ଥିଲା ଯଥା ପୂର୍ବଂ ତଥା ପରଂ । ସେଭଳି ପରିସ୍ଥିତିରେ ୧ ୯ ୦ ୯ ମସିହାରେ ଗଂଜାମର ଓଡ଼ିଆ ସମାଜ ତରଫରୁ ଏକ ପ୍ରତିନିଧିମଣ୍ଡଳୀ ମାନ୍ଦ୍ରାଜ ଗଭର୍ଣ୍ଣର ସାର୍ ଆର୍‌ଥର ଲାଉଲିଙ୍କୁ ଭେଟି ତେଲ୍‌ଗୁ ଅଧ୍ୟୁଷିତ ଅଞ୍ଚଳଗୁଡ଼ିକୁ ବାଦଦେଇ ଅନ୍ୟାନ୍ୟ ଅଞ୍ଚଳ ସମୂହକୁ ଓଡ଼ିଶା ସହ ମିଶ୍ରଣ ଦାବି ଜଣାଇଥିଲେ । ପୁଣି ବଡ଼ଲାଟ୍ ଲର୍ଡ଼ ହାର୍ଡ଼ିଞ୍ଜିଙ୍କ ସମୟରେ ବଙ୍ଗ-ବିହାର-ଓଡ଼ିଶା ପ୍ରଦେଶର ପୁନର୍ଗଠନ କରାଯାଇ ବିହାର-ଓଡ଼ିଶା ଏକ ନୂତନ ପ୍ରଦେଶ ରୂପେ ୧ ୯ ୧ ୨ ଅପ୍ରେଲ୍ ପହିଲା ଦିନ ଜନ୍ମଲାଭ କରିଥିଲା । ପୁଣି ଥରେ ଉଭୟବଙ୍ଗ ଯୁକ୍ତ ହୋଇ ବଙ୍ଗ ପ୍ରଦେଶ ପୁନର୍ଗଠିତ ହୋଇଥିଲା । ଆସାମକୁ ଜଣେ ମୁଖ୍ୟ କମିଶନରଙ୍କ ଅଧୀନରେ ରଖାଯାଇଥିଲା । କିନ୍ତୁ ତଥାପି ସେତିକିବେଳେ ମଧ୍ୟ ଗଂଜାମବାସୀଙ୍କର ଦାବି ଉପେକ୍ଷିତ ହୋଇ ହିଁ ରହିଯାଇଥିଲା । ତେଣୁ ଉତ୍କଳ ଏକୀକରଣ ଆନ୍ଦୋଳନର ନେତୃତ୍ୱ ନେଉଥିବା ଉତ୍କଳ ସମ୍ମିଳନୀର ଅଷ୍ଟମ ଅଧିବେଶନ ୧ ୯ ୧ ୨ ଏପ୍ରିଲ୍‌ରେ ବ୍ରହ୍ମପୁରଠାରେ ଅନୁଷ୍ଠିତ ହୋଇ ଆସନ୍ତା ବର୍ଷକ ପାଇଁ ତାହାର ସମସ୍ତ କାର୍ଯ୍ୟକ୍ରମ ସେହି ଉପେକ୍ଷିତ ଅଞ୍ଚଳରେ ହିଁ କେନ୍ଦ୍ରୀଭୂତ ହେବା ଲାଗି ସ୍ଥିର ହୋଇଥିଲା ।

ଏସବୁ ସତ୍ତ୍ୱେ ମାନ୍ଦ୍ରାଜର ଗଭର୍ଣ୍ଣରଗଣ ଗଂଜାମବାସୀଙ୍କର ବିଭିନ୍ନ ଦାବି ତଥା ସ୍ମାରକପତ୍ର ସବୁକୁ ଗ୍ରହଣକରି ଶୀତଳ ଭଣ୍ଡାରରେ ସ୍ଥାନିତ କରିଦେଉଥିଲେ ଯେମିତି । ୧ ୯ ୧ ୩ରେ ଗଭର୍ଣ୍ଣର ପ୍ୟାଣ୍ଟ୍‌ଲ୍ୟାଣ୍ଡ ବ୍ରହ୍ମପୁର ଗସ୍ତରେ ଆସିଥିବା ଅବସରରେ ଗଞ୍ଜାମ ଓଡ଼ିଆ ସମାଜ ତରଫରୁ ପ୍ରଦତ୍ତ ଏକ ଅଭିନନ୍ଦନପତ୍ରର ଉତ୍ତର ଦେଇ କହିଥିଲେ ଯେ ପରିସ୍ଥିତିର କିଛି ପରିବର୍ତ୍ତନ ନହେଲେ କିମ୍ବା କିଛି ବିଶେଷ ଗୁରୁତ୍ୱବହନ କରୁଥିବା ନୂତନ ଦାବି ଉପସ୍ଥାପିତ ନହେଲେ ଦକ୍ଷିଣସ୍ଥ ଓଡ଼ିଆ ଅଞ୍ଚଳଗୁଡ଼ିକର ମିଶ୍ରଣ ପ୍ରଶ୍ନ ପୁନରୁତ୍‌ଥିତ ହେବା ସମ୍ଭବ ନୁହେଁ ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ ବିହାର ଓଡ଼ିଶାପ୍ରଦେଶ ଗଠିତ ହେବା ଅବସରରେ ଏହାର ପ୍ରଥମ ଗଭର୍ଣ୍ଣର ଚାର୍ଲସ୍ ବେଲେ ୧ ୯ ୧ ୨ ଜୁଲାଇ ୨ ୨ ତାରିଖ ଦିନ ଏକ ନାଗରିକ ସମ୍ବର୍ଦ୍ଧନା ଅବସରରେ ଓଡ଼ିଆ ଏକୀକରଣ ଦାବି ସମ୍ବଳିତ ଗୋଟିଏ ସ୍ମାରକପତ୍ରର ଉତ୍ତରରେ କହିଥିଲେ ଯେ 'ମୁଁ ଆପଣମାନଙ୍କ ଆଶା ଆକାଂକ୍ଷା ପ୍ରତି ସମ୍ବେଦନଶୀଳ । ଗୋଟିଏ ସରକାର ଅଧୀନରେ



Ama Odisha pdf (aamaodisha@gmail.com)

ତଥା ଏକ ସ୍ୱତନ୍ତ୍ର ପ୍ରଦେଶରେ ସବୁ ଓଡ଼ିଆ ଭାଷାଭାଷୀଙ୍କୁ ମୁଁ ଦେଖିବାକୁ ଇଚ୍ଛାକରେ ।' ତତ୍‌ସହିତ ସେ ପ୍ରତିଶ୍ରୁତି ମଧ୍ୟ ଦେଇଥିଲେ ଯେ ସେଇ ସଂପର୍କରେ ସେ ଭାରତ ସରକାରଙ୍କ ସହିତ ମଧ୍ୟ ଆଲୋଚନା କରିବେ । ଦାୟିତ୍ୱ ଗ୍ରହଣ କରିବା ପରେ ପରେ ସେ ଓଡ଼ିଶା ପରିଭ୍ରମଣରେ ଆସିଥିଲେ ଏବଂ ସେତିକିବେଳେ ପୁରୀ, ସମ୍ବଲପୁର, ବାଲେଶ୍ୱର ଏବଂ ବାରିପଦାଠାରେ ଜନଗଣଙ୍କ ସମ୍ବର୍ଦ୍ଧନା ସହିତ ସେହି ଏକା ପ୍ରକାରର ସ୍ମାରକପତ୍ରମାନ ପାଇଥିଲେ ଏବଂ ସବୁଠି ସେଇ ଏକା ପ୍ରକାରର ଦରଦୀପୂର୍ଣ୍ଣ ବକ୍ତବ୍ୟ ପ୍ରଦାନ କରିଥିଲେ ।

କିନ୍ତୁ ସେଇ ସବୁ ଥିଲା କେବଳ କଥାର କଥା । ତେଣୁ କେବଳ ଗଂଜାମ କିମ୍ବା ଦକ୍ଷିଣର ବିଚ୍ଛିନ୍ନାଞ୍ଚଳ ନୁହେଁ, ବିଚ୍ଛୁରିତ ହୋଇ ରହିଥିବା ସବୁ ଓଡ଼ିଆଙ୍କ ସ୍ୱାତନ୍ତ୍ୟ ରକ୍ଷାପାଇଁ ଯେଉଁ ଏକୀକରଣ ଆନ୍ଦୋଳନ ଆରମ୍ଭ ହୋଇଥିଲା ତାହା ସମୟକ୍ରମେ ସ୍ୱତନ୍ତ୍ର ପ୍ରଦେଶ ଗଠନ ଆନ୍ଦୋଳନରେ ପରିଣତ ହୋଇଗଲା । ଆନ୍ଦୋଳନର ଆଭିମୁଖ୍ୟ ପରିବର୍ତ୍ତନ କରାଇବା ଦିଗରେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ ମହାରାଜା କୃଷ୍ଣଚନ୍ଦ୍ର । ୧୯୧୩ ମସିହାରେ ସେ ଗାଦି ଆସୀନ ହେବା ପରେ ପରେ ୧୯୧୪ରେ ପାରଳାରେ ଅନୁଷ୍ଠିତ ହୋଇଥିଲା ଉତ୍କଳ ସମ୍ମିଳନୀ । ସେତିକିବେଳକୁ ତାହାର ମଙ୍ଗ ଧରିଥିଲେ ପଣ୍ଡିତ ଗୋପବନ୍ଧୁ । ମଧୁବାବୁଙ୍କ ହାତରୁ ଆପେଆପେ ଯେମିତି ସମ୍ମିଳନୀର ଦାୟିତ୍ୱ ଚାଲି ଆସିଥିଲା ତାଙ୍କରି ହାତକୁ । ସେତେବେଳେ ବାସ୍ତବରେ ତାହାଙ୍କ ହୃଦୟର ଭାଷା ଏବଂ ସ୍ଫୁରିତ ଭାଷଣ ମଧ୍ୟରେ କୌଣସି ତଫାତ୍ ରହୁ ନଥିଲା । ନଥିଲା ଉତ୍କଳୀୟ ଜାତୀୟ ଭାବ ଚେତନାରେ ଆବିଳତା । ହେଲେ ବାପୁଜୀଙ୍କଦ୍ୱାରା ପ୍ରଭାବିତ ହୋଇ ଏବଂ ୧୯୨୦ରେ ନାଗପୁର କଂଗ୍ରେସ ଅଧିବେଶନରେ ବିଖ୍ୟାତ ଅସହଯୋଗ ଆନ୍ଦୋଳନ ସହିତ 'ଭାଷାଭିତ୍ତିରେ ପ୍ରଦେଶ ଗଠନ ଆବଶ୍ୟକ' ପ୍ରସ୍ତାବ ଗୃହୀତ ହେବା ପରେପରେ ଗୋପବନ୍ଧୁଙ୍କ ବିଶ୍ୱାସ ଦୃଢ଼ ହୋଇଥିଲା ଯେ କଂଗ୍ରେସ ଏଣିକି ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନପାଇଁ ମଧ୍ୟ ପ୍ରୟାସ କରିବ । ସେହି କାରଣରୁ ସେହି ବର୍ଷ ଶେଷରେ ଶ୍ରୀ ଜଗବନ୍ଧୁ ସିଂହଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀର ଅଧିବେଶନରେ ଗୋପବନ୍ଧୁ ପ୍ରସ୍ତାବଟିଏ ଆଗତ କରିଥିଲେ ଯେ ଜାତୀୟ କଂଗ୍ରେସର ଆଦର୍ଶ, ଲକ୍ଷ୍ୟ ଏବଂ ଉଦ୍ଦେଶ୍ୟ ସହିତ ସମ୍ମିଳନୀର ଆଦର୍ଶ, ଲକ୍ଷ୍ୟ ଏବଂ ଉଦ୍ଦେଶ୍ୟ ମଧ୍ୟରେ ସାମ୍ୟ ଥିବା ଯୋଗୁଁ ଏହା ବୃହତ୍ ତଥା ଜାତୀୟ ସ୍ତରର ଅନୁଷ୍ଠାନ- ଜାତୀୟ କଂଗ୍ରେସ ସହିତ ଅଙ୍ଗୀଭୂତ ହେଉ । ସେହି ପ୍ରସ୍ତାବ ସେଠାରେ ଗୃହୀତ ହୋଇଯିବା ଥିଲା ସ୍ୱାଭାବିକ । ଏବଂ ପରିଣାମତଃ ତାହା ସେବେଠାରୁ ହୋଇଯାଇଥିଲା ଭାରତୀୟ ଜାତୀୟ କଂଗ୍ରେସର ଅଂଶବିଶେଷ ।

ତାର ପରିଣାମ ହୋଇଥିଲା ସମ୍ମିଳନୀର ନେତୃବର୍ଗଙ୍କ ମଧ୍ୟରେ ଏକ ବିଭାଜନ । ମୁଖ୍ୟତଃ ଯେଉଁ ରାଜା ଜମିଦାରଗଣଙ୍କୁ ନେଇ ଏହି ସଂଗଠନ ସମୃଦ୍ଧ ହୋଇଥିଲା ସେମାନଙ୍କ ସମେତ ଗୌରୀଶଙ୍କର, ମଧୁବାବୁ, ବ୍ରଜସୁନ୍ଦର ଦାସ, ଶଶିରଥ, ପାରଳା ମହାରାଜା, ଗୋପାଳ



Ama Odisha pdf (aamaodisha@gmail.com)

ପ୍ରହରାଜ, ବିଶ୍ୱନାଥ ମିଶ୍ର ପ୍ରମୁଖ ଥିଲେ ସମ୍ମିଳନୀର କାର୍ଯ୍ୟକଳାପକୁ ବଜାୟ ରଖାଯିବା ସପକ୍ଷରେ । କଂଗ୍ରେସରେ ଯୋଗଦେଇଥିବା ଗୋଷ୍ଠୀରେ ଥିଲେ ଗୋପବନ୍ଧୁ ଏବଂ ସତ୍ୟବାଦୀର ପ୍ରମୁଖ ସହଯୋଗୀଗଣଙ୍କ ସମେତ ବିଶ୍ୱନାଥ ଦାସ ପ୍ରମୁଖ ନେତୃବୃନ୍ଦ । ଅପର ଗୋଷ୍ଠୀଠାରୁ ଏମାନେ ସଂଖ୍ୟାଧିକ ଥିଲେ ନିଶ୍ଚୟ । ଏଭଳି ବିଭାଜନ ଯୋଗୁଁ ବାସ୍ତବରେ ସମ୍ମିଳନୀର ବାର୍ଷିକ ଅଧିବେଶନଗୁଡ଼ିକ ଆଉ ଧାରାବାହିକ ତଥା ନିୟମିତ ଭାବେ ଅନୁଷ୍ଠିତ ହୋଇ ପାରି ନଥିଲା । ମୂଳ ଅନୁଷ୍ଠାନର ସାବଲୀଳ ପ୍ରବହମାନଧାରା ସେହିଠାରୁ ବ୍ୟାହତ ହୋଇଥିଲା କହିଲେ ଅତ୍ୟୁକ୍ତି ହେବନାହିଁ ।

ସମ୍ମିଳନୀର ଅବଧାରିତ ଲକ୍ଷ୍ୟବିନ୍ଦୁ ତଥାପି ଅନେକ ଦୂରରେ ରହିଥିବା ଯୋଗୁଁ ସେଠାରେ ପହଞ୍ଚିବା ପାଇଁ ଆହୁରି ଅଧିକ ଦୃଢ଼ ଆନ୍ଦୋଳନ ଆବଶ୍ୟକ ବୋଲି ଯେଉଁମାନେ ମତ ପୋଷଣ କରିଥିଲେ ସେମାନଙ୍କ ନେତୃତ୍ୱ ପ୍ରାୟ ସେବେଠାରୁ ଗ୍ରହଣ କରିଥିଲେ ମହାରାଜା କୃଷ୍ଣଚନ୍ଦ୍ର । ନିର୍ଦ୍ଧାରିତ ଲକ୍ଷ୍ୟ ବିନ୍ଦୁରେ ପହଞ୍ଚିବା ପର୍ଯ୍ୟନ୍ତ ସେ ସେଥିରୁ ଆଉ ଅବ୍ୟାହତି ନେଇ ନଥିଲେ । ଉଲ୍ଲେଖଯୋଗ୍ୟ ଯେ ମଧୁବାବୁଙ୍କ ଭଳି ମହାରାଜାଙ୍କ ମଧ୍ୟ ସମମତ ହିଁ ଥିଲା । ଉତ୍କଳ ସମ୍ମିଳନୀର ଦ୍ୱିତୀୟ ଅଧିବେଶନରେ ମଧୁବାବୁଙ୍କ ଉଦ୍‌ଘୋଷଣା ଥିଲା ‘‘ଉତ୍କଳ ଜନନୀ ଭାରତଜନନୀଙ୍କଠାରୁ ବିଚ୍ଛିନ୍ନ ନୁହନ୍ତି । ସେ ଭାରତ ଜନନୀଙ୍କ ସପତ୍ନୀ କିମ୍ବା ଶତ୍ରୁ ନୁହନ୍ତି । ଉତ୍କଳ ଜନନୀ ଆଜି ଅତି ସ୍ନେହମୟୀ ମୂର୍ତ୍ତିରେ ଆମ୍ଭମାନଙ୍କ ସମ୍ମୁଖରେ ଉପସ୍ଥିତ ହୋଇଛନ୍ତି । ଏହି ମୂର୍ତ୍ତି ଭାରତମାତାଙ୍କର ଗୋଟିଏ ମୂର୍ତ୍ତି ବିଶେଷ । ଏହି ରୂପଟି ଭାରତମାତାଙ୍କର ଗୋଟିଏ ଅବତାର ।’’ ତେଣୁ ସ୍ୱାଭାବିକ ଭାବେ ଏହି ଭାବ ପ୍ରକାଶପାଇଥିଲା ଯେ ଏହି ଅବତାରଟିର ସମୃଦ୍ଧିରେ ଭାରତମାତାଙ୍କର ସମୃଦ୍ଧି ଅଧିକତର ଭାବରେ ହେବା ସ୍ୱାଭାବିକ । ଠିକ୍ ସେହି ମତ ମଧ୍ୟ ଥିଲା ପାରଳା ଗଜପତି ମହାରାଜାଙ୍କର । ଗୋଟିଏ ସାଧାରଣ ସଭାରେ ତାଙ୍କର ବକ୍ତବ୍ୟ ଥିଲା, ‘‘ହଁ ଆମେ ଭାରତମାତାଙ୍କ ସ୍ୱାଧୀନତା କ୍ଷେତ୍ରରେ ଅବତରଣ କରିବା ଯେତେବେଳେ ଆମ ଉତ୍କଳ ମାତାର ବିଖଣ୍ଡିତ ଅଙ୍ଗ ଏକତ୍ରିତ ହୋଇ ସେ ମୃତ ସଂଜୀବନୀ ମନ୍ତ୍ରରେ ସଂଜୀବିତ ହେବେ । ଆମେ ତ ପିତୃଶ୍ରାଦ୍ଧରେ ପ୍ରଥମେ ମାତାଙ୍କୁ ପିଣ୍ଡ ଦେଇସାରି ତା’ପରେ ପିତାମହୀଙ୍କ ପାଇଁ ପିଣ୍ଡଦାନକରୁ ।’’

ସେହି ଆନ୍ତରିକ କାମନାର ସଫଳ ରୂପାୟନ ପାଇଁ ଉଦ୍ୟମରତ ରହିଥିଲେ ମହାରାଜା । ଇତି ମଧ୍ୟରେ ଇଂଲଣ୍ଡର ହାଉସ୍ ଅଫ୍ କମନ୍‌ସରେ ଭାରତ ବିଭାଗ ଉପସଚିବ ଲର୍ଡ଼ ମଣ୍ଟେଗୁଙ୍କ ମନ୍ତବ୍ୟ ଥିଲା ଅତୀବ ଗୁରୁତ୍ୱପୂର୍ଣ୍ଣ । ୧୯୧୭ ମସିହାରେ ଥରେ ଭାରତୀୟ ମୁକ୍ତି ସଂଗ୍ରାମ ସଂପର୍କରେ ସେ ମନ୍ତବ୍ୟ ରଖିଥିଲେ ଯେ ଭାରତର ସ୍ୱାୟତ୍ତ ଶାସନ ପରିବର୍ତ୍ତେ ଆଉ କିଛି ନୂତନ ରାଜ୍ୟ / ପ୍ରଦେଶ ଗଠିତ ହୋଇ ସେସବୁକୁ ଆଂଶିକ ସ୍ୱାୟତ୍ତ ଶାସନ ପ୍ରଦତ୍ତ ହେବା ଅଧିକ ଉପାଦେୟ ହେବ । ତତ୍‌ପରେପରେ ସେ ଭାରତ ବିଭାଗ ସଚିବ ହୋଇଥିଲେ । ଭାରତୀୟ ଜନଗଣଙ୍କ ରାଜନୈତିକ ଦୁଃସ୍ଥିତି ତଥା ଶାସନ ସଂସ୍କାର ଲାଗି ପରାମର୍ଶ ଦେବାପାଇଁ ଏକ



Ama Odisha pdf (aamaodisha@gmail.com)

କମିଟି ଗଠିତ ହୋଇଥିଲା ମଣ୍ଟେଗୁ ଏବଂ ଲର୍ଡ଼ ଚେମ୍ସ ଫୋର୍ଡ଼ଙ୍କୁ ନେଇ । ଉକ୍ତ କମିଟିକୁ ୧୯୧୭ ଡିସେମ୍ବର ମାସରେ ମଧୁବାବୁ ଏବଂ ବିହାର ଓଡ଼ିଶା ପ୍ରଦେଶର ଜଣେ ମନ୍ତ୍ରୀ- କନିକା ରାଜା ସାହେବ ଉତ୍କଳ ସମ୍ମିଳନୀ ତରଫରୁ ଏକ ବିସ୍ତୃତ ସ୍ମାରକପତ୍ର କଲିକତାଠାରେ ପ୍ରଦାନ କରିଥିଲେ । କିନ୍ତୁ ୧୯୧୮ରେ ପ୍ରକାଶିତ ସେମାନଙ୍କ ସୁପାରିଶରେ ସ୍ପଷ୍ଟ ଉଲ୍ଲେଖ ଥିଲା ଭାଷା କିମ୍ବା ଜାତିଗତ ଦୃଷ୍ଟିକୋଣରୁ ପ୍ରଦେଶଗୁଡ଼ିକର ବିଭାଜନ ସମ୍ଭବ ନୁହେଁ । ତେବେ ଓଡ଼ିଶା ଏକ ଉପ-ପ୍ରଦେଶ ରୂପେ ଗଠନର ସମ୍ଭାବନା ସେଥିରେ ପ୍ରକାଶ ପାଇଥିଲା ।

ସେଇ ଶାସନ ସଂସ୍କାର ସୁପାରିଶରେ ପ୍ରାଦେଶିକ ବିଧାନସଭାପାଇଁ ପ୍ରତିନିଧି ନିର୍ବାଚିତ ହେବାଲାଗି ବ୍ୟବସ୍ଥା ରହିଥିଲା । ବିହାର ଓଡ଼ିଶା ବିଧାନସଭାର ୮୦ ଜଣ ସଦସ୍ୟଙ୍କ ମଧ୍ୟରୁ ଓଡ଼ିଶାପାଇଁ ୨୫ ଜଣ ଏବଂ କେନ୍ଦ୍ରପାଇଁ ତିନିଜଣ ସଭ୍ୟଙ୍କ ଲାଗି ଉତ୍କଳ ସମ୍ମିଳନୀ ଦାବି ଜଣାଇଥିଲା । କିନ୍ତୁ ସେଥିରେ ବିଧାନସଭାପାଇଁ ମାତ୍ର ୧୦ ଜଣ ସଭ୍ୟଙ୍କ ଲାଗି ସୁପାରିଶ ହୋଇଥିଲା । ସେହିଭଳି ସଂଗଠନ ତରଫରୁ ମାନ୍ଦ୍ରାଜ ବିଧାନସଭାପାଇଁ ଓଡ଼ିଆ ଅଞ୍ଚଳରୁ ଛଅଟି, ବଙ୍ଗ ତଥା କେନ୍ଦ୍ର ପ୍ରଦେଶପାଇଁ ଗୋଟିଏ ଲେଖାଏଁ ଆସନ ଦାବି ହୋଇଥିବା ବେଳେ ଶେଷୋକ୍ତ ପ୍ରଦେଶ ଦୁଇଟିପାଇଁ ଆଦୌ ସ୍ଥାନ ସଂରକ୍ଷଣ ସୁପାରିଶ ହୋଇନଥିଲା । ସେତେବେଳେ ବିହାର ଓଡ଼ିଶା ସରକାରଙ୍କର ମୋଟ ପାଞ୍ଚଟି ଡିଭିଜନ ମଧ୍ୟରୁ ଓଡ଼ିଶାରେ ଥିଲା ଗୋଟିଏ ଏବଂ ସେଥିରେ ଥିଲା କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର ଏବଂ ଅନୁଗୋଳ- ଏହି ପାଞ୍ଚଟି ଜିଲ୍ଲା ।

ଏଣେ ପାରଳାର ଉତ୍କଳ ହିତୈଷିଣୀ ସମାଜ ତରଫରୁ ମହାରାଜାଙ୍କ ନେତୃତ୍ୱରେ ମାନ୍ଦ୍ରାଜଠାରେ ସେଭଳି ଜନମତ ସଂଗ୍ରହ କରୁଥିବା କମିଟି ନିକଟରେ ଏକ ସ୍ମାରକପତ୍ର ପ୍ରଦତ୍ତ ହୋଇଥିଲା । ସେଥିରେ ମାନ୍ଦ୍ରାଜ ବିଧାନସଭାର ୧୨୦ଟି ଆସନରୁ ଓଡ଼ିଆଙ୍କ ପାଇଁ ଦାବି କରାଯାଇଥିଲା ୧୦ଟି ଆସନର ସଂରକ୍ଷଣ । ସେଥିରେ ଅନ୍ତର୍ଭୁକ୍ତ ଥିଲା ଦୁଇଟି ଆସନ ଜମିଦାରଙ୍କପାଇଁ । ପୁଣି କେନ୍ଦ୍ର ସଭାରେ ସେହି ଅଞ୍ଚଳର ଓଡ଼ିଆ ପ୍ରତିନିଧିମାନଙ୍କପାଇଁ ସ୍ୱତନ୍ତ୍ର ବିଚାର କରିବାକୁ ପାରଳା ଗଜପତି କମିଟିକୁ ସ୍ମରଣ କରାଇଦେଇଥିଲେ । ମହାରାଜାଙ୍କ ପ୍ରେରଣାରେ ସେହିଭଳି ଗଞ୍ଜାମ ଜିଲ୍ଲା ଓଡ଼ିଆ ସଭା ତରଫରୁ ମଧ୍ୟ ଅନୁରୂପ ଭାବେ ସ୍ମାରକପତ୍ର ପ୍ରଦାନ କରାଯାଇଥିଲା । ତେବେ 'ଓଡ଼ିଆ'ମାନଙ୍କ ପରିବର୍ତ୍ତେ ଗଂଜାମ ଜିଲ୍ଲାରୁ ମାନ୍ଦ୍ରାଜ ବିଧାନସଭାରେ ମାତ୍ର ଦୁଇଜଣ ସଭ୍ୟଙ୍କ ପ୍ରତିନିଧିତ୍ୱପାଇଁ ସୁପାରିଶ ହୋଇଥିଲା ।

ତାହାର ତୀବ୍ର ପ୍ରତିବାଦ ତ ହୋଇଥିଲା; ୧୯୧୯ ଶାସନ ସଂସ୍କାର ଆଇନ ଦେଶରେ ଲାଗୁ ହେବା ପରେ ପରେ ତାହାରି ସୁପାରିଶ ଭିତ୍ତିରେ ଓଡ଼ିଆ ଭାଷୀ ଅଞ୍ଚଳଗୁଡ଼ିକର ଏକୀକରଣ କରାଯାଇ ଏକ ଉପ-ପ୍ରଦେଶ ଗଠନପାଇଁ ଆନ୍ଦୋଳନ ଏବଂ ଦାବି ଦୃଢ଼ତର ହୋଇଥିଲା । ମହାରାଜା କୃଷ୍ଣଚନ୍ଦ୍ରଙ୍କ ଉଦ୍ୟମ, ନେତୃତ୍ୱ ଏବଂ ସଭାପତିତ୍ୱରେ ବ୍ରହ୍ମପୁର ସହରରେ ୧୯୨୦ ଜାନୁଆରି ୨୮ ତାରିଖ ଦିନ ଏକ ବିରାଟ ସାଧାରଣ ସଭା ଆୟୋଜିତ ହୋଇ ସେହି ଦାବି



Ama Odisha pdf (aamaodisha@gmail.com)




୧୯୩୬ ପୂର୍ବର ଓଡ଼ିଶା



Ama Odisha pdf (aamaodisha@gmail.com)

ସଂପର୍କରେ ସ୍ପଷ୍ଟ ମତ ପ୍ରକାଶ ପାଇଥିଲା ଏବଂ ମାନ୍ଦ୍ରାଜ ବିଧାନସଭାରେ ଗଂଜାମ ଅଞ୍ଚଳରୁ ଅଧିକ ଆସନପାଇଁ ମଧ୍ୟ ଦାବି କରାଯାଇଥିଲା । ଗଞ୍ଜାମର ଅନ୍ୟାନ୍ୟ ଅଞ୍ଚଳରେ ମଧ୍ୟ ଅନୁରୂପ ଭାବେ ଜନମତ ପ୍ରକାଶ ପାଇଥିଲା । ପାରଳାରେ ମହାରାଜାଙ୍କ ପୃଷ୍ଠପୋଷକତାରେ କାର୍ଯ୍ୟରତ ଉତ୍କଳ ହିତୈଷିଣୀ ସମାଜର ଏକ ମୁକ୍ତ ଅଧିବେଶନରେ ସେଇ ଏକା ମତ– ସମସ୍ତ ଓଡ଼ିଆଭାଷୀ ଅଞ୍ଚଳର ଏକୀକରଣ ଏବଂ ମାନ୍ଦ୍ରାଜ ବିଧାନ ସଭାରେ ଗଂଜାମବାସୀଙ୍କପାଇଁ ଅଧିକ ଆସନ ଦାବି କରି ପ୍ରସ୍ତାବମାନ ଗୃହୀତ ହୋଇଥିଲା ୧୯୨୦ ମସିହା ମାର୍ଚ୍ଚ ୧୫ ତାରିଖ ଦିନ । ପୂର୍ବରୁ ଉତ୍କଳ ସମ୍ମିଳନୀ ତରଫରୁ ବିଧାନସଭାଗୁଡ଼ିକରେ ତଥା କେନ୍ଦ୍ରୀୟ ବିଧାନ ପରିଷଦରେ ସେହି ପ୍ରଶ୍ନର ଉତ୍‌ଥାପନ / ଆଲୋଚନା ଲାଗି  ବିଭିନ୍ନ ଉଦ୍ୟମ କରାଯାଇଥିଲା । ପରିଣାମତଃ କେନ୍ଦ୍ରୀୟ ବିଧାନ ପରିଷଦରେ ବିହାର ସଦସ୍ୟ ଶ୍ରୀସଚ୍ଚିଦାନନ୍ଦ ସିହ୍ନା ସେହି ଦାବି ଉପସ୍ଥାପନ କରିଥିଲେ ୧୯୨୦ ଫେବ୍ରୁଆରି ୨୦ ତାରିଖ ଦିନ । ତାହାକୁ କନିକା ରାଜାଙ୍କ ସମେତ ଶ୍ରୀ ସୁରେନ୍ଦ୍ର ନାଥ ବାନାର୍ଜୀ, ସାର୍ ଦିନେଶ୍ ଇ.ଓ୍ୱାଚା, କାମିନୀ କୁମାର ଚାନ୍ଦ୍ ପ୍ରମୁଖ ଦୃଢ଼ ସମର୍ଥନ କରିଥିଲେ । କିନ୍ତୁ ମାନ୍ଦ୍ରାଜର ପ୍ରତିନିଧି ଶ୍ରୀ ବି.ଏନ୍.ଶର୍ମା ଉକ୍ତ ପ୍ରସ୍ତାବକୁ ଆଂଶିକ ସମର୍ଥନ ଦେଇ ମତ ପ୍ରକାଶ କରିଥିଲେ ଯେ କେବଳ ବିହାର–ଓଡ଼ିଶାରେ ଥିବା ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ନେଇ ସ୍ୱତନ୍ତ୍ର ପ୍ରଦେଶ ଗଠିତ ହେବା ଆବଶ୍ୟକ । ୧୯୨୧ ମସିହା ସେପ୍ଟେମ୍ବର ୨୧ ତାରିଖରେ ଏ.ବି.ଲାଠେ ଚାରୋଟି ପ୍ରାଦେଶିକ ଶାସନରେ ବିଭାଗୀକୃତ ହୋଇ ରହିଥିବା ଓଡ଼ିଆଭାଷୀ ଅଞ୍ଚଳର ଉଦାହରଣ ଦେଇ ଭାଷା ସୂତ୍ରରେ ପ୍ରଦେଶ ପୁନର୍ଗଠପାଇଁ ପ୍ରସ୍ତାବ ଆଗତ କରିଥିଲେ । କିନ୍ତୁ ସଂପୃକ୍ତ ରାଜ୍ୟ ସରକାରଙ୍କଠାରୁ ସେଭଳି ପ୍ରସ୍ତାବ ନଆସିଲେ କେନ୍ଦ୍ର ସରକାର କୌଣସି ରାଜ୍ୟର ସୀମା ସରହଦରେ ପରିବର୍ତ୍ତନ କରି ପାରିବେ ନାହିଁ ବୋଲି ସରକାରୀ ଉତ୍ତର ମିଳିଥିଲା ।

ସେହି କାରଣରୁ ପ୍ରାଦେଶିକ ସ୍ତରରେ ଆବଶ୍ୟକୀୟ ସଫଳ ପଦକ୍ଷେପମାନ ନେବା ଲାଗି ଉଦ୍ୟମ କରାଯାଇଥିଲା । ବିଭାଜିତ ଉତ୍କଳ ସମ୍ମିଳନୀର ସଂଖ୍ୟାଲଘୁ ଗୋଷ୍ଠୀ ମହାରାଜା କୃଷ୍ଣଚନ୍ଦ୍ରଙ୍କ ଉଦ୍ୟମରେ ସେଥିପାଇଁ ଯଥାସାଧ୍ୟ ପ୍ରୟାସ କରିଥିଲେ । ୧୯୨୧ ମସିହା ନଭେମ୍ବର ୨୫ରେ ବିହାର ଓଡ଼ିଶା ବିଧାନସଭାରେ ଶ୍ରୀବିଶ୍ୱନାଥ କର ଏକ ପ୍ରସ୍ତାବ ଆଗତ କରିଥିଲେ, ଚାରୋଟି ପ୍ରଦେଶସ୍ଥିତ ଓଡ଼ିଆ ଅଞ୍ଚଳ ସବୁକୁ ଏକତ୍ର କରାଯାଇ ଏକ ଶାସନାଧୀନ କରାଯିବାପାଇଁ । ସେତେବେଳେ ମଧୁବାବୁ ଥିଲେ ସେଠାରେ ସ୍ୱାୟତ୍ତ ଶାସନ ବିଭାଗର ମନ୍ତ୍ରୀ ଏବଂ ଦଶଜଣ ଓଡ଼ିଶାର ସଦସ୍ୟ । ସେମାନଙ୍କ ସମେତ ଉକ୍ତ ପ୍ରସ୍ତାବକୁ ବିହାରର ଅନେକ ସଭ୍ୟ ମଧ୍ୟ ସମର୍ଥନ ଜଣାଇଥିଲେ । ସେହି ପ୍ରସ୍ତାବ ଉପରେ ସରକାର ମତ ଦେଇଥିଲେ, ସେଥିପାଇଁ ଅନ୍ୟାନ୍ୟ ପ୍ରାଦେଶିକ ଶାସନାନ୍ତର୍ଗତ ଓଡ଼ିଆମାନଙ୍କ ମତାମତ ତଥା ସରକାରୀ ମତାମତ ମଧ୍ୟ ଜାଣିବା ନିହାତି ଆବଶ୍ୟକ ।



Ama Odisha pdf (aamaodisha@gmail.com)

ହେଲେ ପରିସ୍ଥିତି ଥିଲା ଭିନ୍ନ ପ୍ରକାରର । ବଙ୍ଗ ତଥା କେନ୍ଦ୍ର (ମଧ୍ୟ) ପ୍ରଦେଶର ବିଧାନ ସଭାରେ ଓଡ଼ିଆମାନଙ୍କ ପାଇଁ ସ୍ଥାନ ସଂରକ୍ଷଣ ହୋଇ ନଥିଲା । ନଗଣ୍ୟ ସଂଖ୍ୟକ ଓଡ଼ିଆ ସଦସ୍ୟଯୁକ୍ତ ମାନ୍ଦ୍ରାଜ ସରକାରଙ୍କ କଥା ନକହିଲେ ଭଲ । ପ୍ରଥମରୁ ହିଁ ସେମାନେ ଓଡ଼ିଆ ବିରେଧୀ ମନୋଭାବ ପୋଷଣ କରି ଆସୁଥିଲେ । ପୂର୍ବରୁ ସେଠାରେ ଓଡ଼ିଆ ସଭ୍ୟ ବିଧାନସଭାରେ ଗଂଜାମର ଓଡ଼ିଆ ଅଞ୍ଚଳଗୁଡ଼ିକୁ ବିହାର-ଓଡ଼ିଶା ସହ ଯୁକ୍ତ କରାଯିବା ନେଇ ଏକ ପ୍ରସ୍ତାବ ଆଗତ କରିଥିଲେ । କିନ୍ତୁ ତାହା ଏକ ଜନସ୍ୱାର୍ଥହାନିକାରକ ପ୍ରସ୍ତାବ ବୋଲି ଯୁକ୍ତିକରି ଏବଂ ପୁଣି ତାହା ସ୍ଥାନୀୟ ପ୍ରାଦେଶିକ ସରକାରଙ୍କ ବିଚାର ପରିସରଭୁକ୍ତ ନୁହେଁ ବୋଲି ଅବାନ୍ତର ଯୁକ୍ତି ଦେଖାଇ ଗଭର୍ଣ୍ଣର ସେହି ପ୍ରସ୍ତାବକୁ ନାକଚ କରିଦେଇଥିଲେ ।

ତଥାପି କେନ୍ଦ୍ର ସରକାର ସେମାନଙ୍କ ଶାସନାନ୍ତର୍ଗତ ଓଡ଼ିଆମାନଙ୍କର ମତାମତ ତଥା ବାସ୍ତବ ସ୍ଥିତି ଅନୁଧ୍ୟାନ କରି ରିପୋର୍ଟ ଦେବାପାଇଁ ସଂପୃକ୍ତ ପ୍ରାଦେଶିକ ସରକାରଙ୍କୁ ପତ୍ର ଲେଖିଥିଲେ । ୧ ୯ ୨ ୨ ମସିହାରେ ସେଭଳି ଯେଉଁ ମତାମତ ସବୁ କେନ୍ଦ୍ର ପାଇଥିଲା ସେଥି ମଧ୍ୟରେ ସବୁଠାରୁ ନୈରାଶ୍ୟଜନକ ଥିଲା ମାନ୍ଦ୍ରାଜ ସରକାରଙ୍କର । କୌଣସି ଓଡ଼ିଆ ଅଞ୍ଚଳକୁ ତାଙ୍କରି ଶାସନରୁ ବିଚ୍ଛିନ୍ନ କରିବେ ନାହିଁ ବୋଲି ମାନ୍ଦ୍ରାଜ ସରକାର ଜଣାଇ ଦେଇଥିଲେ । ପୁଣି ମେଦିନାପୁର ଅଞ୍ଚଳପାଇଁ ବଙ୍ଗ ସରକାରଙ୍କ ମତାମତ ମଧ୍ୟ ସେହିଭଳି ଉତ୍ସାହପ୍ରଦ ନଥିଲା । ଖଡ଼ିଆଳ ଅଞ୍ଚଳ ବ୍ୟତୀତ ଅନ୍ୟାନ୍ୟ ଓଡ଼ିଆ ଅଧ୍ୟୁଷିତ ଅଞ୍ଚଳ ସବୁକୁ ବିଚ୍ଛିନ୍ନ କରିବାପାଇଁ ମଧ୍ୟପ୍ରଦେଶ ସରକାର ମଧ୍ୟ ଆଗ୍ରହୀ ନଥିଲେ । ମୋଟାମୋଟି ଏହା ହିଁ ଥିଲା ବିଭିନ୍ନ ଆଞ୍ଚଳିକ ସରକାରଙ୍କ ମତାମତ ।

ତଥାପି ମହାରାଜାଙ୍କଦ୍ୱାରା ପ୍ରଚୋଦିତ ହୋଇ ଗଂଜାମ ଓଡ଼ିଆ ସମାଜ ତରଫରୁ ଏକ ପ୍ରତିନିଧିଦଳ ମାନ୍ଦ୍ରାଜ ଗଭର୍ଣ୍ଣରଙ୍କୁ ୧ ୯ ୨ ୨ ନଭେମ୍ବର ୨ ୭ ତାରିଖ ଦିନ ସାକ୍ଷାତ୍ କରି ସେଠିକାର ସଂଖ୍ୟାଲଘୁ ଓଡ଼ିଆ ଭାଷୀ ଲୋକଙ୍କର ଓଡ଼ିଶା ସହ ଏକୀକରଣ ଦାବି ଜଣାଇଥିଲେ । ଗଭର୍ଣ୍ଣରଙ୍କ ଉତ୍ତର ଥିଲା- ସେହିଭଳି କରାଗଲେ ଗଂଜାମ ଅଞ୍ଚଳର ତେଲୁଗୁ ସଂପ୍ରଦାୟ ନୂତନ ପ୍ରଦେଶର ସଂଖ୍ୟାଲଘୁ ରୂପେ ଅବହେଳାର ଶିକାର ହେବେ । ସେହି ଘଟଣାର କିଛିକାଳ ପୂର୍ବରୁ ଗଂଜାମର ଜଣେ ବିଶିଷ୍ଟ ବ୍ୟକ୍ତି ତଥା ଓଡ଼ିଆ ଦେଶ ମିଶ୍ରଣ ଆନ୍ଦୋଳନର ବିରୋଧୀ ନେତା ଶ୍ରୀ ଯୋଗେୟା ପାନ୍ତୁଲୁ (ଭି.ଭି.ଗିରିଙ୍କ ପିତା) ସେହି ମର୍ମରେ ବିଭିନ୍ନ ଆରୋପମାନ କରି ପତ୍ରପତ୍ରିକାରେ ବିଭାଜନ ବିରୋଧୀ ମତାମତ ମାନ ପ୍ରକାଶ କରିଥିଲେ । ପୁଣି ଓଡ଼ିଆଙ୍କ ଆନ୍ଦୋଳନକୁ ପ୍ରତିରୋଧ କରିବାପାଇଁ ଗଂଜାମର ତେଲୁଗୁମାନେ ମଧ୍ୟ ପ୍ରତି ଆନ୍ଦୋଳନର ସୂତ୍ରପାତ କରିସାରିଥିଲେ । ସେଥିପାଇଁ ସେମାନେ ଗଠନ କରିଥିଲେ 'ଗଂଜାମ ସୁରକ୍ଷା ସମିତି' ଏବଂ 'ଆନ୍ଧ୍ର ବ୍ୟବସାୟୀ ସଂଘ' । ସମ୍ଭବତଃ ସେଇ ସବୁର ସମ୍ମିଳିତ ପ୍ରଭାବରେ ପ୍ରଭାବିତ ହୋଇଯାଇଥିଲେ ଗଭର୍ଣ୍ଣର ମହୋଦୟ ଏବଂ ଓଡ଼ିଆ ସମାଜର ପ୍ରତିନିଧିଗଣଙ୍କୁ ସେଭଳି ଉତ୍ତର ପ୍ରଦାନ କରିଥିଲେ ।



Ama Odisha pdf (aamaodisha@gmail.com)

ଏ ସବୁ ସତ୍ତ୍ୱେ ଉତ୍କଳୀୟ ଜନମତ ଉପେକ୍ଷିତ ହୋଇ ନଥିଲା । ଯଥାର୍ଥରେ କେନ୍ଦ୍ର ସରକାରଙ୍କ ହୃଦ୍‌ବୋଧ ହୋଇଥିଲା ଯେ ପ୍ରକୃତରେ ଓଡ଼ିଆ ଜନଗଣ ଏକ ଚକ୍ରବ୍ୟୂହ ମଧ୍ୟରେ ପେଷିତ । ତା' ହୋଇ ନଥିଲେ ରାଶିରାଶି ଦାବିପତ୍ର, ସ୍ମାରକପତ୍ର ତଥା ଅନୁରୋଧ ଭାରତ ସରକାରଙ୍କ ନିକଟରେ ପହଞ୍ଚୁନଥାନ୍ତା କିମ୍ବା ଓଡ଼ିଆ ଏକୀକରଣ ଆନ୍ଦୋଳନର ପ୍ରତି ଆନ୍ଦୋଳନ ସଂଘଟିତ ହେଉ ନଥାନ୍ତା । ସେଇ ଯଥାର୍ଥ ଉପଲବ୍ଧି କେନ୍ଦ୍ର ବିଧାନ ପରିଷଦରେ ପ୍ରକାଶ କରିଥିଲେ ଘରୋଇ ବିଭାଗ ସଭ୍ୟ ସାର୍ ମେଲ୍‌କାମ୍ ହାଲେ । ପରିଷଦରେ ଆଲୋଚନାବେଳେ ଗୋଟିଏ ପ୍ରଶ୍ନର ଉତ୍ତର ଦେଇ ସେ ସ୍ପଷ୍ଟ କରିଥିଲେ ଯେ ବିଶାଖାପାଟଣା ଏଜେନ୍‌ସି ଏବଂ ଗଂଜାମ ଜିଲ୍ଲାର ଓଡ଼ିଆମାନଙ୍କ ସଂପର୍କରେ ଯେଉଁସବୁ ସରକାରୀ ବିବରଣୀ ମିଳିଛି ସେଥିରେ କେନ୍ଦ୍ର ସରକାର ସଂତୁଷ୍ଟ ନୁହନ୍ତି । ସେହି କାରଣରୁ ସେମାନଙ୍କ ସଂପର୍କରେ ତୃଣମୂଳ ସ୍ତରରେ ବାସ୍ତବ ଅନୁସନ୍ଧାନ କରିବାପାଇଁ କେନ୍ଦ୍ରସରକାରଙ୍କ ଏକ ପ୍ରସ୍ତାବ ବିଚାରାଧୀନ ରହିଛି ।

ସେହି ପ୍ରସ୍ତାବ ଅନୁଯାୟୀ ଓଡ଼ିଶାର ପଲିଟିକାଲ୍ ଏଜେଣ୍ଟ ମି.ସି.ଏଲ୍. ଫିଲିପ୍ ଏବଂ ମାନ୍ଦ୍ରାଜ ସରକାରଙ୍କ ଅଧୀନସ୍ଥ ବିଶାଖାପାଟଣା ଜିଲ୍ଲାର କଲେକ୍ଟର ମି.ଏ.ସି ଡଫ୍‌ଙ୍କୁ ନେଇ ଏକ ଦୁଇଜଣିଆ କମିଶନ୍ ଗଠିତ ହୋଇଥିଲା ୧୯୨୪ ମସିହାରେ । ଏହି କମିଶନ୍‌ର ଉଦ୍ଦେଶ୍ୟ ଥିଲା ଦକ୍ଷିଣ ଓଡ଼ିଶାର ବିଛିନ୍ନାଞ୍ଚଳଗୁଡ଼ିକରେ ବସବାସକରି ରହୁଥିବା ଓଡ଼ିଆମାନଙ୍କର ବିଭିନ୍ନ ସମସ୍ୟା ଅନୁଧ୍ୟାନ କରି ସେସବୁର ପ୍ରତିକାର ପାଇଁ ଆବଶ୍ୟକ ସୁପାରିସ କରିବା ।

କେବଳ ଓଡ଼ିଆଙ୍କ ସମସ୍ୟା ଅନୁସନ୍ଧାନପାଇଁ ଏକ ଉଚ୍ଚ ପଦାଧିକାରୀଙ୍କୁ ନେଇ କମିଟି ଗଠିତ ହେଉଥିବା ଦୃଷ୍ଟିରୁ ତାହାକୁ ଫଳପ୍ରସୂ କରାଇବାପାଇଁ ୧୯୨୩ ମସିହାରେ ଉତ୍କଳ ସମ୍ମିଳନୀର ଏକ ଅଧିବେଶନ ବ୍ରହ୍ମପୁରଠାରେ, ଶ୍ରୀ ଶଶିଭୂଷଣ ରଥଙ୍କ ପ୍ରଗାଢ଼ ଉଦ୍ୟମ ଫଳରେ ଅନୁଷ୍ଠିତ ହୋଇଥିଲା । କଂଗ୍ରେସ ସହିତ ସମ୍ମିଳନୀର ମିଶ୍ରଣ ପରଠାରୁ ଆଉ କୌଣସି ବାର୍ଷିକ ଅଧିବେଶନ ଅନୁଷ୍ଠିତ ହୋଇ ନଥିଲା । ତେଣୁ ଆପାତତଃ ଦୁଇ ଭିନ୍ନ ମତାବଲମ୍ବୀ ଗୋଷ୍ଠୀର ନେତାଗଣ ଏଥିରେ ଯୋଗଦାନ କରିଥିଲେ । ବାଦ ପ୍ରତିବାଦ ଭିତରେ, ଭାଗ୍ୟର ବିଡ଼ମ୍ବନା, ଏଠାରେ କୌଣସି ନିର୍ଦ୍ଦିଷ୍ଟ ପ୍ରସ୍ତାବ ଗୃହୀତ ହୋଇ ପାରି ନଥିଲା । ଏହା ଥିଲା ବାସ୍ତବରେ ଅନୁଷ୍ଠାନର ସ୍ଥାଣୁତ୍ୱର ଏକ ସ୍ପଷ୍ଟ ସଂକେତ । ଏବଂ ସେହିଠାରୁ ହିଁ ପୁଣି ଆରମ୍ଭ ହୋଇଥିଲା ଏକ ନୂତନ ଉଦ୍ଦୀପନାମୟ ଉଦ୍ୟମ । ସେତେବେଳକୁ କେନ୍ଦ୍ରମଞ୍ଚରେ ଉପସ୍ଥିତ ହୋଇ ସାରିଥିବା ପାରଳା ଗଜପତି ସ୍ୱତନ୍ତ୍ର ଓଡ଼ିଶା ଆନ୍ଦୋଳନର କେନ୍ଦ୍ରବିନ୍ଦୁରେ ପହଞ୍ଚି ଯାଇଥିଲେ । ତାଙ୍କରି ଦିଗ୍‌ଦର୍ଶନରେ ଶଶୀ ରଥ ପ୍ରମୁଖ ଅଣ କଂଗ୍ରେସୀ ନେତାଗଣ ଚଳ ଚଞ୍ଚଳ ହୋଇ ଉଠିଥିଲେ ଉତ୍କଳୀୟ ଜନଜାଗରଣର ନୂତନ ଦ୍ୱାର ଉନ୍‌ମୋଚନ ପାଇଁ । ତତ୍‌ପରଠାରୁ ନୂତନ ପ୍ରଦେଶ ଗଠନ ହେବା ପର୍ଯ୍ୟନ୍ତ ସେ ରହିଥିଲେ କର୍ଣ୍ଣଧାର ହୋଇ ।



Ama Odisha pdf (aamaodisha@gmail.com)

ଲକ୍ଷ୍ୟ କରିବାର କଥା ଯେ ଯଦି ୧୯୧୪ରେ ପାରଳା ସହରରେ ଅନୁଷ୍ଠିତ ପ୍ରଭାଯୁକ୍ତ ଦଶମ ଉତ୍କଳ ସମ୍ମିଳନୀ ମହାରାଜାଙ୍କ ଜାତୀୟ ଭାବନାକୁ ଅଧିକତର ଭାବରେ ଜାଗ୍ରତ କରାଇଦେଇଥିଲା, ଚକ୍ରଧରପୁରଠାରେ ଅନୁଷ୍ଠିତ ୧୬ଶ ଅଧିବେଶନରେ ଜାତୀୟ କଂଗ୍ରେସ ସହିତ ଅନୁଷ୍ଠାନର ମିଶ୍ରଣ ପ୍ରସ୍ତାବ ପରେ ଉତ୍କଳୀୟ ଏକୀକରଣ ଆନ୍ଦୋଳନକୁ ସ୍ୱତନ୍ତ୍ର ଭାବେ ବଜାୟ ରଖିବାପାଇଁ ପ୍ରେରଣାଯୁକ୍ତ କରିଥିଲା । ପୁଣି ୧୯୨୩ ମସିହାର ବ୍ରହ୍ମପୁରରେ ଅନୁଷ୍ଠିତ ୧୭ତମ ସମ୍ମିଳନୀ ତାହାଙ୍କୁ ଓଡ଼ିଆ ଏକୀକରଣ ଆନ୍ଦୋଳନର କେନ୍ଦ୍ରବିନ୍ଦୁକୁ ଟାଣିନେଇ ଯାଇଥିଲା ଏକ ଚୁମ୍ବକୀୟ ଶକ୍ତି ବଳରେ । ଅନୁଷ୍ଠାନରେ ସ୍ଥାଣୁତ୍ୱ ଏବଂ ବିଭାଜିତ ଉତ୍କଳୀୟ ନେତୃବୃନ୍ଦଙ୍କ ଏକ ପ୍ରକାରର ହତାଶା ଭାବ ହିଁ ଥିଲା ସେଇ ଚୁମ୍ବକୀୟ ଶକ୍ତି । ତତ୍‌ପରଠାରୁ ସେ ଅନମନୀୟ ଉଦ୍ୟମ କରିଥିଲେ ସ୍ୱତନ୍ତ୍ର ଓଡ଼ିଶା ଆନ୍ଦୋଳନକୁ ପ୍ରାଣବନ୍ତ କରାଇବାପାଇଁ । ଫିଲିଫ୍-ଡଫ୍ କମିଟିର ଗସ୍ତକାଳରେ ମହାରାଜାଙ୍କ ଉଦ୍ୟମର ସଫଳତା ଥିଲା ଅତ୍ୟନ୍ତ ଉତ୍ସାହପ୍ରଦ । ତାହାଙ୍କର ବଳିଷ୍ଠ ତଥା ପ୍ରାମାଣିକ ତଥ୍ୟ ଉପସ୍ଥାପନାରେ ସେମାନେ ପୂରାପୂରି ପ୍ରଭାବିତ ହୋଇଯାଇଥିଲେ ।

ସେଥିପାଇଁ ଏକ ଫଳପ୍ରଦ ଉଦ୍ୟମ ଥିଲା, ଗଂଜାମ ଜିଲ୍ଲାର ସବୁ ଜମିଦାରଙ୍କୁ ଏକତ୍ର କରାଇ ନିକଟ ଭବିଷ୍ୟତ ପାଇଁ କାର୍ଯ୍ୟପନ୍ଥା ପ୍ରସ୍ତୁତ କରିବା ଲାଗି । ୧୯୨୪ ନଭେମ୍ବର ଦୁଇ ତାରିଖ ଦିନ ସେମାନେ ସମସ୍ତେ ଏକତ୍ର ହୋଇ ଓଡ଼ିଶା ସହ ମିଶ୍ରଣ ସପକ୍ଷରେ କମିଶନ ନିକଟରେ ସାକ୍ଷ୍ୟ ଦେବାପାଇଁ ସ୍ଥିର ନିଶ୍ଚୟ କରିଥିଲେ । ସେହି ଅନୁକ୍ରମେ ଖଲିକୋଟ, ଆଠଗଡ଼, ଧରାକୋଟ, ମଂଜୁଷା, ଚିକିଟି, ବଡ଼ଗଡ଼, ସେରଗଡ଼, ଟିକାଲି, ସୁରଙ୍ଗୀ, ନନ୍ଦିଗାଁ, ତରଳା, ବବିଲି, ଜଳନ୍ତର, ବାରୁଆ ପ୍ରଭୃତି ଜମିଦାରଗଣଙ୍କ ସମେତ ଅନେକ ଜମିଦାରିର ପ୍ରଜାଗଣ ମଧ୍ୟ ଯଥା ସମୟରେ କମିଟି ନିକଟରେ ମିଶ୍ରଣ ସପକ୍ଷରେ ମତଦାନ କରିଥିଲେ । ପୁଣି ମହାରାଜାଙ୍କ ଉଦ୍ୟମରେ ସେଥିଲାଗି ଏକ କମିଟି ବ୍ରହ୍ମପୁରରେ ଗଠିତ ହୋଇ ମତ ପ୍ରକାଶ କରିଥିଲା ଯେ ଶ୍ରୀକାକୁଲମ୍ ଏବଂ ନାରସେନାପେଟା ତାଲୁକା ବ୍ୟତୀତ ଅନ୍ୟ ସବୁ ଅଞ୍ଚଳ ଓଡ଼ିଶା ସହ ସାମିଲ୍ ହେବା ଉଚିତ । ସେହି ଅନୁଯାୟୀ ଅନୁସନ୍ଧାନ କମିଟି ନିକଟରେ ଆନୁଷ୍ଠାନିକ ଭାବେ ଗଞ୍ଜାମ ଜିଲ୍ଲା ସଂଘ, ଗଂଜାମ ସବ୍ କମିଟି, ସ୍ୱାୟତ୍ତ ଶାସନ ସଂସ୍ଥାଗୁଡ଼ିକର ପ୍ରତିନିଧିଗଣ, ଓଡ଼ିଶା ଖ୍ରୀଷ୍ଟିୟାନ୍ ଗୋଷ୍ଠୀ, କଂଗ୍ରେସ କମିଟି, ଉତ୍କଳ ଆଶ୍ରମ, ରୟତ ସଂଘ ଏବଂ ଏହି ଅଞ୍ଚଳର ମହିଳାଗଣଙ୍କ ସମେତ ଦଳବଦ୍ଧ ଭାବରେ ଛାତ୍ର ତଥା ଶିକ୍ଷକବୃନ୍ଦ ମଧ୍ୟ ସାକ୍ଷ୍ୟ ପ୍ରଦାନ କରିଥିଲେ । ଗଂଜାମର ଆସିକା, ସୋରଡ଼ା, ଧରାକୋଟ, ସେରଗଡ଼, ବିରିଡ଼ି, ହୁମ୍ମା, ପାଲୁର, ଛତ୍ରପୁର, ପୁରୁଷୋତ୍ତମପୁର, ବଡ଼ଖେମଣ୍ଡି, ସାନଖେମଣ୍ଡି ପ୍ରଭୃତି ଅଞ୍ଚଳର ଜନଗଣଙ୍କ ମିଶ୍ରଣ ସପକ୍ଷରେ ସଭା, ଶୋଭାଯାତ୍ରା ଏବଂ ଦାବି / ସ୍ମାରକପତ୍ର ପ୍ରଦାନପାଇଁ ଉଦ୍ଦୀପନାମୟ କାର୍ଯ୍ୟକଳାପରେ ଫିଲ୍‌ଫ୍ ଡଫ୍ କମିଟି ବିଶେଷ ଭାବେ ଅଭିଭୂତ ହୋଇ ଯାଇଥିଲେ । କମିଟିକୁ ତଥ୍ୟ ପ୍ରଦାନ ଉଦ୍ଦେଶ୍ୟରେ ଶ୍ରୀ ନିରଞ୍ଜନ ପଟ୍ଟନାୟକ ଏବଂ ଶ୍ରୀ ଚକ୍ରପାଣି ପ୍ରଧାନଙ୍କ ଦ୍ୱାରା ବାସ୍ତବରେ ଲିଖିତ ହୋଇ ସୁଦ୍ଧା ବେନାମୀ



Ama Odisha pdf (aamaodisha@gmail.com)

ଭାବରେ ଆସ୍କାର ବିଶିଷ୍ଟ ଓକିଲ ଶ୍ରୀହରିହର ପଣ୍ଡାଙ୍କ ନାମରେ ପ୍ରକାଶିତ ବେଶ୍ ବଳିଷ୍ଠ ଯୁକ୍ତି ସମ୍ବଳିତ 'ଓଡ଼ିଆ ଆନ୍ଦୋଳନ' (ଦି ଓରିଆ ମୁଭ୍‌ମେଣ୍ଟ୍) ଗ୍ରନ୍ଥଟି ବିଶେଷ ଉପାଦେୟ ମନେ ହୋଇଥିଲା ସମସ୍ତଙ୍କପାଇଁ । ଏପରିକି ଉକ୍ତ କମିଟିକୁ ମଧ୍ୟ । କାରଣ ସେଥିରେ ଥିଲା ଓଡ଼ିଆ ଆନ୍ଦୋଳନର ଇତିହାସ ଏବଂ ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ଗଠନ ଲାଗି ଅତି ଉପାଦେୟ ତଥ୍ୟଯୁକ୍ତ ଅକାଟ୍ୟ ଯୁକ୍ତି ।

୧୯୨୪ ଡିସେମ୍ବର ୧୨ରୁ ୨୧ ଯାଏଁ କମିଟି ରହିଥିଲା ରମ୍ଭାଠାରେ । ଖଲିକୋଟ ରାଜା ରାମଚନ୍ଦ୍ର କମିଟିକୁ ଅନେକ ଉପାଦେୟ ଐତିହାସିକ ତଥ୍ୟ ପ୍ରଦାନ କରିଥିଲେ । କମିଟି ବ୍ରହ୍ମପୁର, ରମ୍ଭା, ଭଞ୍ଜନଗର ପ୍ରଭୃତି ଅଞ୍ଚଳ ଗସ୍ତକରିବା ଅବସରରେ ବିପୁଳ ଜନସମାଗମରେ ଜନଗଣଙ୍କ ଓଡ଼ିଶା ମିଶ୍ରଣ ଆକାଂକ୍ଷା ତଥା ଉତ୍ସାହ ଯଥାର୍ଥରେ ଲକ୍ଷ୍ୟ କରିଥିଲେ ଉଭୟ ପଦସ୍ଥ ଅଫିସର । ବିଶେଷକରି ପାରଳା ଗସ୍ତ କାଳରେ ମହାରାଜାଙ୍କ କଲେଜରେ ସେମାନଙ୍କୁ ଭବ୍ୟ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା । ସେତେବେଳେ ଉତ୍କଳମାତାର ଜୟଗାନରେ ଆକାଶ ପାତାଳ ପ୍ରକମ୍ପିତ ହୋଇଉଠିଥିଲା ।

ଏଇସବୁ ସଫଳତାର ଶ୍ରେୟ ଥିଲା ମହାରାଜା କୃଷ୍ଣଚନ୍ଦ୍ରଙ୍କର; ତାଙ୍କରି ସାଂଗଠନିକ ଦକ୍ଷତାର ।

ବାସ୍ତବରେ ଅନୁସନ୍ଧାନ ଶେଷରେ ମି.ଫିଲିପ୍ ଏବଂ ଡଫ୍‌ଙ୍କର ଯଥାର୍ଥ ହୃଦ୍‌ବୋଧ ହୋଇଥିଲା ଯେ ମାନ୍ଦ୍ରାଜ ଶାସନରେ ଥିବା ଓଡ଼ିଆମାନେ ଅତ୍ୟନ୍ତ ଦୁରବସ୍ଥା ଭିତରେ ଏବଂ ଅବହେଳିତ ହୋଇ ହିଁ ରହିଛନ୍ତି । ସେମାନଙ୍କ ଦୃଷ୍ଟିକୁ ଆସିଥିଲା ମାତ୍ର ଜଣେ ଓଡ଼ିଆ ମାନ୍ଦ୍ରାଜ ସରକାରଙ୍କ ଅଧୀନରେ ଡେପୁଟି କଲେକ୍ଟର ଭଳି ଉଚ୍ଚପଦବୀରେ ଅବସ୍ଥାପିତ । ସମଗ୍ର ଅଞ୍ଚଳର ପ୍ରାୟ ସବୁ ସରକାରୀ କର୍ମଚାରୀ ଓଡ଼ିଆ ଭାଷା ଲେଖି ପଢ଼ି ପାରୁ ନଥିବା ତେଲୁଗୁଭାଷୀ; ଏପରିକି ଡାକ ପିଅନଠାରୁ ଆରମ୍ଭ କରି ଅନ୍ୟାନ୍ୟ ଅଫିସରଙ୍କ ପର୍ଯ୍ୟନ୍ତ । ଗଞ୍ଜାମ ଜିଲ୍ଲାର ଅତ୍ୟନ୍ତ ଭ୍ରମାତ୍ମକ ମାନଚିତ୍ର ଯୋଗାଇ ଦିଆଯାଉଥିଲା ସ୍କୁଲ୍ ପିଲାଙ୍କୁ । ସରକାରୀ ରେକର୍ଡ଼ପତ୍ରରେ ବିକୃତ ଓଡ଼ିଆ ଭାଷା ବ୍ୟବହୃତ ହେଉଥିଲା- ଏପରିକି ଗଂଜାମ ଜିଲ୍ଲାର ନାମ ପାଇଁ ମଧ୍ୟ । ଗଞ୍ଜାମ ଜିଲ୍ଲା ସରକାରୀ ନଥିପତ୍ରରେ ହୋଇ ଯାଇଥିଲା, 'ଗଙ୍ଗସେରିଗିଲ୍ଲା' (Gange Seri Gilla) ଏବଂ ଘୁମୁସର ତାଲୁକ ହୋଇଥିଲା 'ଘୁସେରି' (Ghuseri) ତାଲୁକ୍ ।

କମିଟି ଯଥାର୍ଥରେ ଅନୁଭବ କରିଥିଲା, ଏଇ ଅଞ୍ଚଳବାସୀଙ୍କ ଉନ୍ନତିପାଇଁ ସରକାରଙ୍କ ଆନ୍ତରିକତାର ଅଭାବ । ସେଇଥିପାଇଁ ସୁପାରିସ୍‌ରେ ମତ ଦେଇଥିଲା 'ମାନ୍ଦ୍ରାଜ ପ୍ରଦେଶ ଶାସନାନ୍ତର୍ଗତ ଓଡ଼ିଆ ଭାଷାଭାଷୀ ଅଞ୍ଚଳଗୁଡ଼ିକର ଶିକ୍ଷିତ ବ୍ୟକ୍ତି ବିଶେଷ ଏକ ଶାସନାଧୀନ (ଓଡ଼ିଆ ସହିତ) ହୋଇ ରହିବାପାଇଁ ଦୀର୍ଘକାଳ ଧରି ଆନ୍ତରିକ ଅଭିଳାଷ ପୋଷଣ କରିଆସିଛନ୍ତି ଏବଂ ସେହି ଅଭିଳାଷରେ ମଧ୍ୟ ଯଥାର୍ଥତା ରହିଛି ।' ଦୁଇଜଣ ଅଫସରଙ୍କ ଅନୁଭବ ଥିଲା



Ama Odisha pdf (aamaodisha@gmail.com)

ଯୁଗ ଯୁଗଧରି ସେଠିକାର ଜମିଦାର ଏବଂ ପ୍ରଜାଗଣଙ୍କର ଓଡ଼ିଶା ସହିତ ସଂପର୍କ ରହିଛି । ପାରଳାର ଉଦାହରଣ ଦେଇ ସେମାନେ ମତ ପ୍ରକାଶ କରିଥିଲେ ଯେ ବିଖ୍ୟାତ ପୁରୀ ଗଜପତି ବଂଶର ଦାୟାଦ ସେମାନେ । ଏବଂ ଗଂଜାମ ଜିଲ୍ଲାର ଅଧିକାଂଶ ଅଞ୍ଚଳ ସେଇ ଜମିଦାରି ଅନ୍ତର୍ଭୁକ୍ତ । ଓଡ଼ିଶା ସହିତ ସେମାନଙ୍କର ମିଶ୍ରଣର ପରିଣାମରେ ସେଠିକାର ତେଲୁଗୁଭାଷୀ ଜନଗଣଙ୍କ ପ୍ରଚଳିତ ଚଳଣିରେ କୌଣସି ପ୍ରକାରର ଅସୁବିଧା ହେବନାହିଁ । କାରଣ ଦୀର୍ଘକାଳ ଧରି ଉଭୟଭାଷୀ ଏକାଠି ଚଳି ଆସିଛନ୍ତି ଏବଂ ଦୃଢ଼ ଭାବରେ ଭାବଗତ ତଥା ଗୋଷ୍ଠୀଗତ ସାମାଜିକ ବନ୍ଧନରେ ସେମାନେ ଆବଦ୍ଧ । ଦକ୍ଷିଣାଞ୍ଚଳର ଟିକାଲି, ମଂଜୁଷା, ବାରୁଆ ଇତ୍ୟାଦି ଅଞ୍ଚଳ ପାଇଁ ମଧ୍ୟ ସେଇ ଏକା ଯୁକ୍ତି ଉପସ୍ଥାପନ କରିଥିଲା କମିଟି ।

ବିଶାଖାପାଟଣା ଜିଲ୍ଲାର ଓଡ଼ିଆ ସମାଜ ଓଡ଼ିଶା ସହିତ ସାମିଲ୍ ହେବାପାଇଁ ପ୍ରବଳ ଆକାଂକ୍ଷା ପ୍ରକାଶ କରିବା ସହିତ ବବିଲି ତଥା ବିଜୟନଗର ଜମିଦାରିର ତେଲୁଗୁ ରାଜାଗଣ ମଧ୍ୟ ସେହିଭଳି ମତ ପ୍ରକାଶ କରିଥିଲେ ।

ବିଶାଖାପାଟଣାର ଜିଲ୍ଲା କଲେକ୍ଟର ଭାବେ ସେହି ଅଞ୍ଚଳର ପ୍ରତ୍ୟକ୍ଷ ଶାସନାନୁଭୂତିସମ୍ପନ୍ନ ଅନ୍ୟତମ ସଦସ୍ୟଯୁକ୍ତ କମିଟିର ହୃଦୟଙ୍ଗମ ହୋଇଥିଲା ଯେ ବିଶାଖାପାଟଣା ଜିଲ୍ଲାର କୋରାପୁଟ, ନବରଙ୍ଗପୁର ତାଲୁକ୍ ସମେତ ଓଡ଼ିଆ ଅଧ୍ୟୁଷିତ ଜୟପୁର ଜମିଦାରି ବାସ୍ତବରେ ଓଡ଼ିଶା ସହିତ ଯୁକ୍ତ ହେବା ବିଧେୟ । ତେବେ ୧୯୨୧ ଜନଗଣନା ତଥ୍ୟ ଆଧାରରେ ଉକ୍ତ କମିଟି କେବଳ ଓଡ଼ିଆ ଅଞ୍ଚଳଗୁଡ଼ିକୁ ଚିହ୍ନଟ କରି ସେଗୁଡିକୁ ହିଁ ସେମାନଙ୍କର ଅନୁଧ୍ୟାନର ପରିସରଭୁକ୍ତ କରିଥିଲେ । ସେମାନେ ଆଉ ଜାଣି ପାରି ନଥିଲେ ଯେ ଅନେକ ଅନେକ ଓଡ଼ିଆ ଗ୍ରାମକୁ ଏବଂ ଓଡ଼ିଆ ଲୋକଙ୍କୁ ଚକ୍ରାନ୍ତକାରୀ ତେଲଗୁ ଜନଗଣନାକାରୀଗଣ ତେଲୁଗୁ ଭାଷୀରୂପେ ପରିବର୍ତ୍ତନ କରାଇ ସେମାନଙ୍କ ନାମକୁ ସୁଦ୍ଧା ବିକୃତ କରିପକାଇଥିଲେ । କିଭଳି ନରସିଂହ ପେଟା ନିକଟସ୍ଥ ଦୀର୍ଘାଛି ଗ୍ରାମରେ ଓଡ଼ିଆ କଂସାରି ଜାତିର ବାସିନ୍ଦାଙ୍କୁ ତେଲୁଗୁ ଭାଷୀ ରୂପେ ରେକର୍ଡ଼ଭୁକ୍ତ କରି 'ଲିଙ୍ଗରାଜ ସାହୁ'ଙ୍କ ନାମକୁ ଜନଗଣନା କାଗଜପତ୍ରରେ ଲିପିବଦ୍ଧ କରିଥିଲେ 'କଞ୍ଚାରୁ ମଧୁଗାରୀ ଲିଙ୍ଗାନ୍ନା' ହିସାବରେ ।

ସେ ଯାହା ହେଉ ଓଡ଼ିଶା ଆନ୍ଦୋଳନକାରୀଙ୍କ ପାଇଁ ଫିଲଫ୍‌ଡଫ୍ କମିଟି ସୁପାରସ ଯେ ଏକ ମାଇଲ୍ ସ୍ତମ୍ଭ ଥିଲା ଏଥିରେ ସନ୍ଦେହ ନାହିଁ । ଓଡ଼ିଆ ଅଞ୍ଚଳର ଏକୀକରଣପାଇଁ ଅନୁକୂଳ ମତଯୁକ୍ତ ସେମାନଙ୍କ ରିପୋର୍ଟ କମିଟି ୧୯୨୪ ମସିହା ଡିସେମ୍ବର ୨୬ ତାରିଖ ଦିନ ସରକାରଙ୍କୁ ପ୍ରଦାନ କରିଥିଲେ । ସେମାନଙ୍କ ସେଭଳି ସୁପାରିସ୍ ଲାଗି ମହାରାଜା କୃଷ୍ଣଚନ୍ଦ୍ରଙ୍କ ଭୂମିକା ଥିଲା ବିଶେଷ ଗୁରୁତ୍ୱପୂର୍ଣ୍ଣ । ଆପଣା ଜମିଦାରୀ ଅଞ୍ଚଳ ସହିତ ଅନ୍ୟାନ୍ୟ ଦକ୍ଷିଣ ବିଚ୍ଛିନ୍ନାଞ୍ଚଳର ମିଶ୍ରଣ କରାଯାଇ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠିତ ହେବା ଆବଶ୍ୟକ ବୋଲି କମିଟିର ହୃଦ୍‌ବୋଧ କରାଇ ପାରିଥିଲେ ସେ । ସେହି ଲକ୍ଷ୍ୟ ପୂରଣ ଆପଣାର କର୍ତ୍ତବ୍ୟ ବୋଲି



Ama Odisha pdf (aamaodisha@gmail.com)

ମନେକରୁଥିବା ଯୋଗୁଁ କମିଟିକୁ ସର୍ବାନ୍ତଃକରଣରେ ପ୍ରଭାବିତ କରାଇବାପାଇଁ ଯତ୍‌ପରୋନାସ୍ତି ଉଦ୍ୟମ କରିଥିଲେ ମହାରାଜା । ତାହାକୁ ଖୋଦ୍ ଫିଲ୍‌ପ୍ ମଧ୍ୟ ମୁକ୍ତ କଣ୍ଠରେ ସ୍ୱୀକାର କରିଥିଲେ । ତାହାର ପ୍ରାୟ ଦଶବର୍ଷ ପରେ ଓଡ଼ିଶାରୁ ବିଦାୟ ନେବା ଅବସରରେ ୧୯୩୩ ମସିହାରେ କଟକଠାରେ ତାହାଙ୍କ ସମ୍ମାନାର୍ଥେ ଆୟୋଜିତ ସମ୍ବର୍ଦ୍ଧନା ସଭାରେ ଆପଣାର ହୃଦୟ ଖୋଲି ଦେଇଥିଲେ... ''୧୯୨୪ ମସିହାରେ ଆମ୍ଭମାନଙ୍କଦ୍ୱାରା ଗଠିତ କମିଟିର ସୁପାରିସଗୁଡ଼ିକ ମୁଖ୍ୟତଃ ଗଞ୍ଜାମର ଜଣେ ବିଶିଷ୍ଟ ଜମିଦାର-ପାରଳାଖେମଣ୍ଡିର ମହାରାଜାଙ୍କ ମତାମତ ଉପରେ ଭିତ୍ତିକରି ହିଁ ପ୍ରସ୍ତୁତ କରାଯାଇଥିଲା...'' ଏହା ମହାରାଜା କୃଷ୍ଣଚନ୍ଦ୍ରଙ୍କ ବଳିଷ୍ଠ ତଥା ପ୍ରଭାବଶାଳୀ ନେତୃତ୍ୱକୁ ଯେତିକି ପ୍ରକାଶିତ କରାଇ ଦେଇଥାଏ ତା'ଠାରୁ ଅଧିକତର ଭାବରେ ପ୍ରକାଶିତ ହୋଇଥାଏ ତାଙ୍କର ହୃଦୟଗ୍ରାହୀ ଭାବ ଏବଂ ସବୁ ଓଡ଼ିଆ ଅଞ୍ଚଳ ଏକୀକୃତ ହୋଇ ନୂତନ ପ୍ରଦେଶଟିଏ ଗଠିତ ହେବାର ଆକାଂକ୍ଷା ।

—୦—



Ama Odisha pdf (aamaodisha@gmail.com)

# ତିନି କମିଟି ଓ ମହାରାଜା

ଫିଲ୍‌ଫ୍ ଡଫ୍ କମିଟି ସୁପାରିଶ ୧୯୨୪ ଡିସେମ୍ବରରେ ସରକାର ପାଇବା ପରେ ପରେ ତତ୍ ସଂପର୍କରେ ବିଶଦ ଭାବରେ ତର୍ଜମା ହୋଇଥିଲା ଉଚ୍ଚତମ ମହଲରେ । ତତ୍‌ପରେ ୧୯୨୬ ମସିହାରେ ତତ୍‌ସହିତ ସଂପୃକ୍ତ ମାନ୍ଦ୍ରାଜ ସରକାରଙ୍କର ମତାମତ ଲୋଡ଼ାଯାଇଥିଲା । ସ୍ୱତନ୍ତ୍ର ପ୍ରଦେଶରେ ତତ୍‌କାଳୀନ ଗଂଜାମ ଜିଲ୍ଲାରେ ଥିବା ପାଞ୍ଚଟି ଡିଭିଜନର ୧୪ଟି ତାଲୁକା ମଧ୍ୟରୁ ଘୁମୁସର (ଘୁମୁସର, ଆସିକା, ସୋରଡ଼ା ତାଲୁକା)ଏବଂ ଛତ୍ରପୁର (ଛତ୍ରପୁର, କୋଦଳା) ଡିଭିଜନ୍ ସଂପୂର୍ଣ୍ଣ ସାମିଲ୍ ହେବାପାଇଁ ନିର୍ଦ୍ଧାରିତ ହୋଇଥିଲା । ଅନ୍ୟ ତିନିଟି ଡିଭିଜନ୍- ବ୍ରହ୍ମପୁରର (ବ୍ରହ୍ମପୁର, ସୋମପେଣ୍ଟ, ଇଚ୍ଛାପୁର) ସୋମପେଣ୍ଟ, ଶ୍ରୀକାକୁଳମ୍‌ର (ଶ୍ରୀକାକୁଳ୍‌ମ, ଟିକାଲି, ପାରଳାଖେମୁଣ୍ଡି) ପାରଳାଖେମୁଣ୍ଡି ଓ ଟିକାଲି ଏବଂ ଏଜେନ୍‌ସି ଡିଭିଜନ୍‌ର (ବାଲିଗୁଡ଼ା, ରାମଗିରି, ଉଦୟଗିରି) ରାମଗିରି ତାଲୁକାଗୁଡ଼ିକ ବ୍ୟତୀତ ଅନ୍ୟ ତାଲୁକାଗୁଡ଼ିକର ନୂତନ ଓଡ଼ିଶା ପ୍ରଦେଶ ସହିତ ମିଶ୍ରଣ ହେବ ବୋଲି ଆପାତତଃ ସ୍ଥିର ହୋଇଥିଲା । ତେଣୁ ମୋଟ ଦଶଟି ତାଲୁକାକୁ ବାଦଦେଇ ଅନ୍ୟ ଚାରୋଟି ତାଲୁକା- ସୋମପେଣ୍ଟ, ପାରଳାଖେମୁଣ୍ଡି, ଟିକାଲି ଏବଂ ରାମଗିରି ଅଞ୍ଚଳରେ ବସବାସକରି ରହୁଥିବା ତେଲୁଗୁଭାଷୀ ଜନଗଣଙ୍କ ମତାମତ ସଂଗ୍ରହକରି ସେମାନେ ବାସ୍ତବରେ ନୂତନ ଓଡ଼ିଶା ସହିତ ମିଶ୍ରଣର ସପକ୍ଷ କିମ୍ବା ବିପକ୍ଷବାଦୀ ତାହାର ଏକ ସ୍ୱଷ୍ଟ ଚିତ୍ର ପ୍ରଦାନ କରିବାପାଇଁ ମାନ୍ଦ୍ରାଜ ସରକାରଙ୍କୁ ଜଣାଇ ଦିଆଯାଇଥିଲା । ସେତିକିବେଳେ ମଧ୍ୟ (କେନ୍ଦ୍ର) ପ୍ରଦେଶର ଖଡ଼ିଆଳକୁ ଓଡ଼ିଶା ସହ ଯୁକ୍ତ କରାଯିବାର ପ୍ରସ୍ତାବ ରହିଥିବା ବେଳେ ବିଶାଖାପାଟଣା ଜିଲ୍ଲାକୁ ପୂର୍ବଭଳି ମାନ୍ଦ୍ରାଜ ସହିତ ରହିବା ଲାଗି ଆପାତତଃ ସ୍ଥିର କରାଯାଇଥିଲା ।

ବିଭିନ୍ନ ଅଞ୍ଚଳପାଇଁ ସେଭଳି ମତାମତ ଲୋଡ଼ାଯିବାର ମୂଳ କାରଣ ଥିଲା ପ୍ରଥମରୁ ହିଁ ଗଞ୍ଜାମ ଅଞ୍ଚଳକୁ ବିଚ୍ଛିନ୍ନ କରିବାପାଇଁ ମାନ୍ଦ୍ରାଜ ସରକାରଙ୍କ ନକରାତ୍ମକ ମନୋଭାବ । ମାନ୍ଦ୍ରାଜ ସରକାର କେନ୍ଦ୍ରକୁ ସ୍ୱଷ୍ଟ ଭାବରେ ଜଣାଇ ଦେଇଥିଲେ ଯେ ସେମାନଙ୍କ ପୂର୍ବମତ ପରିବର୍ତ୍ତନର କୌଣସି କାରଣ ନାହିଁ । ସେହି ସଂପର୍କରେ ମାନ୍ଦ୍ରାଜ ସରକାରଙ୍କ ଯୁକ୍ତି ଥିଲା ଅତ୍ୟନ୍ତ ହାସ୍ୟାସ୍ପଦ ।



Ama Odisha pdf (aamaodisha@gmail.com)

ସେହି ଯୁକ୍ତି ଅନୁଯାୟୀ ଗଞ୍ଜାମର ଓଡ଼ିଆ ସଂଖ୍ୟାବହୁଳ ଅଞ୍ଚଳ ଅତ୍ୟନ୍ତ ସୀମିତ; ତେଲୁଗୁମାନେ ଓଡ଼ିଆ ଭାଷା ବ୍ୟବହାର କରୁଥିବାରୁ ସେମାନଙ୍କୁ ଓଡ଼ିଆ ରୂପେ ଚିହ୍ନଟ କରାଯାଉଛି । ଅନୁନ୍ନତ ଓଡ଼ିଆଙ୍କ ହିତାହିତ ବିଚାରର ଯଥାର୍ଥ ଶକ୍ତି ନାହିଁ; ଏଠିକାର ଓଡ଼ିଆଙ୍କ ଭାଷା ସମେତ ଚାଲିଚଳଣ, ରୀତିନୀତି ସବୁ ଓଡ଼ିଶାର ଓଡ଼ିଆ ଲୋକଙ୍କଠାରୁ ସଂପୂର୍ଣ୍ଣ ଭିନ୍ନ... ଇତ୍ୟାଦି, ଇତ୍ୟାଦି । ବିଶେଷ ଉଲ୍ଲେଖଯୋଗ୍ୟ ଥିଲା ଫିଲଫ୍-ଡଫ୍ କମିଟିର କଠୋର ସମାଲୋଚନା । ତାଙ୍କରି ଅଧୀନସ୍ଥ ଜଣେ ଜିଲ୍ଲା କଲେକ୍ଟର ଭଳି ଉଚ୍ଚପଦବୀଧାରୀ ଅଫିସରଙ୍କ ରିପୋର୍ଟକୁ ମଧ୍ୟ ଆକ୍ଷେପ କରିଥିଲେ ଯେ ସେହି କମିଟି କେବଳ ଉକ୍ତ ଅଞ୍ଚଳର ଓଡ଼ିଆଭାଷୀ ଲୋକଙ୍କ ମତାମତ ସଂଗ୍ରହ କରିଥିବା ବେଳେ ଅନ୍ୟଭାଷୀ ଲୋକଙ୍କ ମତାମତ ଆଦୌ ନିଆଯାଇନାହିଁ । ତେଣୁ ସେହିଭଳି ଭାବରେ ସେଇ ଅଞ୍ଚଳର ତେଲୁଗୁ ଲୋକଙ୍କର ମତାମତ ଜାଣିବାପାଇଁ ଆଉ ଏକ କମିଟି ଗଠନ କରାଯାଉ ।

ତେଲୁଗୁ ରାଜକର୍ମଚାରୀଗଣଙ୍କଦ୍ୱାରା ସଂପୂର୍ଣ୍ଣ ପ୍ରଭାବିତ ମାନ୍ଦ୍ରାଜ ପ୍ରାଦେଶିକ ସରକାରଙ୍କ ସେହି ମତାମତକୁ କେନ୍ଦ୍ର ସରକାର ସଂପୂର୍ଣ୍ଣ ଗ୍ରହଣ କରି ନଥିଲେ । ପଦସ୍ଥ ଇଂରେଜ ଅଧିକାରୀଙ୍କ ମତରେ ଅଧିକ ଯଥାର୍ଥତା ଥିବା ଅନୁଭବ କରିଥିଲେ କେନ୍ଦ୍ର ସରକାର । ସଂପୃକ୍ତ ଅଞ୍ଚଳର କଲେକ୍ଟର ତୃଣମୂଳ ସ୍ତରୀୟ ଅନୁଧ୍ୟାନ କରିଥିବା ଯୋଗୁଁ ସେହି ସୁପାରିଶରେ ବାସ୍ତବତା ଥିବା ଅନୁଭବ କରି ଦକ୍ଷିଣ ବିଚ୍ଛିନ୍ନାଞ୍ଚଳର ଓଡ଼ିଆ ଅଞ୍ଚଳ ସବୁକୁ ଓଡ଼ିଶା ସହ ମିଶ୍ରଣ ପାଇଁ ସପକ୍ଷବାଦୀ ଥିଲେ ଏବଂ ସେହି ସମସ୍ୟା ସଂପର୍କରେ ସଂପୃକ୍ତ ବିହାର-ଓଡ଼ିଶା ସରକାରଙ୍କ ମତାମତ ଲୋଡ଼ିଥିଲେ । ତତ୍ ସହିତ କମିଟିର ସୁପାରିସ ଏବଂ ମାନ୍ଦ୍ରାଜ ସରକାରଙ୍କୁ ପ୍ରଦତ୍ତ ପତ୍ରର ନକଲ ମଧ୍ୟ ଯୋଗାଇ ଦେଇଥିଲେ । କେନ୍ଦ୍ରର ସେଭଳି ପଦକ୍ଷେପରେ ମାନ୍ଦ୍ରାଜ ସରକାର ବିଶେଷ ଉତ୍କ୍ଷିପ୍ତ ହୋଇ ଉଠିଥିଲେ ଏବଂ କେନ୍ଦ୍ରକୁ ଆକ୍ଷେପ କରିଥିଲେ ଯେ ବଙ୍ଗ କିମ୍ବା କେନ୍ଦ୍ରେ ମଧ୍ୟପ୍ରଦେଶ ଭଳି ଅନ୍ୟାନ୍ୟ ପ୍ରାଦେଶିକ ସରକାରଙ୍କ ତୁଳନାରେ ମାନ୍ଦ୍ରାଜ ସରକାରଙ୍କୁ ଉଚିତ ମର୍ଯ୍ୟାଦା ଦିଆଯାଉ ନାହିଁ । ଦେଶ ମିଶ୍ରଣ ସଂପର୍କୀୟ ସେମାନଙ୍କ ମତାମତକୁ ସଂପୂର୍ଣ୍ଣ ଉପେକ୍ଷା କରାଯାଉଛି ଏବଂ ପ୍ରାଦେଶିକ ସରକାରଙ୍କ ଇଚ୍ଛା ବିରୁଦ୍ଧରେ କମିଶନ (ଫିଲଫ୍ ଡଫ୍) ଗଠିତ ହେଉଛି । ତା ସତ୍ତ୍ୱେ ଯଦି ଗଂଜାମକୁ ମାନ୍ଦ୍ରାଜରୁ ବିଚ୍ଛିନ୍ନ କରାଯାଏ ତେବେ ସେଠାରେ ବିଭିନ୍ନ ଉନ୍ନୟନ ଯୋଜନାରେ ଖର୍ଚ୍ଚ ହୋଇଥିବା ୬୧.୫ ଲକ୍ଷ ଟଙ୍କା ବିହାର ସରକାର ମାନ୍ଦ୍ରାଜକୁ ଦେବାକୁ ହେବ । ସେଇ ସମୟରେ ୧୯୦୪, ୧୯୨୨ ଏବଂ ୧୯୨୫ରେ ଦେଇଥିବା ମତାମତକୁ ପୁଣି ଥରେ ପ୍ରଦାନ କରିଥିଲେ କେନ୍ଦ୍ର ସରକାରଙ୍କୁ ।

ଏଭଳି ପ୍ରବଳ ପ୍ରତିହିଂସାମୂଳକ ବିଷୋଦ୍‌ଗାରକୁ କେନ୍ଦ୍ର ଗ୍ରହଣ କରିବାପାଇଁ ବିଶେଷ କୁଣ୍ଠିତ ହୋଇଥିଲେ । ଅତ୍ୟନ୍ତ ଅନାବଶ୍ୟକ ମନେ କରିଥିଲେ ଗୋଟିଏ ପ୍ରାଦେଶିକ ସରକାରଙ୍କ ଉନ୍ନୟନମୂଳକ ଖର୍ଚ୍ଚକୁ ଅନ୍ୟ ଗୋଟିଏ ପ୍ରାଦେଶିକ ସରକାର ଭରଣା କରିବା ବିଷୟକ ଆଲୋଚନା । ପୁଣି ମାନ୍ଦ୍ରାଜ ସରକାରଙ୍କ ଅନ୍ୟତମ ପରାମର୍ଶ ଥିଲା ରାଜକୀୟ ବୈଧାନିକ



Ama Odisha pdf (aamaodisha@gmail.com)

କମିଶନ୍ (ସାଇମନ୍ କମିସନ୍) ନିକଟ ଭବିଷ୍ୟତରେ ଆସିବାକୁ ଥିବା ଯୋଗୁଁ ଏବଂ ପ୍ରାଦେଶିକ ସୀମା ନିର୍ଦ୍ଧାରଣ ଭଳି ନିଷ୍ପତ୍ତି ସେମାନଙ୍କ ସ୍ତରରେ ହିଁ ସମାହିତ ହେବାକୁ ଥିବା ଯୋଗୁଁ ସେ ପର୍ଯ୍ୟନ୍ତ ଅନ୍ତତଃ ଅପେକ୍ଷା କରାଯାଉ ।

କେନ୍ଦ୍ର ସରକାର କିନ୍ତୁ ଅପେକ୍ଷା କରିଥିଲେ ବିଭାଜିତ ହେବାକୁ ଥିବା ଅଞ୍ଚଳର ତେଲୁଗୁ ଭାଷୀଙ୍କର ମତାମତ ଜାଣିବାପାଇଁ ।

ଇତି ମଧ୍ୟରେ ଉକ୍ତ କମିଟି ସୁପାରିଶରେ ଉତ୍ସାହିତ ଓଡ଼ିଆ ନେତୃମଣ୍ଡଳୀ ବିହାର-ଓଡ଼ିଶା ବିଧାନସଭାରେ ଦାବି ଉପସ୍ଥାପନ କରିଥିଲେ ତାହାକୁ କାର୍ଯ୍ୟକାରୀ କରିବାପାଇଁ । ମହାରାଜା କୃଷ୍ଣଚନ୍ଦ୍ର ବିଧାନସଭା ଓ କେନ୍ଦ୍ରୀୟ ପରିଷଦର ସଦସ୍ୟମାନଙ୍କ ସହିତ ଯୋଗାଯୋଗ ରକ୍ଷା କରିବା ସମେତ ବରାବର ଆଲୋଚନାମାନ ଚଳାଇ ରଖିଥିଲେ । ତତ୍‌ସମେତ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶାକାଂକ୍ଷୀ ନେତାଗଣଙ୍କ ସହିତ ମଧ୍ୟ ବିଚାର ଆଲୋଚନାରେ ଅବ୍ୟାହତି ନଥିଲା । ସେହି ଅନୁଯାୟୀ ବିଭିନ୍ନ କାର୍ଯ୍ୟ ପନ୍ଥା ମଧ୍ୟ ଗ୍ରହଣ କରୁଥିଲେ; ବିଶେଷକରି ପରିଷଦଗଣଙ୍କୁ ପ୍ରଚୋଦିତ କରୁଥିଲେ ସେହି ପ୍ରଶ୍ନକୁ ବିଧାନସଭା / ପରିଷଦରେ ବାରମ୍ବାର ଉତ୍‌ଥାପନପାଇଁ । ପୁଣି ୧ ୯ ୨ ୫ ମସିହାରେ ବିହାର-ଓଡ଼ିଶା ଅର୍ଥମନ୍ତ୍ରୀ କନିକାରାଜାଙ୍କ ନେତୃତ୍ୱରେ ସର୍ବଶ୍ରୀ ନିରଞ୍ଜନ ପଟ୍ଟନାୟକ, ମଧୁସୂଦନ ପାଣିଗ୍ରାହୀ, ଆପନ୍ନା ପରିଚ୍ଛା, ଗୌରଚନ୍ଦ୍ର ସାମନ୍ତରାୟ, ବିଚିତ୍ରାନନ୍ଦ ଦାସ ଏବଂ ଲକ୍ଷ୍ମୀ ନାରାୟଣ ସାହୁ କେନ୍ଦ୍ର ଘରୋଇ ବିଭାଗ ସଭ୍ୟ ଶ୍ରୀ ମ୍ୟୁଡ଼ିମ୍ୟାନ୍‌ଙ୍କୁ ସାକ୍ଷାତ୍ ଆଲୋଚନା କରି ନୂତନ ପ୍ରଦେଶ ଗଠନ ଦାବି ଜଣାଇଥିଲେ । ପୁଣି କେନ୍ଦ୍ର ବିଧାନପରିଷଦରେ ୧ ୯ ୨ ୬ ଫେବ୍ରୁଆରି ଆଠ ତାରିଖ ଦିନ ପଣ୍ଡିତ ନୀଳକଣ୍ଠ କୌଣସି ପ୍ରଦେଶ ନୁହେଁ- ଏକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଦାବି ପ୍ରସ୍ତାବ ଆଗତ କରିଥିଲେ ଏବଂ ତାହାରି ଉପରେ ବିଶେଷ ଆଲୋଚନା ମଧ୍ୟ ହୋଇଥିଲା । ସେତିକିବେଳେ ଶ୍ରୀ ଭୁବନାନନ୍ଦ ଦାସଙ୍କ ଯୁକ୍ତିକୁ ଆଧାରକରି ବିହାର ସଭ୍ୟ ଗୟାପ୍ରସାଦ ସିଂହଙ୍କ ଯୁକ୍ତି ଥିଲା- ବର୍ତ୍ତମାନ ସବୁ ଓଡ଼ିଆ ଅଞ୍ଚଳଗୁଡ଼ିକର ଏକୀକରଣ କରାଯାଇ ଓଡ଼ିଶା ଡିଭିଜନ୍ ପୁନର୍ଗଠିତ ହେଉ ।

ଗୟାପ୍ରସାଦଙ୍କର ସେହି ପ୍ରସ୍ତାବ ସହିତ ଶ୍ରୀ ମ୍ୟୁଡ଼ିମ୍ୟାନ୍ ସମ୍ମତ ହୋଇଥିଲେ । ସେ ତାଙ୍କର ବକ୍ତବ୍ୟ ରଖିଥିଲେ ଯେ ତତ୍‌କାଳୀନ ରାଜନୀତିକ ପୃଷ୍ଠଭୂମିରୁ ସ୍ୱତନ୍ତ୍ର ଓଡ଼ିଶା ଗଠନ ପ୍ରସ୍ତାବ ରାଜକୀୟ କମିଶନ୍‌ପାଇଁ ସ୍ଥଗିତ ରଖାଯାଇ, ବର୍ତ୍ତମାନ ଯଦି ଆର୍ଥିକ ଅସ୍ୱଚ୍ଛଳତା ସୃଷ୍ଟି ନହୁଏ ତେବେ, ଓଡ଼ିଶା ଡିଭିଜନକୁ ସ୍ୱଳ୍ପ ମାତ୍ରାରେ ପୁନର୍ଗଠନ କରାଯାଇପାରେ । କେନ୍ଦ୍ର ତଥା ବିହାର-ଓଡ଼ିଶା ପ୍ରାଦେଶିକ ସରକାରଙ୍କୁ ଯଥାର୍ଥ ଅବଗତ କରାଇ ସେଥିପାଇଁ ସେ ଆବଶ୍ୟକ ପଦକ୍ଷେପମାନ ଗ୍ରହଣ କରିଥିଲେ । ତାଙ୍କରି ପରାମର୍ଶକ୍ରମେ ପୂର୍ବ ପ୍ରସ୍ତାବିତ ଗଞ୍ଜାମର ଦଶଟି ତାଲୁକାକୁ ଓଡ଼ିଶା ସହ ମିଶ୍ରଣ କରାଗଲେ ତାହାର ଆର୍ଥିକ ପରିଣତି ଅନୁଧ୍ୟାନପାଇଁ ବିହାର-ଓଡ଼ିଶା ସରକାରଙ୍କ ଅର୍ଥ ପରାମର୍ଶଦାତା ଶ୍ରୀ ୟୁ.ଏନ୍.ସେନ୍ ନିଯୁକ୍ତ ହୋଇଥିଲେ ।



Ama Odisha pdf (aamaodisha@gmail.com)

ଶ୍ରୀ ସେନ୍‌ଙ୍କ ଅନୁଧ୍ୟାନମୂଳକ ରିପୋର୍ଟରେ ଥିଲା ଯେ ଗଞ୍ଜାମର ଉକ୍ତ ଅଞ୍ଚଳଗୁଡ଼ିକର ବାର୍ଷିକ ଆୟ ୨୫.୦୬ ଲକ୍ଷ ଟଙ୍କା ଥିବାବେଳେ ବ୍ୟୟ ଅଟକଳର ମାତ୍ରା ୩୬.୪୨ ଲକ୍ଷ । ପ୍ରାୟ ୧୧.୫୦ଲକ୍ଷ ଟଙ୍କାର ଅଧିକ ବ୍ୟୟ ବରାଦ ପାଇଁ ପ୍ରାଦେଶିକ ସରକାର ବିଶେଷ ଭାବେ କୁଣ୍ଠିତ ହୋଇଥିଲେ । ଏହି ନିଅଣ୍ଟ ପରିମାଣ କେନ୍ଦ୍ର ଯଦି ଭରଣାକରେ ତା’ ହେଲେ ସେଭଳି ପ୍ରସ୍ତାବ ଗ୍ରହଣୀୟ ବୋଲି ବିହାର ଓଡ଼ିଶା ସରକାର କେନ୍ଦ୍ରକୁ ଜଣାଇବା ପରେ ଭାରତ ସରକାର ମଧ୍ୟ ସେ ଦିଗରେ ଆଉ ଅଧିକ ଆଗ୍ରହ ପ୍ରକାଶ କରିନଥିଲେ । ଅପେକ୍ଷା କରିବାକୁ ବରଂ ଶ୍ରେୟ ମନେ କରିଥିଲେ ବୈଧାନିକ କମିଶନଙ୍କ ଭାରତ ଆଗମନପାଇଁ । କାରଣ ବିଖ୍ୟାତ ସାଇମନ୍ କମିଶନ୍ ରୂପେ ପରିଚିତ ସେହି କମିଶନର ମୁଖ୍ୟ ଉଦ୍ଦେଶ୍ୟ ଥିଲା ବିଗତ ମଣ୍ଟେଗୁ ଚେମ୍‌ସଫୋର୍ଡ଼ ଶାସନ ସଂସ୍କାରର ପରିଣତି ଅନୁଧ୍ୟାନ କରିବା ସଙ୍ଗେସଙ୍ଗେ ବର୍ତ୍ତମାନ ପରିସ୍ଥିତିରେ ଆବଶ୍ୟକ ମନେ ହେଉଥିବା ଭାରତର ଶାସନ ସଂସ୍କାର ସଂପର୍କରେ ପରାମର୍ଶ ଦେବା ।

୧୯୨୭ ନଭେମ୍ବର ୨୬ ତାରିଖ ଦିନ ଇଂଲଣ୍ଡର ଲର୍ଡ଼ ସଭାରେ ସେହି ବୈଧାନିକ କମିଶନ ଗଠନ ହେବା କଥା ଘୋଷିତ ହୋଇଥିଲା । ସେହି କମିଟିରେ ଅନ୍ତର୍ଭୁକ୍ତ ହୋଇଥିବା ସମସ୍ତ ସାତଜଣ ବ୍ୟକ୍ତି ଇଂରେଜ ଥିବା କାରଣରୁ ଉକ୍ତ କମିଟିଟି ଗୋରା କମିଶନ୍ / ଗୋରା କମିଟି / ଅଲ୍ ହ୍ୱାଇଟ୍ କମିଶନ ରୂପେ ଅପଖ୍ୟାତି ଅର୍ଜନ କରିଥିଲା ଭାରତରେ । କମିଟିର ଅଧ୍ୟକ୍ଷ ରୂପେ କାର୍ଯ୍ୟ ନିର୍ବାହକ ଥିଲେ ସାର୍ ଜନ୍ ସାଇମନ୍ । ସେହି କାରଣରୁ ମଧ୍ୟ ଉକ୍ତ କମିଶନ୍ ବିଶେଷଭାବେ ପରିଚିତ ଥିଲା ସାଇମନ୍ କମିଶନ୍ ହିସାବରେ ।

ଭାରତୀୟ ଶାସନ ସଂସ୍କାରପାଇଁ ପରାମର୍ଶ ଦେବା ଲାଗି ଗଠିତ କମିଟିରେ କୌଣସି ଭାରତୀୟ ସଭ୍ୟ ନଥିବା କାରଣରୁ ଜାତୀୟ କଂଗ୍ରେସର ୧୯୨୭ ମାନ୍ଦ୍ରାଜ ଅଧିବେଶନରେ ତାହାକୁ ଭାରତବାସୀଙ୍କ ତରଫରୁ ଅଗ୍ରାହ୍ୟ କରାଯାଇଥିଲା । ସେହି ଅନୁକ୍ରମରେ ଭାରତରେ ଉକ୍ତ କମିଶନର ପ୍ରବେଶକୁ ସୁଦ୍ଧା ବିରୋଧ କରି ‘ସାଇମନ୍ ଗୋ ବ୍ୟାକ୍’– ସାଇମନ୍ ଫେରିଯାଅ ବୋଲି ବଜ୍ର ଆହ୍ୱାନ ଦିଆ ଯାଇଥିଲା । କମିଟିକୁ ସଂପୂର୍ଣ୍ଣ ଅସହଯୋଗପାଇଁ ପ୍ରସ୍ତୁତ ହୋଇ ରହିଥିଲା ଭାରତୀୟ ଜନ ସମୁଦାୟର ବିଶିଷ୍ଟ ଅଂଶବିଶେଷ ।

୧୯୨୮ ଫେବ୍ରୁଆରି ତିନି ତାରିଖ ଦିନ ମୁମ୍ବାଇଠାରେ ପହଞ୍ଚିବା ବେଳରୁ ହିଁ ଭାରତବାସୀଙ୍କର ସେଭଳି ମନୋଭାବର ଯଥାର୍ଥ ଆକଳନ କରି ପାରିଥିଲେ ଉକ୍ତ କମିଶନ୍‌ର ସଭ୍ୟବୃନ୍ଦ । ତେଣୁ ଏଠି ପହଞ୍ଚିବା ପରେ ପରେ ଭାରତର ବଡ଼ଲାଟଙ୍କ ନିକଟରେ ପ୍ରସ୍ତାବ ରଖିଥିଲେ ଯେ କମିଶନ୍‌ର ବୈଠକଗୁଡ଼ିକ ଗୋଟିଏ ଗୋଟିଏ ମିଳିତ ବୈଠକ ହେବା ବିଧେୟ । ଭାରତର ବିଭିନ୍ନ ପ୍ରାଦେଶିକ ବ୍ୟବସ୍ଥାପକ ସଭାର କେତେଜଣ ନିର୍ବାଚିତ ପ୍ରତିନିଧି କମିଶନ୍‌କୁ ସର୍ବାନ୍ତଃକରଣରେ ସହାୟତା ଯୋଗାଇଦେବା ସଙ୍ଗେସଙ୍ଗେ ଆପଣାର ସ୍ୱାଧୀନ ମତ ମଧ୍ୟ ବ୍ୟକ୍ତ କରି ପାରିବେ ବୋଲି ସ୍ଥିର ହୋଇଥିଲା । ତାହାର ପ୍ରମୁଖ ଉଦ୍ଦେଶ୍ୟ ଥିଲା ସରକାରୀ ସହାୟତା ।



Ama Odisha pdf (aamaodisha@gmail.com)

ସେହି କ୍ରମରେ ଅନ୍ୟାନ୍ୟ ପ୍ରାଦେଶିକ ସଭା ଭଳି ୧୯୨୮ ମସିହା ଅଗଷ୍ଟ ମାସରେ ବିହାର ଓଡ଼ିଶା ବିଧାନସଭା ତରଫରୁ ସାତଜଣିଆ କମିଟିଟିଏ ଗଠିତ ହୋଇଥିଲା । ସୌଭାଗ୍ୟକ୍ରମେ ସେଥିରେ ଅନ୍ତର୍ଭୁକ୍ତ ହୋଇଥିଲେ ଦୁଇଜଣ ଓଡ଼ିଆ ସଦସ୍ୟ– ଶ୍ରୀଯୁକ୍ତ ଲକ୍ଷ୍ମୀଧର ମହାନ୍ତି ଏବଂ କନିକାର ରାଜାସାହେବ । ସେଥିପାଇଁ ଓଡ଼ିଶାର ନେତୃମଣ୍ଡଳୀ– ବିଶେଷକରି ଡକ୍ଟର ହରେକୃଷ୍ଣ ମହତାବ୍ ଏବଂ ତାହାଙ୍କର ଅନୁଗାମୀମାନେ ସାଇମନ୍ କମିଶନ୍‌କୁ ସେଭଳି ସହଯୋଗ ପାଇଁ ଓଡ଼ିଆ ସଭ୍ୟଗଣଙ୍କୁ କଠୋର ଭାବରେ ସମାଲୋଚନା କରିଥିଲେ ।

ସରକାରୀ ତଥା ବେସରକାରୀ ଅନୁଷ୍ଠାନ, ବ୍ୟକ୍ତିବିଶେଷ ଏବଂ ଭାରତର ସ୍ୱାୟତ୍ତ ଶାସନ ସଂସ୍ଥାଗୁଡ଼ିକ ନିକଟରୁ ଲିଖିତ ଆବେଦନମାନ ଆହ୍ୱାନ କରିଥିଲେ କମିଶନ୍ । ସେମାନଙ୍କ ବିଚାର ପରିସରଭୁକ୍ତ ଯେ କୌଣସି ବିଷୟନେଇ ମତାମତ ଆହ୍ୱାନ କରାଯାଇଥିଲା । ଆବଶ୍ୟକ ମନେହେଲେ ଯେ କୌଣସି ବିଷୟ ସଂପର୍କରେ ଅଧିକ ବିଚାର ବିମର୍ଶ ତଥା ଅଧିକ ଅନୁସନ୍ଧାନପାଇଁ ମଧ୍ୟ ବ୍ୟବସ୍ଥା କରାଯାଇଥିଲା । ଉଲ୍ଲେଖଯୋଗ୍ୟ ଯେ ସେହି ଅନୁକ୍ରମରେ ହିଁ ନୂତନ ଓଡ଼ିଶା ପ୍ରଦେଶ ଗଠନ ସଂପର୍କରେ ଅଧିକ ତଥ୍ୟଗତ ଅନୁସନ୍ଧାନପାଇଁ ଅଟ୍‌ଲି ସବ୍‌କମିଟି ଗଠିତ ହୋଇଥିଲା ।

ହେଲେ ଦେଶର ଛତ୍ରେଛତ୍ରେ ଥିଲା ସାଇମନ୍ ଗୋବ୍ୟାକ୍ ପ୍ରଚାରପତ୍ର । ଯେତେବେଳେ ଯେଉଁ ସ୍ଥାନରେ କମିଶନ୍ ପହଞ୍ଚୁଥିଲା ସେଠି ପ୍ରବଳ ବିକ୍ଷୋଭ, କଳାପତାକା ପ୍ରଦର୍ଶନ; ଗୋବ୍ୟାକ୍ ସାଇମନ୍– ଉଚ୍ଚ ସ୍ୱରଲହରୀ । ବିକ୍ଷୋଭକାରୀଙ୍କୁ ପୋଲିସ୍‌ର ନିର୍ମମ ଅତ୍ୟାଚାର । ଅପରପକ୍ଷରେ କମିଶନ୍‌ଙ୍କୁ କଡ଼ା ସୁରକ୍ଷା ଦିଆ ଯିବାରେ ସାମାନ୍ୟତମ ଅବହେଳା ନରହିବା ସ୍ୱାଭାବିକ ।

ଭାରତୀୟ ଜାତୀୟ କଂଗ୍ରେସର ଏକ ଶାଖା ରୂପେ ଉତ୍କଳ କଂଗ୍ରେସ ଏବଂ ଅନୁଷ୍ଠାନରେ ଶୃଙ୍ଖଳିତ ସଦସ୍ୟ ରୂପେ ଉତ୍କଳୀୟ ନେତୃବୃନ୍ଦ ମଧ୍ୟ ଉକ୍ତ କମିଶନ୍‌କୁ ଯଥାସାଧ୍ୟ ବିରୋଧ କରିଥିଲେ । ଆଞ୍ଚଳିକ ଭାବେ ଏହି ଅଞ୍ଚଳର ନେତୃବୃନ୍ଦଙ୍କ ମଧ୍ୟରେ ବାସ୍ତବରେ ସିଂହଭାଗ ଥିଲେ ସେମାନେ । କିନ୍ତୁ ତଥାପି କେତେଜଣ ଉତ୍କଳୀୟ ଉଗ୍ର ଜାତୀୟବାଦୀ କଂଗ୍ରେସ ସହ ସାମିଲ ହୋଇ ନଥିଲେ କି କଂଗ୍ରେସର କାର୍ଯ୍ୟକଳାପରେ ସହଯୋଗ ମଧ୍ୟ କରିନଥିଲେ ବରଂ ଠିକ୍ ଓଲଟା ପଦକ୍ଷେପମାନ ଗ୍ରହଣ କରିଥିଲେ । ଏହି ଗୋଷ୍ଠୀରେ ଅନ୍ତର୍ଭୁକ୍ତ ଥିଲେ ସର୍ବଶ୍ରୀ କନିକା ରାଜା, ବ୍ରଜସୁନ୍ଦର ଦାସ, ଲକ୍ଷ୍ମୀଧର ମହାନ୍ତି, ପାରଳା ମହାରାଜା ଏବଂ ସେମାନଙ୍କ ଅନୁଗାମୀଗଣ । ଏମାନଙ୍କ ସହ ସମମତ ପୋଷଣ କରୁଥିଲେ ସର୍ବଶ୍ରୀ ଲିଙ୍ଗରାଜ ପାଣିଗ୍ରାହୀ, ଲାଲ୍ ମୋହନ ପଟ୍ଟନାୟକ, ମଧୁସୂଦନ ପାଣିଗ୍ରାହୀ ପ୍ରମୁଖ । ଉତ୍କଳ ସମ୍ମିଳନୀର ସଦସ୍ୟଗଣ ଥିଲେ ଏହିମତର ସପକ୍ଷବାଦୀ । ମହାରାଜା କୃଷ୍ଣଚନ୍ଦ୍ରଙ୍କ ସମେତ ସେମାନଙ୍କର ବିଶ୍ୱାସ ଦୃଢ଼ୀଭୂତ ହୋଇଥିଲା ଯେ ସମ୍ଭବତଃ ଦେଶର ଶାସନ ସଂସ୍କାର ସଂପର୍କିତ ପରାମର୍ଶ ଦେବାପାଇଁ ଆସିଥିବା ଉକ୍ତ ସର୍ବୋଚ୍ଚ କ୍ଷମତାସଂପନ୍ନ କମିଟି ହିଁ ଉତ୍କଳୀୟଙ୍କ ଦୁଃଖ ଲାଘବ କରିବାରେ ସମର୍ଥ



Ama Odisha pdf (aamaodisha@gmail.com)

ହୋଇପାରିବ । ସେହି କାରଣରୁ ସେମାନଙ୍କ ସହିତ ସହଯୋଗ କରାଯିବା ଆବଶ୍ୟକ ଏବଂ ଚାରୋଟି ପ୍ରଦେଶରେ ବିଭାଜିତ ହୋଇ ଦୁଃସ୍ଥିତିରେ ଥିବା ଉତ୍କଳୀୟଙ୍କ ବାସ୍ତବ ସମସ୍ୟା ପ୍ରତି ସେମାନଙ୍କ ଦୃଷ୍ଟି ଯଥାର୍ଥ ଭାବେ ଆକର୍ଷଣ କରାଯିବା ଆବଶ୍ୟକ ।

ସେମାନଙ୍କର ଲକ୍ଷ୍ୟବିନ୍ଦୁ ଥିଲା ଓଡ଼ିଆମାନଙ୍କପାଇଁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଏବଂ ସେଇ କାରଣରୁ ହିଁ ସେମାନେ ଓଡ଼ିଶା ଦେଶ ମିଶ୍ରଣ ଆନ୍ଦୋଳନ ଅବ୍ୟାହତ ରଖିଥିଲେ ଓଡ଼ିଶା କଂଗ୍ରେସ ସଭ୍ୟମାନଙ୍କର ସମସ୍ତ ନିଷ୍କ୍ରିୟତା ତଥା ଅସହଯୋଗ ସତ୍ତ୍ୱେ । ତେବେ ଓଡ଼ିଆମାନଙ୍କର ସେହି ଦାବିରେ କ'ଣ ଭାରତୀୟ ବା ଜାତୀୟ ଆନ୍ଦୋଳନର ଗତିରୋଧ କରିବା କିମ୍ବା ତାହାକୁ ଦୁର୍ବଳ କରିଦେବାର ଆଶଙ୍କା ଥିଲା କି ?

ସମ୍ଭବତଃ ଶତକଡ଼ା ଅନେଶତ ଅଂଶ ଥିଲା ନାସ୍ତିବାଚକ । ତଥାପି ଜାତୀୟ କଂଗ୍ରେସର ଶୃଙ୍ଖଳିତ ସଦସ୍ୟ ଭାବରେ ଓଡ଼ିଶାର କଂଗ୍ରେସ ସଭ୍ୟବୃନ୍ଦ ସେମାନଙ୍କ ଅନୁଷ୍ଠାନର ନୀତି ନିର୍ଦ୍ଧାରଣକୁ ହିଁ ସମ୍ମାନ ଦେଉଥିଲେ । ତେବେ ଏଠାରେ ସ୍ମରଣ ରଖାଯାଇପାରେ ଯେ ଗୋପବନ୍ଧୁଙ୍କଠାରୁ ଆରମ୍ଭ କରି ସମୟକ୍ରମେ ଯେଉଁ ନେତୃବର୍ଗ ଜାତୀୟ ରାଜନୀତିରେ ଅଂଶୀଦାର ଥିଲେ ସେମାନଙ୍କ ମଧ୍ୟରୁ ପ୍ରାୟ ସମସ୍ତେ ଥିଲେ ପ୍ରାଥମିକ ଅବସ୍ଥାରେ ଦେଶ ମିଶ୍ରଣ ଆନ୍ଦୋଳନର ଜଣେ ଜଣେ କର୍ଣ୍ଣଧାର । କିନ୍ତୁ ସମୟର ଅନୁରଣନରେ ସେମାନଙ୍କ ମନରେ ଦୃଢ଼ ଆସ୍ଥା ରୋପିତ ହୋଇଥିଲା ଯେ ଦେଶ ସ୍ୱାଧୀନ ହୋଇଯିବା ପରେପରେ ଜନଗଣଙ୍କ ଦ୍ୱାରା ନିର୍ବାଚିତ ପ୍ରତିନିଧିଗଣ ହିଁ ଆଭ୍ୟନ୍ତରୀଣ ସମସ୍ୟାଗୁଡ଼ିକର ସହଜ ସମାଧାନ କରିଦେଇ ପାରିବେ । ଜାତୀୟ ଆନ୍ଦୋଳନର ନେତୃତ୍ୱ ନେଉଥିବା ବାପୁଜୀ, ନେହେରୁ, ଆଜାଦ, ପଟେଲ୍ ଆଦି ତୁଙ୍ଗ ନେତୃତ୍ୱମାନଙ୍କର ମଧ୍ୟ ସେହି ବିଶ୍ୱାସ ଥିଲା । ତେଣୁ ଉତ୍କଳୀୟ ନେତୃତ୍ୱ ମଧ୍ୟ ବିଶ୍ୱାସ କରୁଥିଲା ଯେ ଦେଶର ସ୍ୱାଧୀନତା ହାସଲ ପରେ ଦେଶ ମିଶ୍ରଣ ଆନ୍ଦୋଳନର ଆବଶ୍ୟକତା ଆଉ ରହିବ ନାହିଁ । ଆମରି ଦ୍ୱାରା ନିର୍ବାଚିତ ଲୋକପ୍ରତିନିଧିମଣ୍ଡଳୀ ତାହାର ସହଜ ସମାଧାନ କରିଦେଇପାରିବ ।

କିନ୍ତୁ ସେହି ମୁଦ୍ରାର ଅନ୍ୟ ପାର୍ଶ୍ୱରେ ଥିବା ମଧୁବାବୁ, ପାରଳା ମହାରାଜା ପ୍ରମୁଖଙ୍କ ସମେତ ଉତ୍କଳ ସମ୍ମିଳନୀର କର୍ତ୍ତାଗଣଙ୍କ ଦୃଢ଼ ବିଶ୍ୱାସ ଥିଲା ଯେ ସ୍ୱତନ୍ତ୍ର ଓଡ଼ିଶା ଆନ୍ଦୋଳନ, କୌଣସି ପରିପ୍ରେକ୍ଷୀରେ, ଦେଶରେ ବେଶ୍ ଦୃଢ଼ ଦାନା ବାନ୍ଧିଥିବା ବୃହତ୍ତର ଜାତୀୟ ଆନ୍ଦୋଳନ ପଥରେ କଣ୍ଟକ ସଦୃଶ୍ୟ ନୁହେଁ– ବରଂ ଏହା ତାହାର ସହାୟକ । ଏଭଳି ଆଞ୍ଚଳିକ ଜାତୀୟତାବାଦରୁ ହିଁ ସୃଷ୍ଟି ମହାଭାରତୀୟ ଜାତୀୟ ଚେତନା । ଏହିଭଳି ମତବାଦୀ ମହାପୁରୁଷମାନଙ୍କ ଚିନ୍ତାଧାରା କେତେ ଯଥାର୍ଥ ଥିଲା ତାହା ବର୍ତ୍ତମାନ ସ୍ପଷ୍ଟ ଅନୁଭବ କରାଯାଇପାରେ । କିନ୍ତୁ ସେତେବେଳେ ସେହିଭଳି ମତ ପୋଷଣ ଯୋଗୁଁ ଅନେକ ଅନେକ ମତାନ୍ତର ସୃଷ୍ଟି ହୋଇଥିଲା । ତଥାପି ସେମାନେ ସେତେବେଳେ ଓଡ଼ିଶା ଆନ୍ଦୋଳନର ଅନ୍ୟତମ ସାରଥୀ ପାରଳା ଗଜପତିଙ୍କ ନେତୃତ୍ୱରେ



Ama Odisha pdf (aamaodisha@gmail.com)

ଯେଉଁଭଳି ସାହସିକ ପଦକ୍ଷେପମାନ ଗ୍ରହଣ କରିଥିଲେ ତାର ପରିଣାମ ସ୍ୱରୂପ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହୋଇପାରିଥିଲା ।

ଏଠି ସ୍ମରଣ ରଖାଯାଇପାରେ ଯେ ସେତେବେଳେ, ଓଡ଼ିଶା କଂଗ୍ରେସ ପ୍ରତିଷ୍ଠା ହେବା ପରେ ପରେ, ଦୀର୍ଘ କାଳ ଧରି ଲାଗି ରହିଥିବା ଆନ୍ଧ୍ର ଓଡ଼ିଶା ସୀମାବିବାଦର ସହଜ ସମାଧାନପାଇଁ ସ୍ୱୟଂ ଗାନ୍ଧିଜୀଙ୍କ ମଧ୍ୟସ୍ଥତାରେ ପ୍ରବଳ ଉଦ୍ୟମମାନ ହୋଇଥିଲେ ସୁଦ୍ଧା ତୁଙ୍ଗ ତେଲୁଗୁ କଂଗ୍ରେସୀ ନେତାଗଣଙ୍କ ଅସହଯୋଗ ଯୋଗୁଁ ତାହା ସମ୍ଭବପର ହୋଇପାରି ନଥିଲା କିମ୍ବା ସେତେବେଳେ ଯେଉଁସବୁ ଓଡ଼ିଆଭାଷୀ ଅଞ୍ଚଳ ବିଭିନ୍ନ କାରଣରୁ ଓଡ଼ିଶା ବାହାରେ ରହିଯାଇଥିଲେ, ଆମ ନିର୍ବାଚିତ ପ୍ରତିନିଧିମୂଳକ ସରକାର ଗଠିତ ହେବା ପରେ ସୁଦ୍ଧା ଆଉ ଓଡ଼ିଶାରେ ସାମିଲ୍ ହୋଇ ପାରି ନଥିଲା ।

ଏଇ ସମ୍ଭାବନାର ବାସ୍ତବତାକୁ ସେତେବେଳେ ସମ୍ଭବତଃ ଯଥାର୍ଥରେ ହୃଦୟଙ୍ଗମ କରିଥିଲେ କଂଗ୍ରେସ ବାହାରେ ଥିବା ଓଡ଼ିଆ ଏକୀକରଣ ଆନ୍ଦୋଳନର ନେତୃବୃନ୍ଦ । ଏହା ହିଁ ପ୍ରମାଣ କରାଇ ଦେଇଥିଲା ସେମାନଙ୍କ ପୁରୋଦୃଷ୍ଟି । ଏବଂ ସେମାନେ ସେତେବେଳେ ସ୍ଥିର କରିଥିଲେ ସବୁପ୍ରକାର ପ୍ରତିକୂଳ ପରିବେଶ ଓ ପରିସ୍ଥିତି ସତ୍ତ୍ୱେ ସାଇମନ୍ କମିଶନ୍ ସହିତ ଯୋଗାଯୋଗ କରିବେ ।

ଗଜପତି କୃଷ୍ଣଚନ୍ଦ୍ରଙ୍କ ସହିତ ସେମାନେ ସ୍ପଷ୍ଟ ରୂପେ ଜାଣିଥିଲେ ଯେ ସେଭଳି ପଦକ୍ଷେପ ପାଇଁ ସାରା ଦେଶରେ କଠୋର ନିନ୍ଦିତ ହେବେ । କମିଶନ୍‌ଙ୍କ ଆହ୍ୱାନ ସ୍ୱୀକାର କରି ସାକ୍ଷ୍ୟ ପ୍ରଦାନ କାର୍ଯ୍ୟ ସହଜରେ ଅନ୍ୟମାନଙ୍କପାଇଁ ଗ୍ରହଣଯୋଗ୍ୟ ହେବନାହିଁ । ତଥାପି ମହାରାଜାଙ୍କ ନେତୃତ୍ୱରେ ସେମାନେ ବିରୋଧୀ ମତବାଦୀମାନଙ୍କର ସମସ୍ତ ତୁଚ୍ଛ ତାସ୍ଥଲ୍ୟର ବିଷକୁ ନୀଳକଣ୍ଠ ହୋଇ ପାନ କରିବା ସଂଗେସଂଗେ ଦୃଢ଼ ପରିକର ଥିଲେ ସମଭାବାପନ୍ନ ବ୍ୟକ୍ତି ତଥା ଅନୁଷ୍ଠାନଗୁଡ଼ିକୁ ସେଥିନିମନ୍ତେ ଅଧିକ ଉତ୍ସାହିତ କରିବେ ।

ପ୍ରଥମେ ଅଣ୍ଟାରେ ଗାମୁଛା ଭିଡ଼ିଥିଲେ ଗଜପତି କୃଷ୍ଣଚନ୍ଦ୍ର । ଚଳଚଞ୍ଚଳ କରାଇ ଦେଇଥିଲେ ଉତ୍କଳ ସମ୍ମିଳନୀର ସଭ୍ୟଗଣଙ୍କୁ । ସେ ଓଡ଼ିଶାବାସୀ ତଥା ବିଚ୍ଛିନ୍ନାଞ୍ଚଳର ଓଡ଼ିଆ ଭାଷାଭାଷୀଜନଗଣଙ୍କୁ ଆହ୍ୱାନ ଦେଇଥିଲେ ଯେ- ସରକାରଙ୍କଠାରୁ ଉଚିତ ନ୍ୟାୟ ପାଇବାପାଇଁ ହାତପାହାନ୍ତାରେ ଥିବା ସୁଯୋଗକୁ କଦାପି ହାତଛଡ଼ା କରିବା ଉଚିତ ହେବନାହିଁ । ସେଥିପାଇଁ ବର୍ତ୍ତମାନ ହିଁ ପ୍ରକୃଷ୍ଟ ସମୟ । ବର୍ତ୍ତମାନ ଉଦ୍ୟମ ନକଲେ ସମ୍ଭବତଃ ତାହା ଆଉ ମିଳିବ ନାହିଁ । ଆମ ଆପଣାର ସ୍ୱାର୍ଥ ଆମକୁ ହିଁ ରକ୍ଷା କରିବାକୁ ପଡ଼ିବ । ସେଥିପାଇଁ ଆମକୁ କେହି କେବେ ବି ସହାୟକ ହେବେ ନାହିଁ । ମହାରାଜାଙ୍କ ସେହି ଉଦ୍ୟମ ବେଶ୍ ଫଳପ୍ରଦ ହୋଇଥିଲା । ଓଡ଼ିଶାବାସୀଙ୍କ ତରଫରୁ ସାଇମନ୍ କମିଶନ୍‌କୁ ସ୍ୱାଗତ କରାଯାଇଥିଲା ଏବଂ ସ୍ମାରକପତ୍ରମାନ ପ୍ରଦତ୍ତ ହୋଇଥିଲା ।



Ama Odisha pdf (aamaodisha@gmail.com)

ବ୍ରହ୍ମପୁରର ଓଡ଼ିଆ ସମାଜ ତରଫରୁ କମିଶନ୍‌କୁ ଏକ ସ୍ମାରକପତ୍ର ମାଧ୍ୟମରେ ଓଡ଼ିଆମାନଙ୍କପାଇଁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଦାବି କରାଯାଇଥିଲା । ସେଭଳି ସେହି ସହରର ମାନ୍ଦ୍ରାଜ ପ୍ରାଦେଶିକ ଓଡ଼ିଆ ସଂଘ ତରଫରୁ ୧୯୨୮ ମଇ ୩୦ ତାରିଖ ଦିନ ଏକ ସ୍ମାରକପତ୍ର ଭୁବନେଶ୍ୱର ରଥଙ୍କ ନେତୃତ୍ୱରେ କମିଶନଙ୍କୁ ପ୍ରଦାନ କରାଯାଇଥିଲା । ସେହିଭଳି ପ୍ରାକୃତିକ ଓଡ଼ିଶାର ବିଭିନ୍ନ ପ୍ରାନ୍ତରରୁ ଅସଂଖ୍ୟ ସ୍ମାରକପତ୍ର ତଥା ଟେଲିଗ୍ରାମ୍ ଜରିଆରେ ସେଇ ଏକା ପ୍ରକାରର ଦାବିପତ୍ର ସ୍ତୂପୀକୃତ ଆକାରରେ ଜମାହୋଇଥିଲା ସାଇମନ୍ କମିଶନଙ୍କ ନିକଟରେ । ମହାରାଜା କୃଷ୍ଣଚନ୍ଦ୍ରଙ୍କ ଉଦ୍ୟମ ବିଫଳ ହୋଇନଥିଲା ।

ଖୋଦ୍ ଗଜପତି କୃଷ୍ଣଚନ୍ଦ୍ର ୧୯୨୮ ମସିହା ଜୁନ୍ ମାସରେ ବ୍ୟକ୍ତିଗତ ଭାବେ ମାନ୍ଦ୍ରାଜ ଯାଇ କମିଶନ୍ ନିକଟରେ ସାକ୍ଷ୍ୟପ୍ରଦାନ କରିଥିଲେ । ସେଇଠି ସେ ଦୃଢ଼ ଯୁକ୍ତି ଉପସ୍ଥାପନ କରିଥିଲେ ଯେ ପ୍ରାକୃତିକ ଓଡ଼ିଶାର ସବୁ ଓଡ଼ିଆଙ୍କୁ ଏକ ଶାସନାଧୀନ ରଖାଯାଇ ସ୍ୱତନ୍ତ୍ର ପ୍ରଦେଶ ଗଠିତ ହେଉ । କମିଶନଙ୍କ ନିକଟରେ ଉପସ୍ଥାପିତ ବିଭିନ୍ନ ସ୍ମାରକପତ୍ରରେ ଦାବି କରାଯାଇଥିଲା ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ବିଚାର ବେଳେ ତାହାର ଆର୍ଥିକ ଦିଗ ପ୍ରତି ବିଶେଷ ଗୁରୁତ୍ୱ ଆରୋପ କରାନଯାଇ ଭାଷାଭିତ୍ତିକ ବିଚାର ଅଗ୍ରଗଣ୍ୟ ହେଉ । ଚାରୋଟି ପ୍ରାଦେଶିକ ସରକାରରେ ସଂଖ୍ୟାନ୍ୟୂନ ଭାବେ ଯୁକ୍ତ ହୋଇ ଓଡ଼ିଆମାନେ ରହିବା ବ୍ୟତୀତ ଅନ୍ୟ କେତୋଟି ଦେଶୀୟ ରାଜ୍ୟରେ ସେମାନେ ବସବାସ କରି ରହୁଥିବା ଯୋଗୁଁ ସେଗୁଡ଼ିକର ସମ୍ମିଶ୍ରଣ ଏକାନ୍ତ ଆବଶ୍ୟକ ।

ଏହି ଘଟଣା କ୍ରମରେ ଯେଉଁ ବିଶେଷ ଉଲ୍ଲେଖଯୋଗ୍ୟ ଘଟଣାଟି ଘଟଥିଲା, ତାହା ଥିଲା ଉତ୍କଳ ସମ୍ମିଳନୀର ସଦସ୍ୟଗଣଙ୍କ ଦ୍ୱାରା ଓଡ଼ିଶାବାସୀଙ୍କ ତରଫରୁ ସାଇମନ୍ କମିଶନ୍‌କୁ ବିହାର-ଓଡ଼ିଶା ପ୍ରଦେଶର ରାଜଧାନୀ ପାଟଣା ରେଳ ଷ୍ଟେସନରେ ସ୍ୱାଗତ ସମ୍ବର୍ଦ୍ଧନା । ସେଇ ଅଭ୍ୟର୍ଥନା ଜଣାଇବାପାଇଁ ଯେଉଁ ଓଡ଼ିଆ ନେତୃବର୍ଗ ସେଠାରେ ଉପସ୍ଥିତ ଥିଲେ ସେମାନଙ୍କ ମଧ୍ୟରେ ଥିଲେ କନିକା ରାଜା, ବ୍ରଜସୁନ୍ଦର ଦାସ, ଲକ୍ଷ୍ମୀଧର ମହାନ୍ତି, ଭିକାରୀ ଚରଣ ପଟ୍ଟନାୟକ ପ୍ରମୁଖ ମାନେ । ସେମାନଙ୍କ ହାତରେ ବିଜ୍ଞାପନ- Orissa Welcomes Simon - ଓଡ଼ିଶା ସାଇମନ୍‌ଙ୍କୁ ସ୍ୱାଗତ କରେ । ସାରା ରେଳଷ୍ଟେସନ୍‌ରେ ବିଛୁରିତ ହୋଇ ପଡ଼ିଥିଲା ସେଇ ପ୍ରଚାରପତ୍ର ।

ସମ୍ଭବତଃ ସାରା ଭାରତରେ ପାଟଣା ହିଁ ଥିଲା ଏକମାତ୍ର ସ୍ଥାନ ଯେଉଁଠି ସେଇ ଗୋରା କମିଶନ୍ ସ୍ୱାଗତଂର ମଧୁର ସ୍ୱନ ଶୁଣିବାକୁ ପାଇଥିଲେ । ସବୁ ସ୍ଥାନରେ ସ୍ଥାନୀୟ ଜନଗଣଙ୍କଠାରୁ କେବଳ ଅସହଯୋଗ ଲାଭ କରିଥିବା ବେଳେ ସହଯୋଗର ହାତ ଲମ୍ବି ଆସିଥିବା ସାଇମନ୍ କମିଶନ୍ ଲକ୍ଷ୍ୟ କରିଥିଲେ ଓଡ଼ିଶାବାସୀଙ୍କ ତରଫରୁ । ସେଭଳି ଅଚାନକ ଭାବରେ ସ୍ୱାଗତ ସମ୍ବର୍ଦ୍ଧନା ପାଇ ଜନ୍ ସାଇମନ୍‌ଙ୍କ ସମେତ କମିଶନ୍‌ର ସଭ୍ୟଗଣ ଅତ୍ୟନ୍ତ ଉତ୍‌ଫୁଲ୍ଲିତ ହୋଇ ଉଠିଥିବେ ନିଶ୍ଚୟ । ଦେଶର ସର୍ବତ୍ର କଳାପତାକା ସହ ସାଇମନ୍ ଗୋ ବ୍ୟାକ୍‌ର କାନଫଟା ଶବ୍ଦ



Ama Odisha pdf (aamaodisha@gmail.com)

ପରିବର୍ତ୍ତେ ମାତ୍ର ଗୋଟିଏ ସ୍ଥାନରେ ସ୍ୱାଗତଂ ଭଳି ମଧୁର ଶବ୍ଦ ସେମାନଙ୍କ ହୃଦୟକନ୍ଦରରେ ଏକ ଆନନ୍ଦ ଲହରୀ ସୃଷ୍ଟି କରିଥିବ । ୧୯୨୮ ମସିହା ଡିସେମ୍ବର ୧୨ ତାରିଖ ଦିନ ସେମାନେ ରେଳରୁ ଓହ୍ଲାଇ ପ୍ଲେଟ୍‌ଫର୍ମ ଦେଇ ବାହାରକୁ ବାହାରୁଥିବା ଅବସରରେ କମିଶନ୍‌ର ଅନ୍ୟତମ ସଦସ୍ୟ ମେଜର୍ ଅଟଲି ପ୍ଲେଟ୍‌ଫର୍ମ ଉପରେ ବିଚ୍ଛୁରିତ ହୋଇ ପଡ଼ିଥିବା ଅଂସଖ୍ୟ ପ୍ରଚାରପତ୍ର ଭିତରୁ ଗୋଟିଏ ଦୁଇଟି ଉଠାଇ ସାଂଗରେ ନେଇଥିଲେ । ଏବଂ ସମ୍ଭବତଃ ସେଇଠୁ ହିଁ ଆରମ୍ଭ ହୋଇଥିଲା ସେମାନଙ୍କର ଓଡ଼ିଆ ଦରଦୀ ମନୋଭାବ ।

କମିଶନ୍ ସମକ୍ଷରେ ସାକ୍ଷ୍ୟ ଦେବାପାଇଁ ଓଡ଼ିଶାରୁ ବ୍ରଜସୁନ୍ଦର ଦାସଙ୍କ ନେତୃତ୍ୱରେ ଯାଇଥିଲେ ସର୍ବଶ୍ରୀ ନାରାୟଣ ଚନ୍ଦ୍ର ବୀରବର ଧୀର ନରେନ୍ଦ୍ର, ଗୋପାଳ ଚନ୍ଦ୍ର ପ୍ରହରାଜ, ଭିକାରି ଚରଣ ପଟ୍ଟନାୟକ, ବାରିଷ୍ଟର ବିଶ୍ୱନାଥ ମିଶ୍ର ଏବଂ ଭାଗବତ ପ୍ରସାଦ ମହାପାତ୍ର ପ୍ରମୁଖ ବ୍ୟକ୍ତିମାନେ । ବ୍ରଜସୁନ୍ଦର ବାବୁଙ୍କ ପ୍ରଥମ ସମ୍ଭାଷଣ ଥିଲା- ବିହାର-ଓଡ଼ିଶା ପ୍ରଦେଶର ରାଜଧାନୀ ପୁରାତନ ନଗରୀ ପାଟଳିପୁତ୍ରକୁ ଓଡ଼ିଆ ଜନଗଣଙ୍କ ତରଫରୁ ଆମ୍ଭେ ଉତ୍କଳ ସମ୍ମିଳନୀର ସଦସ୍ୟଗଣ ଆପଣମାନଙ୍କୁ ହାର୍ଦ୍ଦିକ ସ୍ୱାଗତ ଜଣାଉଛୁ । ପ୍ରତ୍ୟୁତ୍ତରରେ ସାତଜଣିଆ କମିଶନ୍‌ର ଅଧ୍ୟକ୍ଷ ଧନ୍ୟବାଦ ଜଣାଇବା ସଂଗେସଂଗେ ଆପଣାର କୃତଜ୍ଞତା ମଧ୍ୟ ପ୍ରକାଶ କରିଥିଲେ ।

ସେହି କମିଶନ୍ ନିକଟରେ ପ୍ରତିନିଧିଗଣ ଚାରୋଟି ପ୍ରାଦେଶିକ ସରକାରଙ୍କ ଅଧୀନରେ ଭାଗଭାଗ ହୋଇ ସୀମାନ୍ତ ଅଞ୍ଚଳ ରୂପେ ରହିଥିବା ଓଡ଼ିଆମାନଙ୍କ ଦୁର୍ଦ୍ଦଶା ପ୍ରାଂଜଳ ଭାବରେ ଉପସ୍ଥାପନ କରିଥିଲେ । ମତ ପ୍ରକାଶ କରିଥିଲେ ଯେ ଗୋଟିଏ ପ୍ରକାଣ୍ଡ ବୃକ୍ଷତଳେ କ୍ଷୁଦ୍ରକ୍ଷୁଦ୍ର ଚାରା ବଂଚି ରହିବା କଷ୍ଟକର । ଯଦିବା ବଂଚି ରହେ ତାହେଲେ ସେଗୁଡ଼ିକ ପଙ୍ଗୁ ବା ଅଥର୍ବ ଭଳି ବଂଚି ରହିପାରେ । ଠିକ୍ ସେହିଭଳି ଅବସ୍ଥାରେ ଥିବା ସବୁ ଓଡ଼ିଆ ଅଞ୍ଚଳକୁ ଏକତ୍ରକରି ଏକ ସ୍ୱତନ୍ତ୍ର ପ୍ରଦେଶ ଗଠିତ ହେବା ନିହାତି ଆବଶ୍ୟକ । କମିଶନର ସଭ୍ୟମାନଙ୍କୁ ହୃଦ୍‌ବୋଧ କରାଇବାପାଇଁ ଚେଷ୍ଟା କରିଥିଲେ ଯେ ପ୍ରାକୃତିକ ଓଡ଼ିଶାର ସବୁ ଓଡ଼ିଆଙ୍କ ଆକାଂକ୍ଷା ସେହି ଏକା ରକମର ।

ସେଇ ଆଲୋଚନା ବେଳେ ସାଇମନ୍ କମିଶନ୍‌ର ଜଣେ ସଭ୍ୟ ଏକ ବିକଳ୍ପ ପ୍ରସ୍ତାବ ଉପସ୍ଥାପନ କରିଥିଲେ ଯେ ଜଣେ ଗଭର୍ଣ୍ଣରଙ୍କଦ୍ୱାରା ଶାସିତ ପ୍ରଦେଶଟିଏ ଗଠନ ସମ୍ଭବ ନହେଲେ ତତ୍‌ପରବର୍ତ୍ତୀ ଉପ-ପ୍ରଦେଶଟିଏ ଗଠିତ ହେଲେ କେମିତି ହୁଅନ୍ତା ! ପ୍ରତ୍ୟୁତ୍ତରରେ ସେଠି ଉପସ୍ଥିତ ସମସ୍ତ ଓଡ଼ିଆ ସଦସ୍ୟ ସେଭଳି ପ୍ରସ୍ତାବକୁ ସଂପୂର୍ଣ୍ଣ ଅସ୍ୱୀକାର କରିଥିଲେ । ତାହା ହିଁ ଥିଲା ପାରଳା ମହାରାଜାଙ୍କ ପରାମର୍ଶ । ସେହି ସଦସ୍ୟଗଣ ସେମାନଙ୍କର ଏକମାତ୍ର ଦାବି ଉପରେ ଗୁରୁତ୍ୱ ଆରୋପ କରିଥିଲେ ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ଗଠନପାଇଁ । ସେହି ପ୍ରସଙ୍ଗରେ କମିଶନ୍ ବିହାର ଓଡ଼ିଶା ପ୍ରାଦେଶିକ କମିଟିର ସହଯୋଗୀ ସଭ୍ୟମାନଙ୍କ ସହିତ ମଧ୍ୟ ୧୯୨୮ ମସିହା ଡିସେମ୍ବର ୧୪ ତାରିଖ ଦିନ ଆଲୋଚନା କରିଥିଲେ ।



Ama Odisha pdf (aamaodisha@gmail.com)

ଆପାତତଃ ଗଜପତି କୃଷ୍ଣଚନ୍ଦ୍ରଙ୍କ ଉଦ୍ୟମ ସଫଳ ହୋଇଥିଲା । ତାଙ୍କର ପ୍ରରୋଚନା ଏବଂ ପ୍ରଚୋଦନା କ୍ରମେ ସାଇମନ୍ କମିଶନ୍‌କୁ ସ୍ୱାଗତ କରାଯିବା ସମେତ ଯୁକ୍ତିଯୁକ୍ତ ବଳିଷ୍ଠ ସାକ୍ଷ୍ୟ ପ୍ରଦାନର ପରିଣାମ ସ୍ୱରୂପ ଗୋରା କମିଶନ୍‌ର ହୃଦ୍‌ବୋଧ ହୋଇଥିଲା ଯେ ପ୍ରକୃତରେ ଓଡ଼ିଆମାନେ ବିଭିନ୍ନ ପ୍ରାଦେଶିକ ଶାସନରେ ସଂଖ୍ୟାଲଘୁ ହିସାବରେ କାଳାତିପାତ କରି ଅବହେଳିତ ଅବସ୍ଥାରେ ରହିଛନ୍ତି । ସେମାନଙ୍କର ଯଥାର୍ଥ ହୃଦ୍‌ବୋଧ ହୋଇଥିଲା ଯେ ଭାରତର ବିଭିନ୍ନ ପ୍ରଦେଶ ମଧ୍ୟରୁ ବିହାର-ଓଡ଼ିଶା ପ୍ରଦେଶର ଗଠନ କେବଳ  ଭ୍ରମାତ୍ମକ ନୁହେଁ, ଅପ୍ରାକୃତିକ ମଧ୍ୟ । ଭାଷା, ଜାତି, ସଂସ୍କୃତି ଏବଂ ସର୍ବୋପରି ପ୍ରାକୃତିକ ଗଠନ ଇତ୍ୟାଦି ସବୁ ଦୃଷ୍ଟିରୁ ଦେଖିଲେ ଏହି ପ୍ରଦେଶରେ ତିନୋଟି ଭୌଗୋଳିକ ଅଞ୍ଚଳ ପରସ୍ପରଠାରୁ ବହୁ ଭାବରେ ସ୍ୱତନ୍ତ୍ର ମନେହୁଏ । ପ୍ରଦେଶର ରାଜଧାନୀ ପାଟଣାଠାରେ କମିଶନକୁ ସାକ୍ଷାତ କରିବାପାଇଁ ଓଡ଼ିଶାର ପ୍ରତିନିଧିଗଣଙ୍କୁ ଅନ୍ୟ ଏକ ପ୍ରଦେଶ-ବଙ୍ଗ ପ୍ରାଦେଶିକ ସୀମାଦେଇ ଆସିବାକୁ ହୋଇଥିଲା । ତଦ୍‌ବ୍ୟତୀତ ଅନ୍ୟ କୌଣସି ବିକଳ୍ପ ନଥିଲା । ଏହି ତଥ୍ୟ କମିଶନ୍‌ର ସଦସ୍ୟଗଣଙ୍କୁ ଓଡ଼ିଆମାନଙ୍କର ସାଧାରଣ ଅବସ୍ଥା ଆକଳନପାଇଁ ଯଥେଷ୍ଟ ସହାୟକ  ହୋଇଥିଲା । ସ୍ୱାଗତଂ ସାଇମନ୍ ଧ୍ୱନି ଏବଂ ପୁରାତନ ନଗରୀ ପାଟଳିପୁତ୍ରକୁ ସ୍ୱାଗତ ସମ୍ଭାଷଣରେ ପୁଲକିତ ଗୋରା କମିଶନ୍‌ର ସଭ୍ୟଗଣଙ୍କ ହୃଦୟ ଓଡ଼ିଆଙ୍କ ଦୁଃସ୍ଥିତି ସଂପର୍କିତ ତଥ୍ୟାବଳୀରେ ଦୟାର୍ଦ୍ରୀଭୂତ ହୋଇଯାଇଥିଲା ଏବଂ କମିଶନ୍‌ଙ୍କ ଆନ୍ତରିକ ଅଭିବ୍ୟକ୍ତି ଥିଲା- ଓଡ଼ିଆଭାଷୀ ଲୋକଙ୍କ ସମସ୍ୟା ବାସ୍ତବରେ ଅତ୍ୟଧିକ ଏବଂ ତାହାର ପ୍ରତିକାରର ପନ୍ଥା ବିଚାର କରାଯିବା ଏକାନ୍ତ ଜରୁରୀ ।

ଅନୁସନ୍ଧାନ ସମୟରେ କମିଶନ୍‌ଙ୍କ ସେଇ ଆନ୍ତରିକ ଅନୁଭବ ଯୋଗୁଁ ହିଁ ତତ୍ ସଂପର୍କରେ ଅଧିକ ବିଚାର ବିମର୍ଶ ଏବଂ ଅନୁଧ୍ୟାନ ପାଇଁ ତତ୍‌କାଳ ସେମାନେ ଜାତୀୟ ସ୍ତରୀୟ ଉପ-କମିଟିଟିଏ ଗଠନ କରିଥିଲେ । ତାହାର ଅଧ୍ୟକ୍ଷ ଦାୟିତ୍ୱ ଅର୍ପିତ ହୋଇଥିଲା ରାଜକୀୟ କମିଶନ୍‌ର ଅନ୍ୟତମ ସଭ୍ୟ ମେଜର ଅଟଲିଙ୍କ ଉପରେ । ପ୍ରାଦେଶିକ ସରକାରଙ୍କ ତରଫରୁ କନିକା ରାଜା ଏବଂ ଲକ୍ଷ୍ମୀଧର ମହାନ୍ତିଙ୍କ ସମେତ କେନ୍ଦ୍ର ସରକାରଙ୍କ ପ୍ରତିନିଧି ରୂପେ ଶ୍ରୀଯୁକ୍ତ ସୁରାଓ୍ୱର୍ଦ୍ଦି- ଏହି ତିନିଜଣ ସଭ୍ୟ ଅଟଲି ସବ୍ କମିଟିରେ ଅନ୍ତର୍ଭୁକ୍ତ ହୋଇଥିଲେ । ସ୍ୱାଧୀନ ଭାବରେ ସ୍ୱତନ୍ତ୍ର ଓଡ଼ିଶା ଦାବିର ପୁଙ୍ଖାନୁପୁଙ୍ଖ ତଦନ୍ତ କରି ସାଇମନ୍ କମିଶନ୍‌କୁ ମତାମତ ଦେବା ଥିଲା ଏହି କମିଟିର ଲକ୍ଷ୍ୟ । ସେଥିପାଇଁ ସେମାନେ ବିଭିନ୍ନ ଓଡ଼ିଆ ଅଞ୍ଚଳ ଗସ୍ତକରି ସାକ୍ଷ୍ୟ ଗ୍ରହଣ କରିବାପାଇଁ ଯୋଜନା କରିଥିଲେ ।

ସେତିକିବେଳେ ମହାରାଜା କୃଷ୍ଣଚନ୍ଦ୍ର ତାହାଙ୍କର ସମର୍ଥକଗଣଙ୍କୁ ନେଇ ସାଧାରଣ ଜନମତ ସୃଷ୍ଟି କରିବାରେ ଏବଂ ଯଥାର୍ଥ ଭାବେ ଉପସ୍ଥାପିତ କରିବାରେ ତତ୍‌ପର ହୋଇଉଠିଥିଲେ । ଅଟଲି ସବ୍‌କମିଟି ଉପାନ୍ତ ଅଞ୍ଚଳସବୁ ଗସ୍ତ କରିବା ଅବସରରେ ବିଭିନ୍ନ ସ୍ତରରୁ ପ୍ରତ୍ୟକ୍ଷ ଭାବେ ଦାବି, ସ୍ମାରକପତ୍ର ତଥା ଜନଗଣଙ୍କ ମତାମତ ସଂଗ୍ରହ କରିବା ସଂଗେସଂଗେ ଦେଶ



Ama Odisha pdf (aamaodisha@gmail.com)

ମିଶ୍ରଣ ବିରୋଧୀ ମତ ପୋଷଣ କରୁଥିବା ସମସ୍ତଙ୍କଠାରୁ ତଥ୍ୟ ସଂଗ୍ରହ କରିଥିଲେ । ଗଭୀର ଭାବରେ ସେସବୁର ଅନୁଧ୍ୟାନ କରିଥିଲେ ଏବଂ ସ୍ୱତନ୍ତ୍ର ପ୍ରଦେଶ ସପକ୍ଷରେ ମତ ପୋଷଣ କରିଥିଲେ । ପୁଣି ନୂତନ ପ୍ରଦେଶ ଗଠିତ ହେଲେ ତାହାର ଆର୍ଥିକ ଅସ୍ୱଚ୍ଛଳତା ନେଇ ଶ୍ରୀ ସେନ୍‌ଙ୍କ ମତାମତକୁ ଅବାସ୍ତବ ବୋଲି ମଧ୍ୟ ମନେ କରିଥିଲେ । ଏକ ଅନୁନ୍ନତ ଅଞ୍ଚଳ ହିସାବରେ କିମ୍ବା ସାମୟିକ ବନ୍ୟା, ଦୁର୍ଭିକ୍ଷ ଭଳି ଅନଟନର ମୁକାବିଲାପାଇଁ କେନ୍ଦ୍ର ସହାୟତା ବ୍ୟତୀତ ସାଧାରଣ ସମୟରେ ନୂତନ ପ୍ରସ୍ତାବିତ ରାଜ୍ୟ ଆପଣାର ଆର୍ଥିକ ଗୁଜରାଣ ମେଣ୍ଟାଇ ପାରିବ ବୋଲି ମତ ଦେଇଥିଲେ ।

ସାଇମନ୍ କମିଶନ୍ ଅଟଲି ସବ୍‌କମିଟିର ସୁପାରିଶକୁ କେବଳ ଗ୍ରହଣ କରି ନଥିଲେ ତତ୍ ସହିତ ନୂତନ ପ୍ରଦେଶ ଗଠିତ ହେଲେ କେଉଁକେଉଁ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ତତ୍‌ସହିତ ଅନ୍ତର୍ଭୁକ୍ତ ହେବା ବିଧେୟ ତାହା ମଧ୍ୟ ଉଲ୍ଲେଖ କରିଥିଲେ । ସେଥିରେ ଥିଲା ସ୍ୱାଭାବିକ ଭାବେ ବିହାର-ଓଡ଼ିଶାରେ ଥିବା ଓଡ଼ିଶା ଡିଭିଜନ୍ । ତତ୍‌ସହିତ ପ୍ରାକୃତିକ ଉତ୍କଳର ଗଡ଼ଜାତ ସମୂହ ଏବଂ ଅନୁଗୋଳ, ବଙ୍ଗଶାସନାଧୀନ ଗୋପୀବଲ୍ଲଭପୁର ଏବଂ ମୋହନପୁରର କିଛିକିଛି ଅଂଶ, କେନ୍ଦ୍ରପ୍ରଦେଶର ଖଡ଼ିଆଳ ରାଜ୍ୟ ଏବଂ ମାନ୍ଦ୍ରାଜ ଅଧୀନସ୍ଥ ଗଂଜାମ ଜିଲ୍ଲା । ତେବେ ଅନ୍ୟାନ୍ୟ ଓଡ଼ିଆ ଅଞ୍ଚଳ ଯଥା ଜୟପୁର ଏବଂ ସିଂହଭୂମକୁ ବିଭିନ୍ନ କାରଣରୁ ସେଥିରେ ଅନ୍ତର୍ଭୁକ୍ତ କରାଯାଇନଥିଲା । ତତ୍‌ସହିତ ନୂତନ ଓଡ଼ିଶାପ୍ରଦେଶ ଗଠନପାଇଁ ଆବଶ୍ୟକ ସୀମା କମିଶନ୍ ଗଠନ କରାଯିବା ଭଳି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ବିଲାତ ସରକାରଙ୍କୁ ସୁପାରିଶ କରିଥିଲେ କମିଶନ୍ । ମହାରାଜା କୃଷ୍ଣଚନ୍ଦ୍ରଙ୍କର ତଥା ଉତ୍କଳ ସମ୍ମିଳନୀର ବିଭିନ୍ନ ପଦକ୍ଷେପର ଏହା ହିଁ ଥିଲା ସୁଫଳ ।

ସାଇମନ୍ କମିଶନ୍‌ଙ୍କ ସୁପାରିଶ ୧୯୩୦ ମସିହା ଜୁନ୍ ସାତ ତାରିଖ (ଅନ୍ୟ କେତେକ ଗ୍ରନ୍ଥ ମଇ ୨୭ ବୋଲି ଉଲ୍ଲେଖ ରହିଛି)ରେ ପ୍ରକାଶ ପାଇଥିଲା । ଅନ୍ୟାନ୍ୟ ପ୍ରସ୍ତାବ ସମେତ ସେଥିରେ ଥିବା ନୂତନ ଓଡ଼ିଶା ପ୍ରଦେଶ ଗଠନ ନେଇ ଦିଆଯାଇଥବା ପ୍ରସ୍ତାବ ସଂପର୍କରେ ସଂପୃକ୍ତ ପ୍ରାଦେଶିକ ସରକାରଙ୍କ ନିକଟରୁ ମତାମତମାନ ଆହ୍ୱାନ କରାଯାଇଥିଲା । ତାହାର ଉତ୍ତର ଦେଇ ବିହାର, ବଙ୍ଗ ତଥା ମଧ୍ୟପ୍ରଦେଶର ସରକାର ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ସମର୍ଥନ ଜଣାଇ ନୂତନ ପ୍ରଦଶ ଲାଗି ପ୍ରସ୍ତାବିତ ସୀମା କମିଟି ଗଠିତ ହେବା ଉଚିତ ବୋଲି ସ୍ପଷ୍ଟ ମତ ପ୍ରକାଶ କରିଥିଲେ । କିନ୍ତୁ ମାନ୍ଦ୍ରାଜ ସରକାରଙ୍କ ମତାମତ ଥିଲା ପୂର୍ବ ଭଳି ଦ୍ୱିଧାଯୁକ୍ତ । ତଥାପି ଭାରତର ବଡ଼ଲାଟ୍ ସ୍ୱତନ୍ତ୍ର ଓଡ଼ିଶା ଗଠନପାଇଁ ପରବର୍ତ୍ତୀ ପଦକ୍ଷେପମାନ ଗ୍ରହଣ କରିବାକୁ ଇଂଲଣ୍ଡର ଭାରତ ବିଭାଗ ସଚିବଙ୍କୁ ପତ୍ର ଲେଖିଥିଲେ । ୧୯୩୦ ମସିହା ସେପ୍ଟେମ୍ବର ୨୦ ତାରିଖ ଦିନ ପ୍ରସ୍ତାବ କରିଥିଲେ ନୂତନ ପ୍ରଦେଶର ସୀମା ନିର୍ଦ୍ଧାରଣ ପାଇଁ ଏକ କମିଟି ତୁରନ୍ତ ଗଠନ କରାଯିବା ଆବଶ୍ୟକ ।



Ama Odisha pdf (aamaodisha@gmail.com)



ଚୀନ୍ ଆକ୍ରମଣ ବେଳେ ପ୍ରତିରକ୍ଷା ପାଣ୍ଠିକୁ ସୁବର୍ଣ୍ଣ ଦାନ



Ama Odisha pdf (aamaodisha@gmail.com)

ଭାରତ ସରାକାରଙ୍କ ସେଭଳି ମତାମତରେ ଉତ୍କଳୀୟମାନଙ୍କ ମନରେ ଆଶାର ଦିଗ୍‌ବଳୟ ନାନାବର୍ଣ୍ଣରେ ବିଭୂଷିତ ହୋଇ ଉଠିଥିଲା । ପାରଳା ମହାରାଜା, ଉତ୍କଳ ସମ୍ମିଳନୀର ସଭ୍ୟବୃନ୍ଦଙ୍କ ସମେତ ପ୍ରାକୃତିକ ଉତ୍କଳର ଓଡ଼ିଆମାନେ ବିଶେଷ ଭାବରେ ଉତ୍‌ଫୁଲ୍ଲିତ ହୋଇ ଉଠିଥିଲେ । ଓଡ଼ିଶା ତରଫରୁ ସାଇମନ୍ କମିଶନ୍‌କୁ ସ୍ୱାଗତ କରାଯିବାର ପରିଣାମ ବ୍ୟତୀତ ଏହା ଆଉ କ'ଣ ହୋଇପାରେ ! ତେବେ କମିଶନ୍‌କୁ ବର୍ଜନ କରିଥିବା ଉତ୍କଳୀୟ ନେତୃମଣ୍ଡଳୀର ହୃଦୟରେ ଗଭୀର ବିସ୍ମୟ ଅନ୍ତଃସଲିଳା ଫଲ୍‌ଗୁ ହୋଇ ବୋହି ଯାଇଥିବ ନିଶ୍ଚୟ । ତତ୍ ପରେପରେ ଓଡ଼ିଶାର ନେତୃବୃନ୍ଦ ଏପରିକି ସବୁ ରାଜନୀତିକ ନେତା, ଦଳମତ ନିର୍ବିଶେଷରେ, ପ୍ରସ୍ତାବିତ ସୀମା କମିଟି ସହିତ ସହଯୋଗ କରି ସାକ୍ଷ୍ୟ ପ୍ରମାଣ ଦେବାପାଇଁ ସ୍ଥିର ହୋଇଥିଲା । ତାର କାରଣ ଥିଲା ଦୀର୍ଘ ଅତୀତରେ ଭାରତୀୟ ଜାତୀୟ କଂଗ୍ରେସ ଏବଂ ଗାନ୍ଧିଜୀ ବର୍ଷକ ମଧ୍ୟରେ ସ୍ୱରାଜ ପ୍ରାପ୍ତି ହେବାଭଳି ଯେଉଁ ଆଶା ନେଇ ତୀବ୍ର ଆନ୍ଦୋଳନ ଚଳାଇଥିଲେ ତାହା ସୁଦୂର ପରାହତ ହୋଇଥିଲା ।

ସର୍ବୋଚ୍ଚ କ୍ଷମତାସଂପନ୍ନ ବୈଧାନିକ କମିଶନ- ସାଇମନ୍ କମିଶନ୍ ଭାରତର ଶାସନ ସଂସ୍କାର ସଂପର୍କିତ ଦେଇଥିବା ପରାମର୍ଶଗୁଡ଼ିକର ବିଚାର ଆଲୋଚନାପାଇଁ ଇଂଲଣ୍ଡରେ ଆୟୋଜିତ ହୋଇଥିଲା ତିନୋଟି ଗୋଲ୍‌ଟେବୁଲ୍ ବୈଠକ । ଭାରତୀୟ ପ୍ରତିନିଧିଙ୍କ ଗହଣରେ ଏହାର ସବିଶେଷ ଆଲୋଚନା କରିବାକୁ ଇଂଲଣ୍ଡ ସରକାର ଯୋଜନା କରିଥିଲେ । ପ୍ରଥମ ଗୋଲଟେବୁଲ୍ ବୈଠକରେ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଓଡ଼ିଶାର ପ୍ରତିନିଧିରୂପେ ଯୋଗ ଦେଇଥିଲେ । ସେଇ ଯୋଗଦାନ ହିଁ ଥିଲା ନୂତନ ଓଡ଼ିଶା ପ୍ରଦେଶ ଗଠନର ଇତିହାସରେ ଏକ ସ୍ୱର୍ଣ୍ଣାଙ୍କିତ ପୃଷ୍ଠା ।

—୦—



Ama Odisha pdf (aamaodisha@gmail.com)

# ଗୋଲ୍‌ଟେବୁଲ୍ ବୈଠକରେ

୨୦ଚେଷ୍ଟର ଷ୍ଟ୍ରିଟ୍, ଏସ୍.ଡବ୍ଲୁ ଆଇ, ଲଣ୍ଡନ ।

ଟ୍ରାଫଲ୍‌ଗାର ଛକ ନିକଟରେ ପାରଳା ଗଜପତିଙ୍କ ସାମୟିକ ବସାଘର ।

ସେଦିନ ମଧ୍ୟ ବଡ଼ି ଭୋର୍‌ରୁ ନହବତ ବାଦ୍ୟ ବାଜି ଉଠିଥିଲା ସେଇ ବଙ୍ଗଳା ପରିସରରେ; ଲଣ୍ଡନବାସୀଙ୍କୁ ଇସାରା ଦେଇଥିଲା ଓଡ଼ିଶାରୁ ସେଠାକୁ ଯାଇଥିବା ଜଣେ ରାଜାର ଦୈନନ୍ଦିନ ଜୀବନଚର୍ଯ୍ୟାର କାହାଣୀ । ତତ୍‌ପରେ ପରେ ଦୈନନ୍ଦିନ କାର୍ଯ୍ୟ । ସାଙ୍ଗରେ ନେଇଥିବା ଗଙ୍ଗାଜଳରେ ପ୍ରଭାତୀ ସ୍ନାନ । ଶଙ୍ଖ, କାହାଳୀ, ଭେରୀ, ତୂରୀର ସମ୍ମିଳିତ ବାଦ୍ୟ ଲହରୀ ଭିତରେ ପଟ୍ଟବସ୍ତ୍ର ପିନ୍ଧି ଦେବାର୍ଚ୍ଚନ  । ଘରୁ ବାହାରକୁ ବାହାରିବାବେଳେ ଯୋଡ଼ି ମହୁରି ବାଦ୍ୟ ବାଜଣା । ଗୋଲ୍‌ଟେବୁଲ ବୈଠକରେ ଯୋଗଦାନ– ଅନ୍ୟାନ୍ୟ ସରକାରୀ ତଥା ବେସରକାରୀ ବ୍ୟକ୍ତିବିଶେଷଙ୍କ ସହିତ ଆଳାପ-ଆଲୋଚନା । ଓଡ଼ିଆଙ୍କ ପରମ୍ପରା ପ୍ରତି ସେଠି ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିବାପାଇଁ ଉଦ୍ୟମ । ପ୍ରୟାସ କାହାଣୀ ଓଡ଼ିଆଙ୍କ ସମସ୍ୟା ପ୍ରତି ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରାଇବାପାଇଁ । ସେଇସବୁ ଲଣ୍ଡନର ଖବରକାଗଜମାନଙ୍କ ପାଇଁ ସେଇ କେତେଦିନ ଥିଲା ପ୍ରମୁଖ ସମ୍ବାଦ ।

ସଂଧ୍ୟା ଗଡ଼ି ଗଲା ପରେ ବସାଘର ବାହାରର ପ୍ରଶସ୍ତ ଲନ୍ ଗଛ ତଳେ ବସି ଜାନୁଆରି ୧୬ ତାରିଖ ଦିନ ଲର୍ଡ୍ ସଭାରେ ପ୍ରଦାନ କରିବାକୁ ଥିବା ଭାଷଣର ପ୍ରସ୍ତୁତି । ପ୍ରାୟ ପ୍ରତିଦିନ ସଂଧ୍ୟାରେ ଅନେକ ଥର ମନନଶୀଳ ଭାବରେ ଲାଗି ପଡ଼ିଥିଲେ ସେଇ ବକ୍ତବ୍ୟର ପ୍ରସ୍ତୁତି ପାଇଁ । ଘଣ୍ଟା ଘଣ୍ଟା ବିତି ଯାଉଥିଲା । ରାତି ଗଭୀରରୁ ଗଭୀରତର ହେଉଥିଲା । ହେଲେ କୌଣସିଟିକୁ ଭ୍ରୂକ୍ଷେପ ନଥିଲା କୃଷ୍ଣଚନ୍ଦ୍ର ଗଜପତିଙ୍କର ।

କିଛି ଭାବୁଛନ୍ତି– ଲେଖୁଛନ୍ତି, ପୁଣି କିଛି କାଟି ପକାଉଛନ୍ତି । ବୁଡ଼ି ଯାଉଛନ୍ତି ଭାବ ସମୁଦ୍ରରେ । ପୁଣି କେଉଁଠି ଟିକିଏ ଯୋଡ଼ି ଦେଉଛନ୍ତି । ଆଉଥରେ ପଢ଼ି ଯାଉଛନ୍ତି ଆମୂଳଚୂଳ । ସେମିତି କେତେଥର ପଢ଼ା ହେବଣି କେଜାଣି !



Ama Odisha pdf (aamaodisha@gmail.com)

ସେଭଳି ଭାବରେ ତାହାଙ୍କୁ ଅନେକ ବାର ଦେଖିବାପରେ କିଛିଟା ଦରଦୀ ହୋଇ ଉଠିଥିଲେ ଦକ୍ଷିଣ ଭାରତୀୟ ଜଣେ ତୁଙ୍ଗନେତା ରାମସ୍ୱାମୀ ମୁଦଲିୟର । ମହାରାଜାଙ୍କ ବସାଘରକୁ ଲାଗି ତାଙ୍କର ବସାଘର । ସେ ମଧ୍ୟ ଥିଲେ ପ୍ରଥମ ଗୋଲ୍‌ଟେବୁଲ୍ ବୈଠକରେ ଜଣେ ପ୍ରତିନିଧି । ମହାରାଜାଙ୍କ ଅକ୍ଳାନ୍ତ ପରିଶ୍ରମ ଦେଖି ସେ ମୁଗ୍ଧ ଏବଂ ଆଶ୍ଚର୍ଯ୍ୟ ହୋଇଯାଇଥିଲେ ।

ଦିନେ ବିଳମ୍ବିତ ସଂଧ୍ୟାରେ ସେ ଯାଇଥିଲେ ସେଭଳି ଭାବସମୁଦ୍ରରେ ନିମଗ୍ନ ମହାରାଜାଙ୍କ ନିକଟକୁ । ଦରଦୀ ହୃଦୟରେ କହିଥିଲେ ଆପଣ ଅତ୍ୟଧିକ ମାତ୍ରାରେ ପରିଶ୍ରମ କରୁଛନ୍ତି କାହିଁକି ? ମତେ କହିଲେ ଅନ୍ତତଃ ମୁଁ ଲେଖିବାରେ ଆପଣଙ୍କ ସହାୟକ ହୋଇପାରନ୍ତି । କିନ୍ତୁ ତତ୍‌କ୍ଷଣାତ୍ ମହାରାଜାଙ୍କ ଉତ୍ତର ଥିଲା ‘ଆପଣ ସମ୍ଭବତଃ ମୋଠାରୁ ଭଲ ଭାଷାରେ ଲେଖି ପାରିବେ; କିନ୍ତୁ ମୋର ହୃଦୟର ଭାଷା ପାଇ ପାରିବେ କେଉଁଠୁ ?’’



**ଦୁଇ ପୁତ୍ର ଓ ପାରିଷଦଙ୍କ ସହ ଲଣ୍ଡନରେ**



Ama Odisha pdf (aamaodisha@gmail.com)

ତେଣୁ ଆପାତତଃ ମହାରାଜାଙ୍କ ମନର କଥାକୁ ହୃଦୟର ଭାଷାଦେଇ ଦୀର୍ଘ ସମୟ ମଧ୍ୟରେ ପ୍ରସ୍ତୁତ ହୋଇଥିବା କ୍ଷୁଦ୍ର ଭାଷଣଟି କେବଳ ଅତ୍ୟନ୍ତ ଆକର୍ଷଣୀୟ ତଥା ହୃଦୟଗ୍ରାହୀ ହୋଇ ପାରିନଥିଲା, ହୋଇଥିଲା ମଧ୍ୟ ଅତ୍ୟନ୍ତ ପ୍ରଭାବଶାଳୀ । ୧୯୩୧ ମସିହା ଜାନୁଆରି ୧୬ ତାରିଖ ଦିନ ତାହା ଗୋଲ୍‌ଟେବୁଲ୍ ବୈଠକରେ ପ୍ରଦତ୍ତ ହୋଇଥିଲା ।

୧୯୩୦ ନଭେମ୍ବର ୧୨ ତାରିଖରୁ ଆରମ୍ଭ ହୋଇ ୧୯୩୧ ଜାନୁଆରି ୧୯ ତାରିଖ ପର୍ଯ୍ୟନ୍ତ ଲଣ୍ଡନଠାରେ ଅନୁଷ୍ଠିତ ହୋଇଥିଲା ପ୍ରଥମ ଗୋଲ୍‌ଟେବୁଲ୍ ବୈଠକ । ଲର୍ଡ଼ ସଭାର ରୟାଲ୍ ଗ୍ୟାଲେରୀରେ ଅନୁଷ୍ଠିତ ଏକ ସାଧାରଣ ସଭାରେ ଇଂଲଣ୍ଡର ମହାମାନ୍ୟ ସମ୍ରାଟ ଏହାକୁ ଉଦ୍‌ଘାଟନ କରିଥିଲେ । ସେଥିରେ ଆଲୋଚନାର ବିଷୟବସ୍ତୁ ଥିଲା ଭାରତର ଶାସନତାନ୍ତ୍ରିକ ସଂସ୍କାରପାଇଁ ସାଇମନ୍ କମିଶନ୍ ପ୍ରଦାନ କରିଥିବା ବିଭିନ୍ନ ପ୍ରସ୍ତାବର ଏପାଖ ସେପାଖ ଏବଂ ତାହାକୁ କାର୍ଯ୍ୟକାରୀ କରାଇବାପାଇଁ ବିଭିନ୍ନ ପଦକ୍ଷେପ ।

ସେହି ସୁପାରିସ ଅନୁଯାୟୀ ପ୍ରାଦେଶିକ ସ୍ତରରେ ରାଜ୍ୟପାଳମାନଙ୍କ ହାତରେ ଅଖଣ୍ଡ କ୍ଷମତା କେନ୍ଦ୍ରୀଭୂତ କରାଯାଇଥିଲା । ଯଦିବା ଗଣତାନ୍ତ୍ରିକ ପଦ୍ଧତିରେ ମୁଖ୍ୟମନ୍ତ୍ରୀଙ୍କ ସୁପାରିସ କ୍ରମେ ସେମାନେ ମନ୍ତ୍ରିମଣ୍ଡଳର ନିଯୁକ୍ତିଦାତା ଥିଲେ ତଥାପି ରାଜ୍ୟପାଳଙ୍କ ମତରେ ମନ୍ତ୍ରୀଗଣ ବିଧାନସଭାଗୁଡ଼ିକରେ ଆସ୍ଥାଭାଜନ ହୋଇ ପାରିବେ କି ନାହିଁ ତାହାର ବିଚାର କ୍ଷମତା ମଧ୍ୟ ତାଙ୍କରି ହାତରେ ନ୍ୟସ୍ତ ହୋଇଥିଲା । ସେହି ସୁପାରିସ୍‌ରେ ମଧ୍ୟ ଥିଲା ଭାଷାଭିତ୍ତିରେ ସ୍ୱତନ୍ତ୍ର ଓଡ଼ିଶା ଗଠନ ସମେତ ସିନ୍ଧୁ ପ୍ରଦେଶ ଗଠନ ହେବାର ପ୍ରସ୍ତାବ ।

ତେବେ ସେତେବେଳକୁ ଭାରତର ରାଜନୈତିକ ଆକାଶରେ ଘନକଳାବାଦଲର ଛାଇ । ଅସହଯୋଗ ଆନ୍ଦୋଳନରେ ଜନଜୀବନ ବେଶ୍ ଆଲୋଡ଼ିତ । ସେତେବେଳେ କଂଗ୍ରେସର ଦାବି ଥିଲା ଭାରତର ଆଂଶିକ ସ୍ୱାୟତ୍ତ ଶାସନ ନୁହେଁ- ଦେଶର ପୂର୍ଣ୍ଣ ସ୍ୱାଧୀନତା ଲାଭ । ତେଣୁ ବିଧାନସଭାଗୁଡ଼ିକରୁ ପ୍ରତିନିଧିଗଣ ଇସ୍ତଫା ଦେଇ ଚାଲି ଆସିଥିଲେ । ଆରମ୍ଭ ହୋଇଥିଲା ଲବଣ ସତ୍ୟାଗ୍ରହ । ଏଭଳି ପରିସ୍ଥିତିରେ ଭାରତୀୟ ଜାତୀୟ କଂଗ୍ରେସ ଗୋଲ୍‌ଟେବୁଲ୍ ବୈଠକରେ ସହଯୋଗ କରିବାପାଇଁ ସରକାରୀ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରି ଦେଇଥିଲା ।

ତଥାପି ବିହାର-ଓଡ଼ିଶା ସରକାରଙ୍କଦ୍ୱାରା ସମର୍ଥିତ ପାରଳା ମହାରାଜା ସେହି ବୈଠକରେ ପ୍ରତିନିଧିତ୍ୱ କରିଥିଲେ ଓଡ଼ିଶା ତରଫରୁ । ମନେ ରଖାଯାଇପାରେ ଯେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନପାଇଁ ସେହି ପ୍ରାଦେଶିକ ସରକାର ସଂପୂର୍ଣ୍ଣ ସମ୍ମତ ଥିଲେ ଏବଂ ସେହି କାରଣରୁ ଓଡ଼ିଆମାନଙ୍କର ସ୍ୱାର୍ଥରକ୍ଷାପାଇଁ ଯୋଗ୍ୟତମ ବ୍ୟକ୍ତି ରୂପେ ମହାରାଜା କୃଷ୍ଣଚନ୍ଦ୍ରଙ୍କୁ ମନୋନୀତ କରିଥିଲେ ଅତୀତର କାର୍ଯ୍ୟକଳାପକୁ ଦୃଷ୍ଟିରେ ରଖି । ତତ୍‌କାଳୀନ ଅର୍ଥମନ୍ତ୍ରୀ କନିକା ରାଜା ମଧ୍ୟ ସେ ଦିଗରେ ଗଭର୍ଣ୍ଣରଙ୍କୁ ପ୍ରଭାବିତ କରିଥିଲେ ।



Ama Odisha pdf (aamaodisha@gmail.com)

କିନ୍ତୁ ମହାରାଜା ସେତେବେଳେ ଓଡ଼ିଶାର ବାସିନ୍ଦା ନଥିଲେ । ସେ ଥିଲେ ମାନ୍ଦ୍ରାଜ ଶାସନାନ୍ତର୍ଗତ ପାରଳାଖେମଣ୍ଡି (ଗଞ୍ଜାମ ଜିଲ୍ଲା)ର ବାସିନ୍ଦା । ତେବେ ମହାରାଜାଙ୍କ ଅଧୀନରେ ଥିବା ଗୋଟିଏ ଛୋଟିଆ ଜମିଦାରୀ ଅଞ୍ଚଳ ପୁରୀ ଜିଲ୍ଲାର ଡେଲାଙ୍ଗ- ଥିଲା ଓଡ଼ିଶା ଡିଭିଜନ୍ ଅନ୍ତର୍ଗତ । ତେଣୁ ତାହାର ଜମିଦାର ହିସାବରେ ସେ ଓଡ଼ିଶାବାସୀ ରୂପେ ଗୃହୀତ ହୋଇଥିଲେ । ସେ ମଧ୍ୟ ସ୍ୱତନ୍ତ୍ର ଓଡ଼ିଶା ଗଠନ ଆନ୍ଦୋଳନର କେନ୍ଦ୍ରବିନ୍ଦୁରେ ଥାଇ ସରକାରୀ ସ୍ତରରେ ବିଶେଷ ଭାବେ ଜଣାଶୁଣା ହୋଇସାରିଥିଲେ । ପୁଣି ଜଣେ ସାଧାରଣ ରାଜଭକ୍ତ ଜମିଦାର ହିସାବରେ ମଧ୍ୟ ଇଂରେଜ ସରକାରଙ୍କ ସୁଦୃଷ୍ଟି ଆକର୍ଷଣ କରିପାରିଥିଲେ ସେ । ତାହାଙ୍କୁ ମନୋନୟନ କରାଯିବା ପଶ୍ଚାତରେ ସର୍ବାପେକ୍ଷା ଅଧିକ ଆକର୍ଷଣୀୟ ଯୁକ୍ତି ଥିଲା ତାଙ୍କରି ନେତୃତ୍ୱରେ ରାଜକୀୟ କମିଶନ୍- ସାଇମନ୍ କମିଶନ୍‌କୁ ସ୍ୱାଗତ ଜଣାଇବା । ସମଗ୍ର ଦେଶରେ ସର୍ବତ୍ର ସେହି କମିଶନ୍ ପ୍ରତ୍ୟାଖ୍ୟାତ ହୋଇଥିବା ବେଳେ କେବଳ ଓଡ଼ିଶା ଓ ଓଡ଼ିଆଙ୍କ ତରଫରୁ ସେଭଳି ସ୍ୱାଗତ କରାଯାଇଥିଲା ଏବଂ ତାହାର ନେତୃତ୍ୱ ନେଇଥିଲେ ଖୋଦ୍ ମହାରାଜା ।

ସେଭଳି ମନୋନୟନରେ ଓଡ଼ିଶା ଆନ୍ଦୋଳନକାରୀ ନେତୃବୃନ୍ଦ ବିଶେଷ ଉତ୍ଫୁଲ୍ଲିତ ହୋଇଥିଲେ । ୧୯୩୦ ଅକ୍ଟୋବର ୧୮ ତାରିଖ ଦିନ ସେଥିପାଇଁ କଟକର ଶ୍ରୀରାମଚନ୍ଦ୍ର ଭବନରେ ଏକ ସମ୍ବର୍ଦ୍ଧନା ସଭାର ଆୟୋଜନ ହୋଇଥିଲା । ଅନ୍ୟପକ୍ଷରେ ଗୋଲ୍‌ଟେବୁଲ୍ ବୈଠକ ସହ ଅସହଯୋଗ କରୁଥିବା କଂଗ୍ରେସ କର୍ମୀମାନେ ମହାରାଜାଙ୍କୁ କଳାପତାକା ପ୍ରଦର୍ଶନ କରି 'ପାରଳା ଫେରିଯାଅ' ଧ୍ୱନିମାନ ଦେଇଥିଲେ ।

ହେଲେ ସେଥିରେ ଅବିଚଳିତ ମହାରାଜା ବୀର ବିକ୍ରମରେ ବାସ୍ତବ ସମସ୍ୟାର ସମସ୍ତ ଦିଗକୁ ଗଭୀର ଅନୁଶୀଳନପୂର୍ବକ ବଳିଷ୍ଠ ତଥ୍ୟଯୁକ୍ତ ସ୍ମାରକପତ୍ରଟିଏ ପ୍ରସ୍ତୁତ କରିଥିଲେ ବୈଠକପାଇଁ ।

ପି.ଏଣ୍ଡ୍ କୋ. କଂପାନୀର ଏକ ଜଳଜାହାଜରେ ମହାରାଜା ଭାରତରୁ ଯାଇ ଲଣ୍ଡନରେ ପହଞ୍ଚିଲା ବେଳକୁ ବୈଠକର କାର୍ଯ୍ୟସୂଚୀ ପ୍ରସ୍ତୁତ ହୋଇସାରିଥିଲା । ଓଡ଼ିଆଙ୍କ ସମସ୍ୟା ସେଠାରେ ଉପସ୍ଥାପନପାଇଁ କୌଣସି କାର୍ଯ୍ୟକ୍ରମ ସେଥିରେ ସ୍ଥାନିତ ହୋଇନଥିଲା । ତେଣୁ ସେ ଅନୁଭବ କରିଥିଲେ ଯେ ଯଦି ଏକକୋଟି ଓଡ଼ିଆଙ୍କ ଦୁର୍ଦ୍ଦଶା ସେଠାରେ ଉପସ୍ଥାପିତ କରିବାପାଇଁ ସୁଯୋଗ ପାଇ ପାରିବେ ନାହିଁ ତାହେଲେ ସେହି ବୈଠକରେ ଯୋଗଦାନର କୌଣସି ମୂଲ୍ୟ ରହିବ ନାହିଁ । ସେହି କାରଣରୁ ସେ ବ୍ରିଟିଶ୍ ପ୍ରଧାନମନ୍ତ୍ରୀ ତଥା ଭାରତ ବିଭାଗ ସଚିବ ଏବଂ ବୈଠକ ସହିତ ସଂପୃକ୍ତ ବିଭିନ୍ନ ଅଧିକାରୀଗଣଙ୍କ ନିକଟରେ ପହଞ୍ଚିଥିଲେ । ସେ ଚେଷ୍ଟା କରିଥିଲେ ଆପଣା ଉଦ୍ଦେଶ୍ୟର ସଫଳ ରୂପାୟନ ପାଇଁ । ସବୁ ପଦାଧିକାରୀଙ୍କ ହୃଦ୍‌ବୋଧ କରାଇ ଦେଇଥିଲେ ଯେ ବ୍ରିଟିଶ୍ ଶାସନରେ ଥାଇ ଅତି ଦୁଃଖରେ କାଳାତିପାତ କରୁଥିବା ଗୋଟିଏ ନିର୍ଦ୍ଦିଷ୍ଟ ଭାଷାଭାଷୀ



Ama Odisha pdf (aamaodisha@gmail.com)

ଲୋକଙ୍କ ଦୁଃଖ, ଗୋଲ୍‌ଟେବୁଲ୍ ବୈଠକ ଭଳି ଉଚ୍ଚ କ୍ଷମତାପନ୍ନ ବୈଠକରେ ଉପସ୍ଥାପନ କରିବା ସୁଯୋଗ ତାହାଙ୍କୁ ଦିଆଯିବା ଏକାନ୍ତ ଆବଶ୍ୟକ ।

ମହାରାଜାଙ୍କ ସେହି ଉଦ୍ୟମ ବିଫଳ ହୋଇ ନଥିଲା । ସେଠାରେ ଭାରତରୁ ଯୋଗ ଦେଇଥିବା ଅନେକ ସଦସ୍ୟଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରାଇ ସେ ବୈଠକର ସଭାପତିଙ୍କ ସ୍ୱତନ୍ତ୍ର ଅନୁମତି ଲାଭ କରିଥିଲେ ଅଳ୍ପ ସମୟପାଇଁ । ଜାନୁଆରି ୧୬ ତାରିଖ ଦିନ ଲର୍ଡ଼ ସଭାରେ ମହାରାଜା ଭାଷଣ ଦେବାର ଅଳ୍ପ ଦିନ ପୂର୍ବରୁ ପୂର୍ବପ୍ରସ୍ତୁତ ସ୍ମାରକପତ୍ରଟି ବୈଠକର ପ୍ରତିନିଧିମାନଙ୍କ ମଧ୍ୟରେ ବାଣ୍ଟି ଦିଆଯାଇଥିଲା ଓଡ଼ିଶା ସମସ୍ୟାର ଅବଗତି ତଥା ଅନୁଧ୍ୟାନପାଇଁ, ଓଡ଼ିଆମାନଙ୍କ ଦୁରବସ୍ଥାର ସ୍ପଷ୍ଟ ଚିତ୍ରଟିଏ ଆକଳନ କରିବାପାଇଁ । ନିର୍ଦ୍ଧାରିତ ସମୟରେ ମହାରାଜା ଆପଣାର ଭାଷଣ ପ୍ରଦାନ କରି ଉପସ୍ଥିତ ସମସ୍ତ ସଦସ୍ୟଙ୍କ ଦୃଷ୍ଟି ଆକର୍ଷଣ କରିପାରିଥିଲେ । ତାହା ମଧ୍ୟ ଯେଭଳି ତଥ୍ୟଯୁକ୍ତ ଥିଲା ସେହିଭଳି ବଳିଷ୍ଠ ଯୁକ୍ତି ସମ୍ବଳିତ । ଦୃଢ଼ ଅଥଚ ଗାମ୍ଭୀର୍ଯ୍ୟପୂର୍ଣ୍ଣ ଭାବେ ମହାରାଜା ନିଜ ବକ୍ତବ୍ୟ ରଖିଥିଲେ-

ଭଦ୍ର ମହୋଦୟଗଣ !

ମହାମହିମ ଭାରତ ସମ୍ରାଟଙ୍କ ଶାସିତ ଦଶ ନିୟୁତ ଓଡ଼ିଆ ପ୍ରଜାଙ୍କ ପ୍ରତିନିଧି ରୂପେ ସେମାନଙ୍କ ଦୀର୍ଘ ଦିନର ଏକ ଦୁଃଖପୂର୍ଣ୍ଣ ଅଭିଯୋଗ ମୁଁ ଆଜି ଏଠାରେ ଉପସ୍ଥାପିତ କରିବାକୁ ସୁଯୋଗ ପାଇ ଦଣ୍ଡାୟମାନ ହୋଇଅଛି । ଇତି ପୂର୍ବରୁ, ଅଳ୍ପଦିନ ତଳେ, ମୁଁ ଆପଣମାନଙ୍କ ନିକଟରେ ଯେଉଁ ସ୍ମାରକପତ୍ରଟି ଉପସ୍ଥାପିତ କରିଛି ସେଥିରୁ ଭିନ୍ନଭିନ୍ନ ପ୍ରଦେଶ ସହିତ ଏହି ଓଡ଼ିଆମାନେ ଯୁକ୍ତ ହୋଇ ରହିଥିବା ଯୋଗୁଁ ସେମାନେ କେଉଁକେଉଁ ଅସୁବିଧାର ସମ୍ମୁଖୀନ ହେଉଅଛନ୍ତି ତାହା ଆପଣମାନେ ନିଶ୍ଚିତ ରୂପେ ଅବଗତ ହୋଇପାରିଥିବେ ।

ଓଡ଼ିଆମାନେ ଏକତ୍ର ହୋଇ ରହିବାପାଇଁ ଗତ ଶତାବ୍ଦୀର ଶେଷ ଭାଗରୁ ଯେଉଁଭଳି ଆନ୍ଦୋଳନ ସବୁ ଚଳାଇ ଆସିଛନ୍ତି ତାହାର ଇତିହାସ ବର୍ଣ୍ଣନା କରି ମୁଁ ଅବଶ୍ୟ ଆପଣମାନଙ୍କୁ କ୍ଳାନ୍ତ କରିବି ନାହିଁ । କିନ୍ତୁ ସେ ସଂପର୍କରେ ସମସ୍ତ ତଥ୍ୟ ମୋର ଜ୍ଞାତବ୍ୟ ଥିବାରୁ ମୁଁ ଆଜି ଆପଣମାନଙ୍କ ସମ୍ମୁଖରେ ଦୃଢ଼ଭାବରେ ଏହି ଦାବି ଉପସ୍ଥାପିତ କରୁଛି ଯେ ଓଡ଼ିଆମାନଙ୍କପାଇଁ ଗୋଟିଏ 'ସ୍ୱତନ୍ତ୍ର ପ୍ରଦେଶ' ବର୍ତ୍ତମାନ ଜୀବନ-ମରଣ ପ୍ରଶ୍ନ ଭଳି ଗୁରୁତ୍ୱପୂର୍ଣ୍ଣ ସମସ୍ୟା ରୂପେ ଛିଡ଼ା ହୋଇଛି । ସେମାନଙ୍କର ଜନ୍ମଭୂମିକୁ ଭାରତବର୍ଷର ବିଭିନ୍ନ ପ୍ରଦେଶ ସହିତ ଖଣ୍ଡ ବିଖଣ୍ଡିତ କରି ଯୁକ୍ତ କରାଇ ଦିଆଯାଇଛି । ପରିଣାମସ୍ୱରୂପ ପ୍ରତ୍ୟେକ ପ୍ରଦେଶର ସୀମାନ୍ତ ଅଞ୍ଚଳଗୁଡ଼ିକରେ ହିଁ ସେମାନେ ବସବାସ କରି ରହୁଛନ୍ତି । ପ୍ରଦେଶର ରାଜଧାନୀଠାରୁ ବହୁ ଦୂରରେ ରହିବା ଫଳରେ ଓଡ଼ିଆମାନଙ୍କୁ ଯେ ସମସ୍ତ ପ୍ରକାର ଅସୁବିଧା ଓ ବାଧାବିଘ୍ନର ସମ୍ମୁଖୀନ ହେବାକୁ ପଡୁଛି ତାହା ଅତି ଶୋଚନୀୟ ବ୍ୟାପାର । ପ୍ରତି ପ୍ରଦେଶର ଅଧିବାସୀଙ୍କ ମଧ୍ୟରେ ଓଡ଼ିଆମାନଙ୍କ ସଂଖ୍ୟା ଅତିମାତ୍ରାରେ ନଗଣ୍ୟ ହୋଇଥିବାରୁ ସେମାନଙ୍କୁ କେହି ଗୁରୁତ୍ୱ ଦିଅନ୍ତି ନାହିଁ । ସେମାନଙ୍କ



Ama Odisha pdf (aamaodisha@gmail.com)

ହାନିଲାଭ ବା ସୁଖ ଦୁଃଖ ପ୍ରତି ସରକାରୀ ଦୃଷ୍ଟି ଆକର୍ଷଣ ଆଦୌ ସହଜ ଭାବରେ ହୋଇପାରେ ନାହିଁ । ସେମାନଙ୍କ ଦାବି କିମ୍ବା ଅଭିଯୋଗର ସ୍ୱର ଅତି କ୍ଷୀଣ ଭାବରେ ଶୁଣାଯାଏ । ଅନ୍ୟାନ୍ୟ ଭାଷାଭାଷୀ ଲୋକଙ୍କର ସଂଖ୍ୟାଗରିଷ୍ଠତା ମଧ୍ୟରେ ସେମାନେ କୁଆଡ଼େ ହଜିଯାଆନ୍ତି ।

ଭଦ୍ର ମହୋଦୟଗଣ ! ମୁଁ ଆଶା କରୁଛି ଆପଣମାନେ ଓଡ଼ିଆମାନଙ୍କର ଏହି ଦୁରବସ୍ଥା ସଂପର୍କରେ ଏବଂ ସେମାନଙ୍କ ସମୁଚିତ ଦାବି ସଂପର୍କରେ ନିଶ୍ଚିତ ରୂପେ ସହାନୁଭୂତିର ସହିତ ବିଚାର କରିବେ । ବହୁ ସରକାରୀ ପ୍ରତିନିଧି ଇତିପୂର୍ବରୁ ଏହି ଦାବିକୁ ବାରମ୍ବାର ସମର୍ଥନ କରିଆସିଛନ୍ତି । ଆମରି ମଙ୍ଗଳପାଇଁ ଭାଷା ଓ ଜାତି ଭିତ୍ତିରେ ଗଠିତ ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ଆମ୍ଭେମାନେ ଆଶା କରୁଛୁ । ସେତିକି ପାଇଲେ ଯାଇ ଆମେ ସନ୍ତୋଷ ଓ ଶାନ୍ତି ଲାଭ କରିବୁ । ବ୍ରିଟିଶ୍ ଓ ଭାରତୀୟ ରାଜନୀତିଜ୍ଞମାନେ ଭାରତବର୍ଷ ଲାଗି ଯେଉଁସବୁ ସଂସ୍କାରମୂଳକ କାର୍ଯ୍ୟାନୁଷ୍ଠାନମାନ ଆରମ୍ଭ କରିଛନ୍ତି ଏବଂ ପୁଣି ଭବିଷ୍ୟତରେ ବିଭିନ୍ନ ରାଜ୍ୟ ସମନ୍ୱୟରେ ଭାରତବର୍ଷରେ ଯେଉଁ ରାଷ୍ଟ୍ରସଂଘ ଗଠିତ ହେବ ତଥା କ୍ଷୁଦ୍ର ରାଜ୍ୟଗୁଡ଼ିକ ମଧ୍ୟ ଭାଷା ଓ ଗୋଷ୍ଠୀ ଭିତ୍ତିରେ ପୁନର୍ଗଠିତ ହେବ ସେତେବେଳେ ଯଦି ଓଡ଼ିଆମାନେ ଆପଣାର ଲାଗି ଗୋଟିଏ ପ୍ରଦେଶ ପାଇପାରି ନଥିବେ ତେବେ ସେଭଳି ରାଷ୍ଟ୍ରସଂଘରୁ ସେମାନେ କୌଣସି ଉପକାର ପାଇପାରିବେ ନାହିଁ । ଯଦି ଏହି ଦଶ ନିୟୁତ ଓଡ଼ିଆ ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ଲାଭ ନକରନ୍ତି ତେବେ ଆପଣମାନେ ଏଠାରେ ପ୍ରଦେଶଗୁଡ଼ିକରେ ଯେଉଁ ସାର୍ବଭୌମ କ୍ଷମତାସଂପନ୍ନ ପାର୍ଲ୍ୟାମେଣ୍ଟାରୀ ଶାସନ ସଂସ୍ଥାଗଢ଼ିବାକୁ ବିଚାର ଆଲୋଚନା ଚଳାଇଛନ୍ତି ସେଥିରେ ସେମାନଙ୍କର ପ୍ରଭୂତ କ୍ଷତି ସାଧିତ ହେବ ।

ଏପର୍ଯ୍ୟନ୍ତ ଆମ୍ଭେମାନେ ବହୁ ଧୈର୍ଯ୍ୟର ସହିତ ଅପେକ୍ଷା କରିରହିଛୁ । ଆମର ସମସ୍ତ ଆନୁଗତ୍ୟ ଭାରତ ସମ୍ରାଟଙ୍କ ପ୍ରତି ପ୍ରକାଶକରି ଆମ୍ଭେମାନେ ତାଙ୍କ ନିକଟରୁ ସର୍ବଦା ନ୍ୟାୟ ବିଚାର, ସହାନୁଭୂତି ଏବଂ ସଦୟ ବ୍ୟବହାର ଆଶା କରିଆସିଛୁ । ଆମ୍ଭମାନଙ୍କ ସପକ୍ଷରେ ଲର୍ଡ୍ କର୍ଜନ କହିଥିଲେ- ‘‘ଓଡ଼ିଆମାନେ ଯଦି ବିଦ୍ରୋହ ମନୋଭାବାପନ୍ନ ହୋଇଥାନ୍ତେ- (ଏବଂ ସେମାନେ ତାହା ଆଦୌ ନୁହନ୍ତି) ତେବେ ସେମାନେ ସେମାନଙ୍କ ନ୍ୟାଯ୍ୟଦାବି କେଉଁ କାଳରୁ ଉଚ୍ଚକଣ୍ଠରେ ଶୁଣାଇସାରିଥାଆନ୍ତେ । କିନ୍ତୁ ଯାହା ଦେଖାଯାଇଛି ସେମାନଙ୍କ ସ୍ୱାର୍ଥ ବିନାଦ୍ୱିଧାରେ ବଳି ଦିଆଯାଇଛି ।’’

ଏହି ବୈଠକରେ ଆପଣମାନେ ଓଡ଼ିଆମାନଙ୍କ ସମସ୍ୟା ନେଇ ସୁବିଚାର କରିବେ ବୋଲି ମୁଁ ଆଶା କରୁଛି । ନିଶ୍ଚିତ ରୂପେ ଆପଣମାନଙ୍କୁ ଅବଗତ ଥିବ ଯେ ସାଇମନ୍ କମିଶନ, ଭାରତ ସରକାର ଏବଂ ସଂପୃକ୍ତ ପ୍ରାଦେଶିକ ସରକାର ଏହି ପ୍ରଶ୍ନ ସମାଧାନର ତୁରନ୍ତ ଆବଶ୍ୟକତାକୁ ସ୍ୱୀକାର କରିଛନ୍ତି । ସେମାନେ ଓଡ଼ିଆମାନଙ୍କ ଲାଗି ଏକ ସ୍ୱତନ୍ତ୍ର ପ୍ରଦେଶ ମଞ୍ଜୁର କରିବା ଦିଗରେ କେବଳ ଗୋଟିଏ ପ୍ରତିବନ୍ଧକ ରହିଛି ବୋଲି ମନେକରନ୍ତି- ତାହା ହେଉଛି ରାଜସ୍ୱଜନିତ ।



Ama Odisha pdf (aamaodisha@gmail.com)

ସେଥିପାଇଁ ମୋର ଉତ୍ତର ହେଉଛି- ଗୋଟିଏ ଇତିହାସ ପ୍ରସିଦ୍ଧ ପ୍ରାଚୀନ ସଭ୍ୟତା ଓ ସଂସ୍କୃତିସଂପନ୍ନ ଜାତିର ଅସ୍ତିତ୍ୱକୁ ସୁରକ୍ଷା କରିବା ଦିଗରେ ରାଜସ୍ୱଜନିତ ବ୍ୟାପାର ଏକମାତ୍ର ଅନତିକ୍ରମଣୀୟ ପ୍ରତିବନ୍ଧକ ହୋଇ ନପାରେ । କଥାରେ ଅଛି- 'କପଡ଼ାକୁ ଚାହିଁ କୁରୁତା ତିଆରି କର ।'' ଏଠି ମଧ୍ୟ ସେକଥା ହିଁ ପ୍ରଯୁଜ୍ୟ ହୋଇପାରେ । ମୁଁ ଏଠାରେ ନିଶ୍ଚିତ ଯେ ଓଡ଼ିଆମାନଙ୍କ ପ୍ରତି କେନ୍ଦ୍ର ସରକାରଙ୍କ ହିତକର ମନୋଭାବ ରହିଆସିଛି । ବିହାର ଓଡ଼ିଶା ଓ ଆସାମ ପ୍ରଦେଶ ଗଠିତ ହେଲାବେଳେ କେନ୍ଦ୍ର ସରକାର ଯେଉଁଭଳି ସେହି ଦୁଇଟି ପ୍ରଦେଶକୁ ସାହାଯ୍ୟ ଦେଲେ ସେଭଳି ଓଡ଼ିଶା ପ୍ରତି ମଧ୍ୟ ସହାୟତା କରିବେ । ଏ କ୍ଷେତ୍ରରେ ମୁଁ ଆଉ ଗୋଟିଏ କଥା କହିବାକୁ ଚାହେଁ । ଆମେ ମୂଳରୁ କୌଣସି ଋଣ ନେଇ ପ୍ରଦେଶ ଶାସନ ଆରମ୍ଭ କରିବୁ ନାହିଁ । ବରଂ ଅନ୍ୟପକ୍ଷରେ ଆମେ କିଛି ରାଜସ୍ୱ ସଂଗ୍ରହ କରିପାରିବୁ । ଅଥଚ ଆସାମ ପ୍ରାରମ୍ଭରୁ ଏହି ସମ୍ଭାବନାଟିକୁ ସମ୍ଭବ କରିପାରି ନାହିଁ । ଭାରତୀୟ ବୈଧାନିକ କମିଶନ୍‌କୁ ବିହାର-ଓଡ଼ିଶା ସରକାର ଯେଉଁ ସ୍ମାରକପତ୍ର ଦେଇଛନ୍ତି ତାହାର ୪୦୪ ପୃଷ୍ଠାରେ ପ୍ରଦତ୍ତ ବିବରଣୀରୁ ଆମେ ଜାଣିବାକୁ ପାଇପାରୁଛୁ ଯେ ବିହାର-ଓଡ଼ିଶା ପ୍ରଦେଶର ଓଡ଼ିଶା ବିଭାଗରୁ ବାର୍ଷିକ ରାଜସ୍ୱ ଆଦାୟ ହୁଏ ଦଶ ନିୟୁତ ଟଙ୍କା ଏବଂ ମୁଁ ନିଶ୍ଚିତ ରୂପେ କହିପାରେ ଯେ ଓଡ଼ିଶା ସ୍ୱତନ୍ତ୍ର ହେଲେ ତାହା ସହିତ ଅନ୍ୟାନ୍ୟ ପ୍ରଦେଶସ୍ଥ ଯେଉଁସବୁ ଓଡ଼ିଆ ଅଞ୍ଚଳ ସ୍ୱତଃପ୍ରବୃତ୍ତ ହୋଇ ନୂତନ ପ୍ରଦେଶ ସହିତ ସଂଯୁକ୍ତ ହେବ ବୋଲି ବିଭିନ୍ନ ସରକାରୀ କମିଟି ରିପୋର୍ଟରେ ରହିଛି ଏବଂ ସୀମା କମିଶନ୍ ଯେଉଁସବୁ ଓଡ଼ିଆଭାଷୀ ଅଞ୍ଚଳକୁ ଏକୀକରଣ କରାଇବା ଲାଗି ସ୍ଥିର କରିବେ ତଦ୍ୱାରା ଆଉ କେତୋଟି ଜିଲ୍ଲା ମଧ୍ୟ ପୁନର୍ଗଠିତ ଓଡ଼ିଶାରେ ସମ୍ମିଳିତ ହେବ । ପରିଣାମ ସ୍ୱରୂପ ଏହାର ରାଜସ୍ୱ ନିଶ୍ଚିତ ରୂପେ ୨୦.୨ ନିୟୁତ ଟଙ୍କା ହୋଇପାରିବ । ଏହା ଫଳରେ ସରକାର ଯେଉଁ ଆର୍ଥିକ ସଂକଟର ଆଶଙ୍କା କରୁଛନ୍ତି ତାହା ନିଶ୍ଚୟ ଦୂର ହୋଇପାରିବ । ଏତଦ୍‌ବ୍ୟତୀତ ଓଡ଼ିଶାରେ ଥିବା ମାଳ ଅଞ୍ଚଳମାନଙ୍କରୁ ପ୍ରଭୂତ ପରିମାଣରେ ଅବକାରୀ ରାଜସ୍ୱ ମଧ୍ୟ ଆଦାୟ ହୋଇ ପାରିବ । ପୁଣି ଯେଉଁ ଅନେକ ପରିମାଣରେ ଅନାବାଦୀ ଜମି ପତିତ ଅବସ୍ଥାରେ ରହିଛି, ସେଗୁଡ଼ିକୁ ଆବାଦୀ କରାଯିବା ସଂଗେସଂଗେ ଅରଣ୍ୟ ସଂପଦର ବିନିଯୋଗ କରାଯାଇ ଏହି ପ୍ରଦେଶର ରାଜସ୍ୱ ପରିମାଣ ବୃଦ୍ଧି କରାଯାଇପାରିବ ।

ଏ ସବୁ ସାଙ୍ଗକୁ ଓଡ଼ିଶାର ବିସ୍ତୀର୍ଣ୍ଣ ସମୁଦ୍ର ଉପକୂଳ ଲୁଣ ଉତ୍ପାଦନ କରିବା ଦିଗରେ ଯେତେ ଅନୁକୂଳ, ସମଗ୍ର ସାମ୍ରାଜ୍ୟରେ ସେତେ ବଡ଼ ଦ୍ୱିତୀୟ ଉପଯୋଗୀ ଅଞ୍ଚଳ ବୋଧହୁଏ ଆଉ ଥାଇ ନପାରେ । ସେଇ ବାବଦରେ ମଧ୍ୟ ରାଜସ୍ୱ କମ୍ ଆଦାୟ ହେବ ନାହିଁ । ପରିଶେଷରେ, ଯଦି ପରିସ୍ଥିତି ବାଧ୍ୟ କରେ ତେବେ ଆମ ପ୍ରଦେଶର ନିଅଣ୍ଟ ରାଜସ୍ୱ ପରିମାଣ ଭରଣ କରିବା ଲାଗି, ଆମେ ଓଡ଼ିଆମାନେ, ସ୍ୱତନ୍ତ୍ର ଟିକସର ବୋଝ ବହନ କରିବାପାଇଁ ପ୍ରସ୍ତୁତ ଅଛୁ ।



Ama Odisha pdf (aamaodisha@gmail.com)

ଭଦ୍ର ମହୋଦୟଗଣ ! ମୁଁ ଆଉ ଆପଣମାନଙ୍କର ମୂଲ୍ୟବାନ ସମୟ ଅଯଥା ନଷ୍ଟ କରିବା ଲାଗି ଇଚ୍ଛା କରୁନାହିଁ । କେବଳ ଏହି ସମସ୍ୟାର ଗୁରୁତ୍ୱ ହୃଦୟଙ୍ଗମ କରାଇବା ଲାଗି ଅନେକ କିଛି କହି ସାରିଲିଣି । ଭାରତବର୍ଷର ଯେକୌଣସି ଅନ୍ୟାନ୍ୟ ଉନ୍ନତ ଜାତି ଭଳି ଓଡ଼ିଆମାନେ ମଧ୍ୟ ଏକ ସ୍ୱଚ୍ଛ, ଐତିହ୍ୟପୂର୍ଣ୍ଣ, ଜାଜ୍ୱଲ୍ୟମାନ ଅତୀତର ଅଧିକାରୀ ହୋଇଥିଲେ ମଧ୍ୟ ଉନ୍ନତ, ସଂସ୍କୃତିସଂପନ୍ନ ବହୁ ସଂଖ୍ୟକ ଅଧିବାସୀଙ୍କୁ ବର୍ତ୍ତମାନ ଅତ୍ୟନ୍ତ ମର୍ମାନ୍ତିକ ଦୁଃଖଦାୟକ ପରିବେଶ ମଧ୍ୟରେ ରଖାଯାଇଛି । ସେଭଳି ଏକ ପୁରାତନ ଜାତିର ଭାଗ୍ୟର ପୁନରୁଦ୍ଧାର କରିବା କିମ୍ବା ନଷ୍ଟଭ୍ରଷ୍ଟ କରିବା ଦାୟିତ୍ୱ ଆପଣମାନଙ୍କ ବିଚାର ଉପରେ ନିର୍ଭର କରେ ।''

ଗଜପତି କୃଷ୍ଣଚନ୍ଦ୍ରଙ୍କ ସେହି ଭାଷଣଟି ଏତେ ମର୍ମସ୍ପର୍ଶୀ ଏବଂ ଯୁକ୍ତି ସମ୍ବଳିତ ଥିଲା ଯେ ସେଠାରେ ଉପସ୍ଥିତ ସମସ୍ତଙ୍କୁ ମନ୍ତ୍ରମୁଗ୍ଧ କରାଇ ଦେଇଥିଲା ଯେମିତି । ସେହି ଦୃଷ୍ଟି ଆକର୍ଷଣକାରୀ ଲିଖିତ ଭାଷଣ ବିରୋଧରେ ସଭାସ୍ଥଳରେ ସାମାନ୍ୟତମ ଗୁଂଜରଣ ମଧ୍ୟ ସୃଷ୍ଟି ହୋଇ ନଥିଲା । ବରଂ ନୂତନ ପ୍ରଦେଶ ଗଠନପାଇଁ ସର୍ବସମ୍ମତ ସମର୍ଥନ ମିଳିଥିଲା । ଉଲ୍ଲେଖଯୋଗ୍ୟ ଯେ ସେହି ବୈଠକରେ ଭାରତର ସବୁ ପ୍ରାଦେଶିକ ସରକାରଙ୍କ ମନୋନୀତ ସଦସ୍ୟଗଣଙ୍କ ସମେତ ଭାରତ ସରକାର ତଥା ଇଂଲଣ୍ଡରେ ଭାରତ ବିଭାଗପାଇଁ କାର୍ଯ୍ୟକରୁଥିବା ପଦସ୍ଥ ଅଫିସରଗଣ ଯୋଗ ଦେଇଥିଲେ । ସେମାନଙ୍କ ସମେତ ଇଂଲଣ୍ଡ ସରକାରଙ୍କ ଉଚ୍ଚତମ ମହଲର ଅନେକ ପ୍ରଭାବଶାଳୀ ବ୍ୟକ୍ତି ଉକ୍ତ ବୈଠକରେ ଅଙ୍ଗୀଭୂତ ହେବା ଥିଲା ସ୍ୱାଭାବିକ । ସେଠାରେ ସମୟକ୍ରମେ ଆଲୋଚିତ ହେଉଥିବା ଏପରି କୌଣସି ପ୍ରସ୍ତାବ ନଥିଲା ଯେଉଁଥିରେ କାହାରି ନା କାହାରି କିଛି ବିରୋଧୀ / ନକରାତ୍ମକ ମତାମତ ଉତ୍‌ଥାପିତ ହେଉ ନଥିଲା । କିନ୍ତୁ ଗୌରବର ବିଷୟ, ମହାରାଜାଙ୍କ ସେହି ବକ୍ତବ୍ୟ ଉପରେ କାହାରି କିଛି ବିରୋଧ ନଥିଲା । ବିଶେଷ ଉଲ୍ଲେଖଯୋଗ୍ୟ ଯେ ପ୍ରାରମ୍ଭରୁ ସେତେବେଳ ଯାଏ ପ୍ରବଳ ବିରୋଧ କରିଆସୁଥିବା ମାନ୍ଦ୍ରାଜ ପ୍ରାଦେଶିକ ସରକାରଙ୍କ ପ୍ରତିନିଧି ସେଠାରେ ଉପସ୍ଥିତ ରହିଥିଲେ ସୁଦ୍ଧା ସେହି ଭାଷଣ ମାଧ୍ୟମରେ ଥିବା ପ୍ରସ୍ତାବର କୌଣସି ବିରୋଧ କରିନଥିଲେ । ସର୍ବସମ୍ମତିକ୍ରମେ ମହାରାଜାଙ୍କ ପ୍ରସ୍ତାବଯୁକ୍ତ ଭାଷଣ ଗୃହୀତ ହେବାର ପରିଣତି ସ୍ୱରୂପ ବ୍ରିଟିଶ୍ ସରକାରଙ୍କ ତରଫରୁ ଭାରତ ବିଭାଗ ସଚିବ ଶ୍ରୀ ସାମୁଏଲ୍ ହୋର୍ ''ଭାଷା ଭିତ୍ତିରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେବ'' ବୋଲି ନୀତିଗତ ଭାବରେ ଘୋଷଣା କରିଥିଲେ । ସରକାର ଯଥାର୍ଥ ଭାବେ ହୃଦୟଙ୍ଗମ କରିଥିଲେ ଯେ ସବୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକୀକରଣ କରାଯାଇ ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ଗଠିତ ହେବା ସମୟ ଉପଗତ । ତେଣୁ ଆଉ ଅଧିକ କାଳବିଳମ୍ବ ନକରି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେବ । ମହାରାଜାଙ୍କ ଭାଷଣ ପରେପରେ ହିଁ ସେଇ ସରକାରୀ ଘୋଷଣା ହେବା ସଂଗେସଂଗେ ସେହିଠାରୁ ହିଁ କୃଷ୍ଣଚନ୍ଦ୍ର ୧୯୩୧ ଜାନୁଆରି ୧୯ ତାରିଖ ଦିନ ସରକାରଙ୍କ ସେହି ନୀତିଗତ ନିଷ୍ପତ୍ତିକୁ କେବୁଲ୍ ମାଧ୍ୟମରେ ଓଡ଼ିଶା ପ୍ରେରଣ କରିଥିଲେ । ସେଥିରେ ଆନନ୍ଦ ବିସ୍ଫାରିତ ନେତୃବର୍ଗ ଉତ୍କଳ



Ama Odisha pdf (aamaodisha@gmail.com)

ସମ୍ମିଳନୀର ସଂପାଦକ ବ୍ରଜସୁନ୍ଦର ଦାସଙ୍କ ବାସଭବନରେ ଉପସ୍ଥିତ ହୋଇ ମହାରାଜାଙ୍କ ଯଶଗାନରେ ଉନ୍ମତ୍ତ ହୋଇ ଯାଇଥିଲେ । ସେଠାରେ ଅନ୍ୟମାନଙ୍କ ମଧ୍ୟରେ ଥିଲେ ଭୁବନାନନ୍ଦ ଦାସ, ବୀରକିଶୋର ରାୟ, କୃଷ୍ଣଚନ୍ଦ୍ର ମହାପାତ୍ର, ବିଶ୍ୱନାଥ କର, ଗୋପାଳ ଚନ୍ଦ୍ର ପ୍ରହରାଜ ପ୍ରମୁଖ ବ୍ୟକ୍ତିମାନେ । ପୁଣି ଦେବାନ୍ ବାହାଦୂର କୃଷ୍ଣଚନ୍ଦ୍ର ମହାପାତ୍ରଙ୍କ ଅଧିନାୟକତ୍ୱରେ କଟକ ଟାଉନ୍ ହଲ୍‌ରେ ଅନୁଷ୍ଠିତ ଏକ ବିରାଟ ସାଧାରଣ ସଭାରେ ମହାରାଜାଙ୍କ ଯଶଗାନ ସମେତ 'ଶ୍ରୀକୃଷ୍ଣଚନ୍ଦ୍ର ଗଜପତି ପ୍ରକୃତରେ ଓଡ଼ିଆ ଜାତିର ମଉଡ଼ମଣି' ବୋଲି ଅଭିହିତ କରାଯାଇଥିଲା ।

ସେଇ ସରକାରୀ ନିଷ୍ପତ୍ତିର ଶ୍ରେୟ ମହାରାଜାଙ୍କୁ ପ୍ରଦାନ କରିବାରେ ସ୍ୱତନ୍ତ୍ର ଓଡ଼ିଶା ଆନ୍ଦୋଳନର ନେତାଗଣଙ୍କ ବିଚାର ଯେ ସଂପୂର୍ଣ୍ଣ ଯୁକ୍ତିକର ଥିଲା ତାହା ତତ୍‌କାଳୀନ ଭାରତ ବିଭାଗ ସଚିବଙ୍କ ପର ସମୟରେ ପ୍ରଦତ୍ତ ମତରୁ ସ୍ପଷ୍ଟ ବାରିହୋଇପଡ଼େ ।

ଥରେ ବ୍ରିଟିଶ୍ ସାମ୍ରାଜ୍ୟ ଅଧୀନସ୍ଥ ଭାରତର ଶାସନସଂସ୍କାର ପ୍ରକ୍ରିୟାର ଅଂଶ ସ୍ୱରୂପ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ଆଦ୍ୟକଥନୀ ଏକ ସାକ୍ଷାତ୍‌କାର ବେଳେ ଆଲୋଚନା କରୁଥିଲେ ମିଷ୍ଟର ସାମୁଏଲ୍ ହୋର୍, ସେଇ ସଂପର୍କରେ ସରକାରୀ ଭାବେ ସର୍ବପ୍ରଥମେ ସେ ହିଁ ଘୋଷଣା କରିଥିଲେ । ସେଇ ପ୍ରସଙ୍ଗରେ ସେ ସ୍ପଷ୍ଟ ଉଲ୍ଲେଖ କରିଥିଲେ ଯେ- ପ୍ରଥମ ଗୋଲ୍‌ଟେବୁଲ୍ ବୈଠକରେ ଓଡ଼ିଶାର ବିଭିନ୍ନ ସମସ୍ୟା ଉପସ୍ଥାପନ କରି ମହାରାଜା କୃଷ୍ଣଚନ୍ଦ୍ର ତାହାର ଏକୀକରଣପାଇଁ ଏଭଳି ଗୁରୁତ୍ୱ ଆରୋପ କରିଥିଲେ ଯେ ସରକାର ବିଭିନ୍ନ ପ୍ରଦେଶରେ ଉପାନ୍ତ ଅଞ୍ଚଳ ରୂପେ ରହିଥିବା ଓଡ଼ିଆ ଭାଷୀ ଅଞ୍ଚଳଗୁଡ଼ିକର ଏକୀକରଣ କରାଯିବା ଅତି ଆବଶ୍ୟକ ଏବଂ ସେଥିପାଇଁ ଯଥାର୍ଥ ସମୟ ଉପସ୍ଥିତ ହୋଇ ସାରିଲାଣି ବୋଲି ଅନୁଭବ କରିପାରିଥିଲେ । ତାଙ୍କର ବଳିଷ୍ଠ ତଥା ଯୁକ୍ତି ସମ୍ବଳିତ ଦାବିର ପରଣାମ ହୋଇଥିଲା ଓଡ଼ିଆମାନଙ୍କପାଇଁ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ । ସେଇ ଦୃଷ୍ଟିରୁ ଓଡ଼ିଆ ଭାଷାଭାଷୀ ଲୋକଙ୍କ ପାଇଁ ମହାରାଜାଙ୍କ ଅବଦାନ ନିଶ୍ଚୟ ସ୍ମରଣଯୋଗ୍ୟ ।

ପୁଣି ସେଭଳି ମତାମତକୁ ଆହୁରି ଅଧିକ ପରିପୁଷ୍ଟ କରିଥାଏ ସେଇ ବୈଠକରେ ଯୋଗ ଦେଇଥିବା ଆହୁରି କେତେଜଣ ପ୍ରତିନିଧିଙ୍କ ମତାମତ । ଗୋଲ୍‌ଟେବୁଲ୍ ବୈଠକ ଅନୁଷ୍ଠିତ ହେବାର ଦୀର୍ଘ ଦିନ ପରେ ବିହାର ଓଡ଼ିଶା ବିଧାନସଭାରେ ସଭ୍ୟ ଶ୍ରୀ ସଚ୍ଚିଦାନନ୍ଦ ସିହ୍ନା ସେଇ ଓଡ଼ିଶା ବିଷୟକ ଆଲୋଚନା ବେଳେ ବକ୍ତବ୍ୟ ରଖିଥିଲେ 'ଓଡ଼ିଶା ଜାତିପାଇଁ, ଗୋଲ୍‌ଟେବୁଲ୍ ବୈଠକରେ ଯୋଗ ଦେଇଥିବା ଓଡ଼ିଆ ସୀମା କମିଟିର ସଭ୍ୟ, ପାରଳାଖେମୁଣ୍ଡି ରାଜାଙ୍କର ବିଶିଷ୍ଟ ଅବଦାନ ସଂପର୍କରେ ଉଲ୍ଲେଖ କରିବା ମୋର କର୍ତ୍ତବ୍ୟ । ସାର୍ ସୁଲତାନ୍ ଅହମ୍ମଦ (ପର ସମୟରେ ବିହାର-ଓଡ଼ିଶା ହାଇକୋର୍ଟର ପ୍ରଧାନ ବିଚାରପତି) ମଧ୍ୟ ଉକ୍ତ ଗୋଲ୍‌ଟେବୁଲ୍ ବୈଠକରେ ଉପସ୍ଥିତ ଥିଲେ । ସେ ମୋତେ ନିଶ୍ଚୟ ସମର୍ଥନ କରିବେ, ମୁଁ ଯଦି କୁହେ ଯେ ମହାରାଜା ଏକ ଅତି ସୁନ୍ଦର ଓ ମନୋମୁଗ୍ଧକର ଭାଷଣ ଦେଇଥିଲେ ଏବଂ ସେଥିରେ ଥିବା



Ama Odisha pdf (aamaodisha@gmail.com)



**ପାରଳା ରାଜପ୍ରାସାଦରେ ମାନ୍ୟବର ରାଜ୍ୟପାଳ ଆସଫ୍ ଅଲ୍ଲୀ**

ତଥ୍ୟପୂର୍ଣ୍ଣ ଯୁକ୍ତିଗୁଡ଼ିକର ପରିଣାମ ସ୍ୱରୂପ ଉକ୍ତ ସମ୍ମିଳନୀ ଏକ ସିଦ୍ଧାନ୍ତରେ ପହଞ୍ଚିଥିଲା ଯେ 'ଓଡ଼ିଶା' ପ୍ରଶ୍ନର ସମାଧାନ କରାଯିବା ଉଚିତ । ଓଡ଼ିଆ ଭାଷାଭାଷୀ ଅଞ୍ଚଳର ପ୍ରତ୍ୟେକ ସମ୍ଭାବ୍ୟ ଇଞ୍ଚ ଜମି ନୂତନ ପ୍ରଦେଶାନ୍ତର୍ଗତ କରାଇବାପାଇଁ ରାଜା ପ୍ରଶଂସାର୍ହ ଉଦ୍ୟମ, ପ୍ରବଳ ସଂଗ୍ରାମ ଓ ଅଗାଧ ପରିଶ୍ରମ କରିଛନ୍ତି ବୋଲି ମୁଁ ମଧ୍ୟ ମୋର ବ୍ୟକ୍ତିଗତ ଅଭିଜ୍ଞତାରୁ ପ୍ରକାଶ କରିପାରେ ।''

ଅନୁରୂପ ମତାମତ ଥିଲା ବୈଠକର ଅନ୍ୟତମ ପ୍ରତିନିଧି ସାର୍ ସୁଲତାନ୍ ଅହମ୍ମଦଙ୍କର । ୧୯୪୮ ମସିହାରେ ଓଡ଼ିଶାରେ ନୂତନ ହାଇକୋର୍ଟର ଉଦ୍‌ଘାଟନ ଅବସରରେ ଓଡ଼ିଶା ଗଭର୍ଣ୍ଣର ମି. ଆସଫ୍ ଅଲ୍ଲୀ ଏକ ଚାହାଭୋଜିର ଆୟୋଜନ କରିଥିଲେ । ସେଥିରେ ଜଣେ ସମ୍ମାନିତ ଅତିଥି ଭାବରେ ଯୋଗ ଦେଇଥିଲେ ମିଷ୍ଟର ଅହମ୍ମଦ । ଦୀର୍ଘ ଅତୀତର ମଧୁର ସ୍ମୃତି ରୋମନ୍ଥନ କରି ସେଠାରେ ଆପଣାକୁ ସ୍ୱଚ୍ଛନ୍ଦ ଭାବରେ ବ୍ୟକ୍ତ କରିଥିଲେ- ଗୋଲ୍‌ଟେବୁଲ୍ ବୈଠକରେ ମହାରାଜାଙ୍କ ବଳିଷ୍ଠ ଯୁକ୍ତିଗୁଡ଼ିକ ସମ୍ମିଳନୀରେ ସର୍ବସମ୍ମତି ଲାଭ କରିଥିଲା । ଓଡ଼ିଶାର ମାନ୍ୟଗଣ୍ୟ ବ୍ୟକ୍ତିଗଣଙ୍କ ମଧ୍ୟରେ ମହାରାଜା ସର୍ବମାନ୍ୟ ବୋଲି ସେ ମୁକ୍ତମଞ୍ଚରେ ପ୍ରକାଶ କରିବାକୁ କୁଣ୍ଠିତ ନଥିଲେ । ତାଙ୍କର ମତ ଥିଲା- 'The Maharaja was the noblest of all the Noble men of Orissa' ସେହିଭଳି ମତାମତ ପ୍ରଦାନପାଇଁ ନା ସାର୍ ସାମୁଏଲ୍ ହୋର୍, ନା ସଚ୍ଚିଦାନନ୍ଦ ସିହ୍ନା କିମ୍ବା ସୁଲତାନ୍ ଅହମ୍ମଦଙ୍କୁ କେହି ପ୍ରରୋଚିତ କରି ନଥିଲା କି ସେଭଳି କୌଣସି ନିର୍ଦ୍ଦିଷ୍ଟ ଅବସର ଆୟୋଜିତ ହୋଇ ନଥିଲା । ବିଭିନ୍ନ ସମୟରେ ବିଭିନ୍ନ ପରିପ୍ରେକ୍ଷୀରେ



Ama Odisha pdf (aamaodisha@gmail.com)

ସେସବୁ ଥିଲା ସେମାନଙ୍କର ସ୍ୱତଃସ୍ଫୂର୍ତ୍ତ ଏବଂ ନିଜସ୍ୱ ମତାମତ, ଆପଣାର ଅଭିଜ୍ଞତାଯୁକ୍ତ ମତାମତ । ବାସ୍ତବରେ ସେହି ମତାମତଗୁଡ଼ିକ ସ୍ୱତନ୍ତ୍ର ଓଡ଼ିଶା ଗଠନରେ ମହାରାଜାଙ୍କ ଭୂମିକା ନିର୍ଣ୍ଣୟ କରିବାପାଇଁ ଯଥେଷ୍ଟ ଉପାଦାନ ଯୋଗାଇ ଦେଇଥାଏ ।

ଇଂଲଣ୍ଡରୁ ଫେରିବା ଦିନ ପାରଳାଖେମୁଣ୍ଡି ରେଳଷ୍ଟେସନ ଜନାକୀର୍ଣ୍ଣ ହୋଇଯାଇଥିଲା ମହାରାଜାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜଣାଇବାପାଇଁ । ପ୍ରାୟ ଦଶହଜାରରୁ ଊର୍ଦ୍ଧ୍ୱ ଲୋକଙ୍କ ସମାଗମ । ପୁଣି ସାରା ସହରର ଗଳିକନ୍ଦିରେ ଆବାଳ-ବୃଦ୍ଧବନିତାର ପ୍ରବଳ ଉଲ୍ଲାସ । ସେମାନେ ଓଡ଼ିଶା ସହ ମିଶିବାପାଇଁ ପଥ ଉନ୍ମୁକ୍ତ କରିଛନ୍ତି ମହାରାଜା; ସେମାନଙ୍କ ପ୍ରିୟ ମହାରାଜା !

ତତ୍‌ପରେପରେ ଦେଶରେ ଅନୁଷ୍ଠିତ ହୋଇଥିଲା ୧୯୩୧ ମସିହାର ଜନଗଣନା । ଓଡ଼ିଆ ଆନ୍ଦୋଳନର କେନ୍ଦ୍ରବିନ୍ଦୁରେ ପହଞ୍ଚିବା ପରେପରେ ମହାରାଜା ଅନୁଭବ କରିପାରିଥିଲେ ସେହି ଆନ୍ଦୋଳନ ବିରୁଦ୍ଧରେ ମାନ୍ଦ୍ରାଜ ସରକାରଙ୍କ ବିଭିନ୍ନ ଚକ୍ରାନ୍ତ । ସରକାରୀ ସ୍ତରରେ ଗଂଜାମର ଓଡ଼ିଆମାନଙ୍କୁ ତେଲୁଗୁ ରୂପେ ରେକର୍ଡ଼ଭୁକ୍ତ କରାଯାଉଥିବା ଉଦ୍ୟମ ଏବଂ ତାହାକୁ ଭିତ୍ତିକରି ଓଡ଼ିଆ ଅଞ୍ଚଳ ସବୁକୁ ତେଲୁଗୁ ଅଞ୍ଚଳ ହିସାବରେ ପରିଚିତ କରାଇବାର ହୀନ ଚକ୍ରାନ୍ତ । ଜନଗଣନା ତଥ୍ୟର ଅନୁଶୀଳନ କରି ତାହା ସେ ମର୍ମେମର୍ମେ ଅନୁଭବ କରିପାରିଥିଲେ । ସେଇ ରେକର୍ଡ଼ ଅନୁଯାୟୀ- ୧୯୦୧, ୧୯୧୧ ଏବଂ ୧୯୨୧ ଜନଗଣନା ତଥ୍ୟ ଅନୁସାରେ ମାନ୍ଦ୍ରାଜ ପ୍ରେସିଡେନ୍‌ସିରେ ଓଡ଼ିଆଙ୍କ ସଂଖ୍ୟା କ୍ରମଶଃ କମିକମି ଯାଇଥିଲା ଏବଂ ଅନ୍ୟାନ୍ୟ ସଂପ୍ରଦାୟଗୁଡ଼ିକ କ୍ରମେ ସ୍ଫୀତ ହୋଇ ଉଠିଥିଲେ । ସେହି ସଂପର୍କିତ ତଥ୍ୟ ମଧ୍ୟ ସଂଯୋଜିତ କରିଥିଲେ ଗୋଲ୍ ଟେବୁଲ୍ ବୈଠକ ଅବସରରେ ପ୍ରସ୍ତୁତ ଏବଂ ବୈଠକର ସଭ୍ୟମାନଙ୍କୁ ପ୍ରଦତ୍ତ ସ୍ମାରକପତ୍ରରେ । ସେଥିରେ ଜନଗଣନାରେ ସଂଗୃହୀତ ତଥ୍ୟ ପ୍ରଦାନ କରି ସେ ସୂଚାଇ ଦେଇଥିଲେ ଯେ ୧୯୦୧ ଜନଗଣନା ବେଳେ ମାନ୍ଦ୍ରାଜ ଶାସନାନ୍ତର୍ଗତ ଗଞ୍ଜାମ ଜିଲ୍ଲାରେ ଓଡ଼ିଆଭାଷୀ ଜନଗଣ ଥିଲେ ପ୍ରାୟ ସାଢ଼େ ୧୨ ଲକ୍ଷ । ପରବର୍ତ୍ତୀ ଦଶନ୍ଧିରେ, ୧୯୧୧ ବେଳକୁ ସମଗ୍ର ଜିଲ୍ଲାରେ ପ୍ରାୟ ଦୁଇ ଲକ୍ଷ ଜନସଂଖ୍ୟା ବୃଦ୍ଧି ଘଟିଥିଲେ ସୁଦ୍ଧା ଓଡ଼ିଆଭାଷୀଙ୍କ ସଂଖ୍ୟା ପ୍ରାୟ ତିନି ଲକ୍ଷ କମିଯାଇ ପ୍ରାୟ ସାଢ଼େ ନଅ ଲକ୍ଷରେ ପହଞ୍ଚିଥିବା ବେଳେ ସେଇ ଦଶବର୍ଷ ଭିତରେ ଜିଲ୍ଲାର ସଂଖ୍ୟାନ୍ୟୂନ ତେଲୁଗୁ ଲୋକଙ୍କ ସଂଖ୍ୟା ବୃଦ୍ଧି ପାଇଥିଲା ପ୍ରାୟ ପାଞ୍ଚ ଲକ୍ଷ । ୧୯୨୧ ଜନଗଣନା ବେଳେ ବି ଅବସ୍ଥା ଥିଲା ତଦ୍ରୂପ ।

ତେଣୁ ଏହି ଅବାସ୍ତବତାକୁ ଯଥାର୍ଥରେ ଅନୁଭବ କରି ୧୯୩୧ ବେଳେ ତାହାର ଯେଭଳି ପୁନରାବୃତ୍ତି ନହୁଏ ସେଥିପାଇଁ ପ୍ରଗାଢ଼ ଉଦ୍ୟମ କରିଥିଲେ ମହାରାଜା । ପାରଳାରେ ଦାଦା ପଦ୍ମନାଭ ଦେବଙ୍କଦ୍ୱାରା ପ୍ରତିଷ୍ଠିତ ଏବଂ ପିତା ଗୌରଚନ୍ଦ୍ର ଦେବଙ୍କ ପ୍ରତ୍ୟକ୍ଷ ସ୍ମୃତି ବିଜଡ଼ିତ ଉତ୍କଳ ହିତୈଷିଣୀ ସମାଜର ସଭ୍ୟଗଣଙ୍କୁ ଜାଗ୍ରତ କରାଇଥିଲେ ୧୯୩୧ ଜନଗଣନା ବେଳେ । ସେମାନଙ୍କୁ ଉତ୍ସାହିତ ତଥା ପ୍ରରୋଚିତ କରିଥିଲେ କେବଳ ନିଜ ଜମିଦାରି ନୁହେଁ ସମଗ୍ର ଗଂଜାମ



Ama Odisha pdf (aamaodisha@gmail.com)

ଏବଂ ବିଶାଖାପାଟଣା ଜିଲ୍ଲାରେ, ବିଶେଷକରି ତେଲୁଗୁ କର୍ମଚାରୀଙ୍କ ଦ୍ୱାରା କବଳିତ ଏବଂ ପରିଚାଳିତ, ଜନସୁମାରି ଯେଭଳି ନ୍ୟାୟୋଚିତ ଏବଂ ଯଥାଯଥ ଭାବରେ ଅନୁଷ୍ଠିତ ହୁଏ ସେ ଦିଗରେ ଯତ୍‌ପରୋନାସ୍ତି ଉଦ୍ୟମ କରିବାପାଇଁ । ସେତେବେଳେ ଅନୁଷ୍ଠାନର ପୃଷ୍ଠପୋଷକ ମହାରାଜାଙ୍କ ପ୍ରତ୍ୟକ୍ଷ ପ୍ରୋତ୍ସାହନ କ୍ରମେ ସଭ୍ୟଗଣ ଅଣ୍ଟା ଭିଡ଼ିଥିଲେ ମାନ୍ଦ୍ରାଜର ସଂଖ୍ୟାଲଘୁ ଓଡ଼ିଆମାନଙ୍କର ସ୍ୱାର୍ଥରକ୍ଷାପାଇଁ । ସଠିକ ଭାବରେ ଓଡ଼ିଆ ତଥା ଆଦିବାସୀ ସଂପ୍ରଦାୟ ଯେପରି ଜନଗଣନା ନଥିପତ୍ରରେ ରେକର୍ଡ଼ଭୁକ୍ତ ହେବେ ସେଥିପାଇଁ ସେମାନେ ପ୍ରବଳ ଉଦ୍ୟମ ଆରମ୍ଭ କରିଥିଲେ । ହିତୈଷିଣୀ ସମାଜର ସଭ୍ୟମାନଙ୍କଦ୍ୱାରା ସେଇ ପ୍ରଚାରମୂଳକ ଅଭିଯାନକୁ ମାନ୍ଦ୍ରାଜ ସରକାରୀ ଉଚ୍ଚ ହାକିମମାନେ ବିଷ ଦୃଷ୍ଟିରେ ଦେଖୁଥିଲେ । ସେମାନଙ୍କ ମଧ୍ୟରେ ଅନ୍ୟତମ ଥିଲେ ଗଂଜାମର କଲେକ୍ଟର ମି. ଡିକ୍‌ସନ୍ ଏବଂ ମାନ୍ଦ୍ରାଜର ଜନଗଣନା କମିଶନ୍‌ର ମି. ଇଟ୍‌ସ । ସେମାନେ ବିଭିନ୍ନ ପ୍ରକାରର ଧମକଚମକ ଦେଇଥିଲେ ମଧ୍ୟ ତାହାକୁ ହିତୈଷିଣୀର କର୍ମୀଗଣ ବିଶେଷ ଗୁରୁତ୍ୱ ଦେଇନଥିଲେ ମହାରାଜାଙ୍କ ଭରସା ପାଇ ।

ଇତି ମଧ୍ୟରେ ଲଣ୍ଡନରେ ଦ୍ୱିତୀୟ ଗୋଲ୍ ଟେବୁଲ୍ ବୈଠକ ଅନୁଷ୍ଠିତ ହୋଇଥିଲା ଏବଂ ସେଇ ସମୟରେ ପ୍ରଥମ ଗୋଲ୍‌ଟେବୁଲ୍ ବୈଠକବେଳେ ନୀତିଗତ ଭାବେ ନିଷ୍ପତ୍ତି ନିଆଯାଇଥିବା ଓଡ଼ିଶା ପ୍ରସ୍ତାବକୁ କେନ୍ଦ୍ରକରି ଆଲୋଚନାମାନ ହୋଇଥିଲା । ୧୯୩୧ ମସିହା ସେପ୍ଟେମ୍ବର ସାତ ତାରିଖ ଦିନ ଏହି ବୈଠକ ଆରମ୍ଭ ହୋଇ ଡିସେମ୍ବର ୧ ପର୍ଯ୍ୟନ୍ତ ଚାଲିଥିଲା ।

ତଦନୁଯାୟୀ ତାହାର ପରବର୍ତ୍ତୀ ପଦକ୍ଷେପ ସୀମା କମିଟି ଗଠନ । ସେଇ ସେପ୍ଟେମ୍ବର ମାସରେ ହିଁ ତାହା ଗଠିତ ହୋଇଥିଲା । ନୂତନ ପ୍ରଦେଶପାଇଁ ସୀମା ସରହଦ ସମେତ ଶାସନଗତ, ଆର୍ଥନୀତିକ ତଥା ଅନ୍ୟାନ୍ୟ ଆନୁଷଙ୍ଗିକ ବିଷୟରେ ସୁପାରିସ କରିବା ଥିଲା ତାହାର ଉଦ୍ଦେଶ୍ୟ । ତତ୍‌ସହିତ ସେଭଳି ଶାସନ ସଂସ୍କାରର ପରିଣାମ ସ୍ୱରୂପ ଭାରତର ଅନ୍ୟାନ୍ୟ ପ୍ରାଦେଶିକ ଶାସନ ଉପରେ ତାହାର ପ୍ରଭାବ ସଂପର୍କରେ ଅନୁଧ୍ୟାନ କରି ମତାମତ ଦେବାପାଇଁ ମଧ୍ୟ କମିଟିକୁ ପ୍ରସ୍ତାବ ଦିଆଯାଇଥିଲା । ସେହି କମିଟିଟି ସୀମା କମିଟି / ଓଡ୍‌ନାଲ୍ କମିଟି ରୂପେ ଦେଶରେ ବିଶେଷ ଭାବରେ ପରିଚିତି ଲାଭ କରିଥିଲା ।

—୦—



Ama Odisha pdf (aamaodisha@gmail.com)

# ସୀମା କମିଟିରେ ସଭ୍ୟ

୧୯୩୧ ସେପ୍ଟେମ୍ବରରେ ଗଠିତ ନୂତନ ଓଡ଼ିଶାପାଇଁ ସୀମା କମିଟିରେ ଭାରତର ପୂର୍ବତନ ଘରୋଇ ବିଭାଗ ସଚିବ ସାର୍ ସାମୁଏଲ୍ ଓଡ଼ନେଲ୍ ଅଧ୍ୟକ୍ଷ ରୂପେ ନିଯୁକ୍ତ ହୋଇଥିବା ବେଳେ କେନ୍ଦ୍ର ବିଧାନ ପରିଷଦର ସଦସ୍ୟ ଆସାମବାସୀ ଶ୍ରୀ ତରୁଣ ରାମ ଫୁକନ୍ ଏବଂ ରାଷ୍ଟ୍ର ପରିଷଦର ସଦସ୍ୟ ବମ୍ବେ ନିବାସୀ ଶ୍ରୀ ଏଚ୍. ଏମ୍. ମେହେଟା ସଦସ୍ୟ ନିଯୁକ୍ତ ହୋଇଥିଲେ । ସେମାନଙ୍କ ସହଯୋଗୀ ରୂପେ ବିହାରୀ ଏବଂ ତେଲୁଗୁ ପ୍ରତିନିଧି ଥିଲେ ଶ୍ରୀ ସଚ୍ଚିଦାନନ୍ଦ ସିହ୍ନା ଏବଂ ଶ୍ରୀ ସି.ଭି.ଏନ୍ ରାଜୁ । ସୀମା କମିଶନ୍‌ରେ ଓଡ଼ିଆମାନଙ୍କୁ ପ୍ରତିନିଧିତ୍ୱ କରୁଥିଲେ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ । ଏଇ ସମସ୍ତେ ବୈଠକଗୁଡ଼ିକରେ ଅଂଶ ଗ୍ରହଣ କରିବାଲାଗି ନିଷ୍ପତ୍ତି ହୋଇଥିଲା । ପୁଣି ଭାରତର ଏ.ଜି. କାର୍ଯ୍ୟାଳୟର ସହକାରୀ ଏକାଉଣ୍ଟସ୍ ଅଫିସ୍‌ର ଶ୍ରୀ ଆର୍.ଡି. ବାଲ୍‌ଭେଲିଙ୍କୁ ଦାୟିତ୍ୱ ଦିଆଯାଇଥିଲା, ନୂତନ ପ୍ରଦେଶ ସହ ଜଡ଼ିତ ଆର୍ଥନୀତିକ ବିଷୟାବଳୀର ସମୀକ୍ଷାପାଇଁ ।

ସେଭଳି କମିଶନ୍ ନିଯୁକ୍ତିରେ ଓଡ଼ିଶାରେ ଏବଂ ଅନ୍ୟ ପ୍ରାଦେଶିକ ସରକାରଙ୍କ ଅଧୀନରେ ଥିବା ଓଡ଼ିଆ ଅଧ୍ୟୁଷିତ ଅଞ୍ଚଳଗୁଡ଼ିକରେ ଏକ ନୂତନ ଉନ୍ମାଦନା ସୃଷ୍ଟି ହୋଇଥିଲା । ସ୍ୱତନ୍ତ୍ର ଓଡ଼ିଶାପାଇଁ ନୀତିଗତ ନିଷ୍ପତ୍ତି ଘୋଷିତ ହେବା ପରେ ପରେ ସେଭଳି କମିଶନ୍‌କୁ ପୁରୋଦୃଷ୍ଟିରେ ରଖି ୧୯୩୧ ମଇ ମାସ ପ୍ରାରମ୍ଭରେ କଟକଠାରେ ଏକ ସର୍ବଦଳୀୟ ସମ୍ମିଳନୀ ଆୟୋଜିତ ହୋଇଥିଲା । ସେଠାରେ ବ୍ୟକ୍ତି ତଥା ଦଳଗତ ମତପାର୍ଥକ୍ୟରୁ ଦୂରେଇ ରହି ଆଗାମୀ ସମୟରେ 'ଯୁଝିବାବେଳର ଗୋଟା ମଇଁଷି ଶିଂଘ' ପ୍ରଦର୍ଶନ କରି ଲଢ଼ିବାପାଇଁ ସମ୍ମିଳିତ କଣ୍ଠସ୍ୱରର ଆବାହନୀ ଶୁଣାଇଥିଲେ ସମସ୍ତେ । ବିଭିନ୍ନ କାର୍ଯ୍ୟପାଇଁ କେତେଗୁଡ଼ିଏ କମିଟି ଗଠିତ ହୋଇଥିଲା । ଅର୍ଥ କମିଟିର ଅଧ୍ୟକ୍ଷ ଶ୍ରୀ ବିଚିତ୍ରାନନ୍ଦ ଦାସ ହୋଇଥିବା ବେଳେ ବିଭିନ୍ନ ପ୍ରାନ୍ତରରେ ଜନମତ ଜାଗ୍ରତ ପାଇଁ ଶ୍ରୀ ଲିଙ୍ଗରାଜ ପାଣିଗ୍ରାହୀ ନେତୃତ୍ୱ ନେଇଥିଲେ । ସୀମା କମିଟିରେ ଦାଖଲ ହେବାପାଇଁ ଥିବା ବିଭିନ୍ନ ପ୍ରାମାଣିକ ତଥ୍ୟ ସଂଗ୍ରହପାଇଁ ଗଠିତ କମିଟିର ଅଧ୍ୟକ୍ଷ ହୋଇଥିଲେ ଶ୍ରୀ ନିରଂଜନ



Ama Odisha pdf (aamaodisha@gmail.com)

ପଟ୍ଟନାୟକ । ସେହି ଏକା ଉଦ୍ଦେଶ୍ୟରେ କଂଗ୍ରେସ ତରଫରୁ ଗଠିତ ହୋଇଥିବା କମିଟିରେ ଡକ୍ଟର ହରେକୃଷ୍ଣ ମହତାବଙ୍କ ପ୍ରସ୍ତାବ କ୍ରମେ ପଣ୍ଡିତ ନୀଳକଣ୍ଠ ନେତୃତ୍ୱ ନେଇଥିଲେ । ଓଡ଼ିଶାର ସର୍ବପ୍ରଥମ ଦୈନିକ ସମ୍ବାଦପତ୍ର 'ଆଶା' ତଥା ଏହାର ସଂପାଦକ ଶଶୀ ରଥ ବିଶେଷ ଭାବେ ଚଳଚଞ୍ଚଳ ହୋଇଉଠିଥିଲେ ସେବେଠାରୁ । ବିଶେଷକରି ଅନେକ ବିଭ୍ରାନ୍ତିକର ତଥ୍ୟ ସଂଯୋଜିତ ହୋଇଥିବା ସଂଭାବ୍ୟ କାରଣରୁ ଜନଗଣନା ରେକର୍ଡ଼କୁ ଆଧାର କରା ନଯିବା ଲାଗି ସେହି ସମ୍ମିଳନୀରେ ପ୍ରସ୍ତାବ ଗୃହୀତ ହୋଇଥିଲା ।

ହେଲେ ଆନୁଷ୍ଠାନିକ ଭାବେ ସୀମା କମିଶନ ଗଠିତ ହେବା ପରେ ପରେ ଗଜପତି କୃଷ୍ଣଚନ୍ଦ୍ରଙ୍କର ସଭ୍ୟ ମନୋନୟନକୁ ନେଇ ଓଡ଼ିଶା କଂଗ୍ରେସୀ ନେତାଗଣଙ୍କ ମଧ୍ୟରେ ଏକ ଚାପା ଗୁଂଜରଣ ସୃଷ୍ଟି ହୋଇଥିଲା । ଓଡ଼ିଶା ବାହାରର ଜଣେ ବ୍ୟକ୍ତିଙ୍କୁ ଓଡ଼ିଆମାନଙ୍କ ପ୍ରତିନିଧି ରୂପେ ମନୋନୀତ କରାଯାଇଥିବାରୁ ସେମାନଙ୍କ ପ୍ରତିବାଦ ମଧ୍ୟ ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶ ପାଇଥିଲା । ମାନ୍ଦ୍ରାଜ ଜଷ୍ଟିସ ପାର୍ଟିର ଜଣେ ମୁଖ୍ୟ ନେତା ହିସାବରେ କମିଟି ସହିତ ସଂପୃକ୍ତିକୁ ମଧ୍ୟ ଯୁକ୍ତ କରାଯାଇଥିଲା ସମାଲୋଚନା ବେଳେ । ସମ୍ଭବତଃ ତାର କାରଣ ଥିଲା- ଓଡ଼ିଶା ଡିଭିଜନର ତତ୍‌କାଳୀନ ଉଚ୍ଚାକାଂକ୍ଷୀ ନେତାଗଣଙ୍କ ମଧ୍ୟରୁ ସେଭଳି ଗୁରୁତ୍ୱପୂର୍ଣ୍ଣ କମିଟିରେ କାହାରିକୁ ମନୋନୀତ କରାଯାଇ ନଥିଲା । ଅପରନ୍ତୁ ବିହାର-ଓଡ଼ିଶା ସରକାର ସେଥିପାଇଁ ଯୋଗ୍ୟତମ ବ୍ୟକ୍ତି ହିସାବରେ ଉଚିତ ବିବେଚନା ହିଁ କରିଥିଲେ ।

ତଥାପି ଆତ୍ମଗୌରବ କ୍ଷୁଣ୍ଣ ହେବାକୁ ଦେଇ ନଥିଲେ ପାରଳା ଗଜପତି । ପିଲାଟି ଦିନରୁ ତ ସେ ଥିଲେ ବେଶ୍ ଆତ୍ମାଭିମାନୀ । ତାଙ୍କ ପରିବର୍ତ୍ତେ ସେଇ କମିଟିରେ ଓଡ଼ିଶାର ଜଣେ ଅଭିଜ୍ଞ ବ୍ୟକ୍ତିଙ୍କୁ ଗ୍ରହଣ କରାଯିବା ଉଚିତ ବୋଲି ମତ ପ୍ରକାଶ ପାଇବା ପରେପରେ ସେ ଆପଣାଛାଏଁ ସେଥିରୁ ଓହରିଯିବାପାଇଁ ସ୍ଥିର କରିଥିଲେ । ସେ ମତ ଦେଇଥିଲେ, ଯଦି ଅନ୍ୟ କୌଣସିମତେ ଜାତୀୟ ସ୍ୱାର୍ଥ ଅଧିକତର ଭାବରେ ରକ୍ଷା କରାଯାଇପାରିବ ତା'ହେଲେ ସେଥିରେ ସେ ସଂଶ୍ଳିଷ୍ଟ ରହିବେ କାହିଁକି ?

କିନ୍ତୁ ତାହାର ପରିଣାମ ଯେ କଦାପି ଶୁଭଙ୍କର ହେବ ନାହିଁ ତାହା ଓଡ଼ିଶା ଆନ୍ଦୋଳନକାରୀ ନେତାଗଣ ସଠିକ ଭାବରେ ଅନୁଭବ କରିଥିଲେ ଏବଂ ସୀମାକମିଟିରୁ ଓହରି ନଯିବାପାଇଁ ଅନୁରୋଧ ଜଣାଇଥିଲେ । ବିଶେଷକରି ଦକ୍ଷିଣ ବିଚ୍ଛିନ୍ନାଞ୍ଚଳର ଓଡ଼ିଆମାନଙ୍କର ସେଇ ଅନୁଭବ ଥିଲା ତୀବ୍ର । ତେଣୁ ବ୍ରହ୍ମପୁରର ଓକିଲ ଶ୍ରୀ ଦିଗମ୍ବର ରଥ ଏବଂ ଶ୍ରୀ ଗଣେଶ ମହାପାତ୍ର ପାରଳାରେ ମହାରାଜାଙ୍କୁ ସାକ୍ଷାତ୍‌କରି ପରିସ୍ଥିତିର ଗମ୍ଭୀରତା ନେଇ ଆଲୋଚନା କରିଥିଲେ; ଅନୁରୋଧ କରିଥିଲେ ତାଙ୍କର ପୂର୍ବ ନିର୍ଦ୍ଧାରଣର ପୁନର୍ବିଚାର କରିବାପାଇଁ । ପାରଳାର ପିପୁଲ୍‌ସ ଏସୋସିଏସନ୍ ପକ୍ଷରୁ ସଂପାଦକ ଶ୍ରୀ ସତ୍ୟନାରାୟଣ ରାଜଗୁରୁ ମଧ୍ୟ ମହାରାଜାଙ୍କୁ ଅନୁରୋଧ କରିଥିଲେ ଆଉ କିଛି ନହେଲେ ତାଙ୍କ ରାଜ୍ୟର ଜନଗଣଙ୍କ ସ୍ୱାର୍ଥରକ୍ଷାପାଇଁ ସେ ସେଥିରୁ ଓହରି ଆସିବା ଅନୁକୂଳ



Ama Odisha pdf (aamaodisha@gmail.com)

ହେବନାହିଁ । ପୁଣି ତାହା କୌଣସି ବ୍ୟକ୍ତିଗତ ନହୋଇ ଏକ ମହତ୍ ଜାତୀୟ କାର୍ଯ୍ୟ ହୋଇଥିବା ଦୃଷ୍ଟିରୁ ସେଭଳି ବିରୋଧକୁ କୌଣସି ଗୁରୁତ୍ୱ ଦିଆଯିବା ଅନୁଚିତ । ବନ୍ଧୁ ତଥା ଶୁଭେଚ୍ଛୁମାନଙ୍କ ଅନୁରୋଧକୁ ଏଡ଼ାଇ ଦେଇପାରି ନଥିଲେ ମହାରାଜା ।

୧୯୩୧ ନଭେମ୍ବର ସାତ ତାରିଖ ଦିନ ରାଜଧାନୀ ପାଟଣାଠାରେ ସୀମା କମିଶନ୍‌ର ପ୍ରଥମ ବୈଠକ ଅନୁଷ୍ଠିତ ହୋଇଥିଲା । ସେଠାରେ ତାହାର କାର୍ଯ୍ୟପ୍ରଣାଳୀ ସ୍ଥିର ହୋଇଥିଲା । ସେହିକ୍ରମରେ ଜନସାଧାରଣ, ସରକାରୀ ତଥା ବେସରକାରୀ ଅନୁଷ୍ଠାନଗୁଡ଼ିକ ନିକଟରୁ ସେମାନଙ୍କର ଦାବି, ସ୍ମାରକପତ୍ର ତଥା ଆବେଦନମାନ କମିଟି ନିକଟରେ ଦାଖଲ କରିବାପାଇଁ ବିଜ୍ଞପ୍ତି ପ୍ରକାଶ ପାଇଥିଲା ତତ୍ ପରଦିନ ।

ସେହି ଅନୁଯାୟୀ ନୂତନ ଓଡ଼ିଶା ସହିତ ମିଶ୍ରଣ ସପକ୍ଷରେ ଦକ୍ଷିଣ ପଶ୍ଚିମ ମେଦିନାପୁର, ସିଂହଭୂମ, ଖରସୁଆଁ ତଥା ମଧ୍ୟପ୍ରଦେଶ ଅନ୍ତର୍ଗତ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ସମେତ ସେଭଳି ଅନେକ ସ୍ଥାନରୁ ବ୍ୟକ୍ତିଗତ ତଥା ସାଂଗଠନିକ ଭାବେ ସ୍ମାରକପତ୍ରମାନ ଆସିଥିଲା । ପୁଣି ଦେଶରେ ସେହିଭଳି କୌଣସି ଶାସନତାନ୍ତ୍ରିକ ପରିବର୍ତ୍ତନ ଅନାବଶ୍ୟକ ବୋଲି ମଧ୍ୟ ଅନେକ ଓଡ଼ିଆ ଏକୀକରଣ ବିରୋଧୀ ଗୋଷ୍ଠୀ ଦାବି ଜଣାଇଥିଲେ । ସେଥିରେ ଅନ୍ତର୍ଭୁକ୍ତ ଥିଲେ ମେଦିନାପୁର ବିଭାଜନ କମିଟି, ଧଳଭୂମ ରାଜ୍ୟ ସ୍ୱତ୍ତ୍ୱାଧିକାରୀ ସଂଘ, ଜାମସେଦପୁର ବଙ୍ଗଳା ସଂଘ, କୋହ୍ଲାଣର ମାଙ୍କିଆ ଗୋଷ୍ଠୀ, ଗଂଜାମର ଡିଫେନ୍‌ସ ଲିଗ୍ ପ୍ରଭୃତି ଅନୁଷ୍ଠାନ । ମାନ୍ଦ୍ରାଜ ତଥା ମଧ୍ୟପ୍ରଦେଶ ସରକାରଙ୍କ ତରଫରୁ ମଧ୍ୟ ପ୍ରାୟ ସେହି କ୍ରମରେ ସ୍ମାରକପତ୍ରମାନ ପ୍ରଦତ୍ତ ହୋଇଥିଲା ।

୧୯୩୧ ନଭେମ୍ବର ୨୩ରୁ ଆରମ୍ଭ କରି ଜାନୁଆରି ୧୪ ମଧ୍ୟରେ କମିଶନ୍ ପ୍ରତ୍ୟକ୍ଷ ଅନୁସନ୍ଧାନରେ ଯାଇଥିଲେ । ସେଇ ଅବସରରେ ସେମାନେ ଜାମସେଦପୁର, ଚାଇଁବସା, ସମ୍ବଲପୁର, ରାୟପୁର, ମେଦିନାପୁର, ଗୋପାଳପୁର, ଓ୍ୱାଲ୍‌ଟିୟର୍, କାକିନାଡ଼ା ଏବଂ କଟକଠାରେ ଜନଗଣଙ୍କଠାରୁ ସାକ୍ଷ୍ୟ ଗ୍ରହଣ କରିଥିଲେ । ସେତିକିବେଳେ ମୋଟ ୪୧୦ ଜଣଙ୍କ ସାକ୍ଷ୍ୟ କମିଶନଙ୍କ ନିକଟରେ ଉପସ୍ଥାପିତ ହୋଇଥିଲା । ତେବେ ଓଡ଼ିଶାର ଉତ୍ତରପଟରୁ ସାକ୍ଷ୍ୟଗ୍ରହଣ ଆରମ୍ଭ କରିଥିବା ଉକ୍ତ କମିଟି ପ୍ରାରମ୍ଭ କାଳରେ ଜନଗଣଙ୍କ ଉନ୍ମାଦନାର ଅଭାବ ଅନୁଭବ କରିଥିଲା । ସିଂହଭୂମ ତଥା ମେଦିନାପୁରର ଲୋକଙ୍କ ମଧ୍ୟରେ ନୂତନ ପ୍ରଦେଶ ଗଠନପାଇଁ ସେଭଳି କୌଣସି ଉତ୍ସାହ ପରିଦୃଷ୍ଟ ହୋଇନଥିଲା ।

ବିଶେଷ ଉଲ୍ଲେଖଯୋଗ୍ୟ ଥିଲା, ସେଠାରେ ସୀମାକମିଟିର ଅନ୍ୟତମ ସଭ୍ୟ ପାରଳା ମହାରାଜାଙ୍କୁ ଭୟଭୀତ କରାଯିବା ଉଦ୍ୟମ । ସେଠିକାର ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ବିରୋଧୀ ନେତା ଶ୍ରୀ ବୀରେନ୍ଦ୍ର ସାସମଲ ପାରଳା ମହାରାଜାଙ୍କୁ ଧମକ ଦେଇଥିଲେ ''ଖୁଦି ରାମେର୍ ଦେଶ୍- ଫେରିଯାଅ ଉଡ଼େଦେର ରାଜା...'' ସେହିଭଳି ସେହି ଅଂଚଳର ହୋ ଆଦିବାସୀଗଣ ମଧ୍ୟ କଳାପତାକା ପ୍ରଦର୍ଶନ କରି କମିଟିକୁ ଫେରିଯିବାପାଇଁ ଆହ୍ୱାନ ଦେଇଥିଲେ ।



Ama Odisha pdf (aamaodisha@gmail.com)

ସେହିଭଳି ନେତାଗଣଙ୍କ ପ୍ରରୋଚନାକ୍ରମେ ଏକ ରକ୍ତାଙ୍କିତ ପତ୍ରରେ ମହାରାଜାଙ୍କୁ ମଧ୍ୟ ଧମକ ଦିଆଯାଇଥିଲା ।

Know Ye 'ure Raja
This is called midnapur
How do you dare to harm us
Have you Known that Padi's fate !

ଅତୀତରେ ବଙ୍ଗଳା ଉଗ୍ରବାଦୀଗଣ ସେଠିକାର ଜିଲ୍ଲା କଲେକ୍ଟର ମି. ପାଡ଼ିଙ୍କୁ ହତ୍ୟା କରିଥିଲେ ସେମାନଙ୍କ ସ୍ୱାର୍ଥବିରୋଧୀ କାର୍ଯ୍ୟକଳାପ ଯୋଗୁଁ । ତେଣୁ ସେହି ଭୟ ଦେଖାଇ କାର୍ଯ୍ୟରୁ ବିରତ ରହିବାପାଇଁ ମହାରାଜାଙ୍କୁ ସେମାନେ ଭୟ ପ୍ରଦର୍ଶନ କରିଥିଲେ ।

କିନ୍ତୁ ସେଥିରେ ମହାରାଜା ଥିଲେ ଅବିଚଳିତ । ଖରସୁଆଁ ରାଜଜେମାଙ୍କୁ ସେ ବିବାହ କରିଥିବାଯୋଗୁଁ ସେହି ଅଞ୍ଚଳରେ ସେ ପ୍ରଭୂତ ପ୍ରଭାବ ବିସ୍ତାର କରିପାରିଥିଲେ । ସେଠିକାର ରାଜା ପାରଳା ରାଜାଙ୍କ ଶାଳକ ହୋଇଥିବାଯୋଗୁଁ ସେ ମହାରାଜାଙ୍କୁ ସବୁମନ୍ତେ ସାହାଯ୍ୟ କରିଥିଲେ ଏବଂ ପରିଣାମତଃ ସେଠିକାର ଜନଗଣ ଓଡ଼ିଶାରେ ମିଶ୍ରଣ ସପକ୍ଷରେ ସାକ୍ଷ୍ୟପ୍ରଦାନ କରିଥିଲେ । ତଥାପି ମୋଟାମୋଟି ଭାବେ ସେହି ଉତ୍ତରାଞ୍ଚଳର ସାକ୍ଷ୍ୟପ୍ରମାଣ ପ୍ରଭାବହୀନ ହୋଇ ପଡ଼ିଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ତାର ଅନ୍ୟତମ ମୁଖ୍ୟ କାରଣ ଥିଲା ଜାତୀୟ କଂଗ୍ରେସର ଉଚ୍ଚତମ ମହଲରେ ଥିବା କିଛି ନେତାଙ୍କ ମନୋଭାବ ।

ଉଲ୍ଲେଖଯୋଗ୍ୟ ଯେ କଂଗ୍ରେସର କେତେଜଣ ଜାତୀୟ ନେତାଙ୍କ ପ୍ରରୋଚନାକ୍ରମେ ସେଠିକାର ସ୍ଥାନୀୟ ଓଡ଼ିଶା ମିଶ୍ରଣ ବିରୋଧୀ ନେତାଗଣ ଅଧିକ ଉତ୍ସାହିତ ହୋଇଉଠିଥିଲେ । ସେମାନେ, ବିଶେଷକରି ଷଢ଼େଇକଳା ରାଜ୍ୟର କଂଗ୍ରେସକର୍ମୀଗଣ, ପଣ୍ଡିତ ନୀଳକଂଠଙ୍କ ସାମନାରେ ତାହା ପ୍ରକାଶ୍ୟରେ ବ୍ୟକ୍ତ କରିବାକୁ ମଧ୍ୟ ପଛାଇ ନଥିଲେ । ଉତ୍ତର ବିଚ୍ଛିନ୍ନାଞ୍ଚଳଗୁଡ଼ିକରେ ଓଡ଼ିଆମାନଙ୍କୁ ସଂଗଠିତ କରାଇବାପାଇଁ ଓଡ଼ିଶା କଂଗ୍ରେସ ତରଫରୁ ଯାଇଥିବା ପଣ୍ଡିତ ନୀଳକଂଠଙ୍କର ସେଠିକାର ତତ୍‌କାଳୀନ ପରିବେଶ ସଂପର୍କରେ ଅଭିବ୍ୟକ୍ତି ହେଲା, 'ସର୍ବତ୍ର ବିରୁଦ୍ଧ ପ୍ରଚାର ଚାଲିଛି... କଂଗ୍ରେସ ମୋତେ ସିଂହଭୂମର କାମ କରିବାକୁ ଦେଇଛନ୍ତି... ମୁଁ ଯାଇ ସେ ଜିଲ୍ଲାରେ କଂଗ୍ରେସ କାମ କଲା ବେଳେ ସେହି ଜିଲ୍ଲାରେ ଥିବା କେତେକ ବଙ୍ଗାଳୀ ଓକିଲ ପ୍ରଭୃତିଙ୍କଠାରୁ ଶୁଣିଲି... ''ସିଂହଭୂମ ଏବେ ବିହାରରେ ରହିବାପାଇଁ ଆମ୍ଭେ ଲଢ଼ିବୁ... ଆପଣମାନେ ନେତୃଶ୍ରେଣୀୟ ଲୋକ । ଆପଣ ସୁଭାଷ, ସେନଗୁପ୍ତ, ରାଜେନ୍ଦ୍ରପ୍ରସାଦଙ୍କ ସଙ୍ଗେ ବିଚାର କରି ଯାହା ଠିକ୍ କରିଦେବେ, ଆମେ ତାହା ମାନିବାକୁ ବାଧ୍ୟ ହେବୁ ।'' ସେଠି ତୃଣମୂଳସ୍ତରରେ କାର୍ଯ୍ୟ କଲାବେଳେ ସେଭଳି ଦୈନନ୍ଦିନ ଅଭିଜ୍ଞତା ସବୁକୁ ନୀଳକଣ୍ଠ ପଠାଇ ଦେଉଥିଲେ ଶଶୀ ରଥଙ୍କ ନିକଟକୁ ଏବଂ ସେସବୁ ପ୍ରତିଦିନ ଦୈନିକ



Ama Odisha pdf (aamaodisha@gmail.com)

'ଆଶା'ରେ ପ୍ରକାଶ ପାଉଥିଲା । ସେହି ପତ୍ରିକାଟି ସେତେବେଳେ ବାସ୍ତବରେ ବିଭିନ୍ନ ଅଞ୍ଚଳରେ ଜନଜାଗରଣ ସୃଷ୍ଟି ଦିଗରେ ପ୍ରମୁଖ ଭୂମିକା ଗ୍ରହଣ କରୁଥିଲା ।

ଉତ୍ତରାଞ୍ଚଳରେ ଏଭଳି ସ୍ଥିତି ଥିବାବେଳେ ଓଡ଼ିଶାର ଦକ୍ଷିଣାଞ୍ଚଳରେ ସ୍ଥିତି କିନ୍ତୁ ଥିଲା ସଂପୂର୍ଣ୍ଣ ଓଲଟା ।

ମହାରାଜା କୃଷ୍ଣଚନ୍ଦ୍ରଙ୍କ ଉଦ୍ୟମରେ ବିଶେଷକରି ଗଂଜାମବାସୀ ଚଳଚଞ୍ଚଳ ହୋଇଉଠିଥିଲେ ସୀମା କମିଟିରେ ସାକ୍ଷ୍ୟ ଦେବାପାଇଁ; ଓଡ଼ିଶା ସହ ସେମାନଙ୍କ ମିଶ୍ରଣ ଦାବି ଜଣାଇବାପାଇଁ । ସେତେବେଳେ ମହାରାଜା ଥିଲେ ଗଂଜାମ ଭୂମ୍ୟଧିକାରୀ ସଂଘର ସଭାପତି । ତେଣୁ ସେହି ପ୍ରଭାବଶାଳୀ ଗୋଷ୍ଠୀକୁ ପ୍ରଥମେ ପ୍ରଭାବିତ କରି ସେ ସେମାନଙ୍କ ମାଧ୍ୟମରେ ଅନ୍ୟମାନଙ୍କୁ ଉତ୍ସାହିତ କରାଇବାପାଇଁ ସବୁମନ୍ତେ ଉଦ୍ୟମ କରିଥିଲେ । ସେ ନିଜେ ଓଡ଼ନେଲ୍ କମିଟି ସହିତ ସଂଯୁକ୍ତ ଥିବା ଯୋଗୁଁ ପ୍ରଭାବଶାଳୀ ସ୍ମାରକପତ୍ର ତଥା ବଳିଷ୍ଠ ସାକ୍ଷ୍ୟପ୍ରମାଣ ପ୍ରଦାନ ଏବଂ ଅନ୍ୟାନ୍ୟ ଆୟୋଜନ ସବୁ କରିବାପାଇଁ ଚିକିଟି ରାଜା ଗୌରଚନ୍ଦ୍ରଦେବଙ୍କୁ ଦାୟିତ୍ୱ ଅର୍ପଣ କରିଥିଲେ । ସେମିତି ଦେଖିଲେ ଶଶୀ ରଥ, ଲିଙ୍ଗରାଜ ପାଣିଗ୍ରାହୀ, ଦିଗମ୍ବର ରଥ ପ୍ରମୁଖମାନେ ତ ସଂପୂର୍ଣ୍ଣ ଲାଗିପଡ଼ିଥିଲେ ସେଥିପାଇଁ । ଗୋପାଳପୁରଠାରେ କମିଟି ତରଫରୁ ଏକ ଅସ୍ଥାୟୀ କାର୍ଯ୍ୟାଳୟର ଆୟୋଜନ କରାଯାଇଥିଲା ଏବଂ ସେଠିକାର ଦାୟିତ୍ୱରେ ରହିଥିଲେ ଜଣେ ଆଇ. ସି. ଏସ୍. ଅଫିସର ।

ସୀମା କମିଟି ବ୍ରହ୍ମପୁର ରେଳଷ୍ଟେସନ୍‌ରେ ପହଞ୍ଚିବା ବେଳକୁ ସେଠାରେ ହଜାର ହଜାର ଲୋକଙ୍କର ହର୍ଷୋତ୍‌ଫୁଲ୍ଲ ସମାବେଶ । ତାଳ, ମୃଦଙ୍ଗ ଓ ସଂକୀର୍ତ୍ତନରେ ଆକାଶ ପାତାଳ ପ୍ରକମ୍ପିତ । ସ୍ୱେଚ୍ଛାସେବକ ବାହିନୀକୁ ପରିଚାଳିତ କରୁଥିଲେ ଶଶୀ ରଥ । ତେଲୁଗୁଭାଷୀ ଲୋକ ମଧ୍ୟ ଶ୍ରୀ ରାମଲିଙ୍ଗମ୍‌ଙ୍କ ନେତୃତ୍ୱରେ ସେହି କମିଟିକୁ ଭବ୍ୟ ସ୍ୱାଗତ କରି ବ୍ରହ୍ମପୁର ରେଳଷ୍ଟେସନ୍‌ରେ ହିଁ ଆପଣାର ଗୁରୁତ୍ୱ ପ୍ରଦାନ କରିବାପାଇଁ ଯୋଜନା କରୁଥିବାର ଟିକିନିଖି ଖବର ଥିଲା ତାଙ୍କ ନିକଟରେ । ସେମାନଙ୍କର ଯୋଜନା ଥିଲା- ପ୍ରଥମରୁ ହିଁ ଏକତ୍ର ନହୋଇ ସେମାନେ ସାରା ଷ୍ଟେସନ୍‌ର ଏ କୋଣରୁ ସେ କୋଣ ପର୍ଯ୍ୟନ୍ତ ବିଚ୍ଛୁରିତ ହୋଇ ରହିଥିବେ । ଟ୍ରେନ୍ ଲାଗିବା ସଂଗେସଂଗେ ଏକତ୍ରିତ ହୋଇ କମିଟି ମୁଖ୍ୟଙ୍କୁ ସମ୍ବର୍ଦ୍ଧନା ଜଣାଇବେ । ସେଇ ଖବର ମଧ୍ୟ ଥିଲା ଶଶୀ ରଥଙ୍କ ନିକଟରେ । ତେଣୁ ସେ ଓଡ଼ିଆମାନଙ୍କୁ ଏଭଳି ଭାବରେ ସଂଗଠିତ ଓ ସଂଘବଦ୍ଧ କରାଇ ପ୍ରଥମରୁ ହିଁ ରଖିନେଇଥିଲେ ଯେ ତେଲୁଗୁ ଜନସମୁଦାୟ ଆଉ ଏକତ୍ର ହେବାର ସାମାନ୍ୟ ସୁଯୋଗ ମଧ୍ୟ ପାଇ ପାରି ନଥିଲେ । ଏପରିକି ଖୋଦ୍ ରାମଲିଙ୍ଗମ୍ ମଧ୍ୟ ସେଇ ପ୍ରବଳ ଜନସମାଗମ ଭିତରେ ଆଦୌ ଆଗକୁ ଯାଇ ପାରି ନଥିଲେ । ତାଙ୍କରି ପରିଧାନ ଅବିନ୍ୟସ୍ତ ହୋଇ ଯାଇଥିଲା ସେଇ ଜନଗହଳି ମଧ୍ୟରେ । ଫେରିଆସିବାକୁ ବାଧ୍ୟ ହୋଇଥିଲେ । ଗଂଜାମର ପାରମ୍ପରିକ ଓଡ଼ିଆ ସଂସ୍କୃତି ତାଳ-ସଂକୀର୍ତ୍ତନ ସହିତ ଓଡ଼ିଆ ନେତୃବୃନ୍ଦ



Ama Odisha pdf (aamaodisha@gmail.com)

ଓ ସ୍ୱେଚ୍ଛାସେବକ ବାହିନୀର ଘେରାବନ୍ଦୀ ଭିତରେ କମିଟିର ସଭ୍ୟଗଣ ଚିକିଟି ରାଜାଙ୍କ କାର୍‌ରେ ଗୋପାଳପୁର ଯାଇଥିଲେ । ଗଜପତି କୃଷ୍ଣଚନ୍ଦ୍ରଙ୍କ ଅଭିଳଷିତ ଆୟୋଜନ ଦେଖି ସେ ନିଶ୍ଚୟ ଖୁସି ହୋଇ ଯାଇଥିବେ ।

ତେବେ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ ତ ଆଗକୁ ରହିଥିଲା । ଉପଯୁକ୍ତ ବଳିଷ୍ଠ ସାକ୍ଷ୍ୟ ପ୍ରମାଣ ତ ପ୍ରଥମ ଆବଶ୍ୟକତା । ଜନସମୁଦାୟ କିଭଳି ଆପଣାର ସ୍ପଷ୍ଟ ମତ କମିଟି ସାମନାରେ ଉପସ୍ଥାପନ କରିପାରିବେ ଏବଂ ବିଭିନ୍ନ ଅନୁଷ୍ଠାନ କିଭଳି ତଥ୍ୟଯୁକ୍ତ ଯୁକ୍ତି / ଦାବି କମିଟି ନିକଟରେ ରଖିବେ ସେଥିପାଇଁ ମଧ୍ୟ ବିଭିନ୍ନ ପଦକ୍ଷେପମାନ ଗ୍ରହଣ କରିଥିଲେ । ସେଥିପାଇଁ ମହାରାଜା ପ୍ରଥମରୁ ହିଁ ନିଯୁକ୍ତ କରିଥିଲେ ଅନେକ ସଂଗଠକଙ୍କୁ ସବୁପ୍ରକାର ସହାୟତା ଯୋଗାଇ ଦେବାପାଇଁ । ସେତେବେଳର ସେଭଳି ଜଣେ ଥିଲେ ଡକ୍ଟର ସତ୍ୟନାରାୟଣ ରାଜଗୁରୁ । ସେଇ ସମୟର ଅନୁଭୂତି ତାଙ୍କ ଲେଖନୀରେ ରୂପ ପାଇଥିଲା– ''ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ପାରଳାଖେମଣ୍ଡିର ଓଡ଼ିଆ ସ୍ୱେଚ୍ଛାସେବକମାନଙ୍କୁ ନେଇ ବ୍ରହ୍ମପୁରଠାରେ ଥିବା ତାଙ୍କ ବଙ୍ଗଳାରେ ଏକ ଅଫିସ୍ ଖୋଲି ଦେଲେ । ସେଠାରେ ଏ ଲେଖକ ସମେତ ଯୁଗଳ କିଶୋର ପାଣିଗ୍ରାହୀ, ଶ୍ୟାମସୁନ୍ଦର ଗନ୍ତାୟତ ଓ ହୀରାଲାଲ୍ ବର୍ଦ୍ଧନ ରହି ସୀମାକମିଟିରେ ଓଡ଼ିଆମାନଙ୍କ ପକ୍ଷରୁ ଆସୁଥିବା ଲୋକଙ୍କପାଇଁ ସମସ୍ତ ବ୍ୟବସ୍ଥା କରିବା ଭାର ଗ୍ରହଣ କଲୁ ।''

ପୁଣି ନିଜ ରାଜ୍ୟ ରାଜଧାନୀ ପାରଳାରେ ମଧ୍ୟ ଅଧିକ ତତ୍‌ପର ଥିଲେ ମହାରାଜା । ସେଠିକାର ଉଭୟଭାଷୀ– ଓଡ଼ିଆ ଏବଂ ତେଲୁଗୁମାନେ କିଭଳି ଭାବେ ସମସ୍ୱରରେ ଓଡ଼ିଶା ସହ ମିଶ୍ରଣ ସପକ୍ଷରେ ସାକ୍ଷ୍ୟପ୍ରଦାନ କରିବେ ସେଥିପାଇଁ ବଳିଷ୍ଠ ପଦକ୍ଷେପମାନ ଗ୍ରହଣ କରିଥିଲେ । ତାଙ୍କରି ପୃଷ୍ଠପୋଷକତାରେ ଗଠିତ ହୋଇଥିଲା 'ପିପୁଲ୍‌ସ୍ ଏସୋସିଏସନ୍' । ତାହାର ସଭାପତିଙ୍କ ସମେତ ଦୁଇଜଣ ସମ୍ପାଦକଙ୍କ ମଧ୍ୟରୁ ଜଣେ ଥିଲେ ତେଲୁଗୁ ସଂପ୍ରଦାୟଭୁକ୍ତ । ସୀମାକମିଟି ନିକଟରେ ଉପସ୍ଥାପିତ ହେଉଥିବା ଓଡ଼ିଆ ବିରୋଧୀ 'ଗଂଜାମ ଡିଫେନ୍‌ସ ଲିଗ୍'ର ଦାବି ତଥା ବିଭିନ୍ନ ଅଞ୍ଚଳରେ ତେଲୁଗୁମାନଙ୍କ ତରଫରୁ ଉପସ୍ଥାପିତ ସମସ୍ତ ବିଭ୍ରାନ୍ତିକର ଯୁକ୍ତି ସମୂହକୁ ତେଲୁଗୁ ସଂପ୍ରଦାୟର ବ୍ୟକ୍ତି ବୃନ୍ଦଙ୍କ ଉପସ୍ଥିତିରେ, ସାଧାରଣ ସଭାମାନଙ୍କରେ ହିଁ ବିସ୍ତୃତ ଭାବରେ ଖଣ୍ଡନ କରୁଥିଲା ଉକ୍ତ କମିଟି । ଘୋଷଣା କରୁଥିଲା ପାରଳା ମହାରାଜାଙ୍କ ସହିତ ସେମାନଙ୍କର ମତ ଏକ ଏବଂ ଅଭିନ୍ନ । ଅତୀତର ରାଜାଗଣଙ୍କ ଭଳି ବର୍ତ୍ତମାନର ରାଜା ମଧ୍ୟ ସେମାନଙ୍କର ସୁଖ ସମୃଦ୍ଧିରେ ସହାୟକ ଏବଂ ଓଡ଼ିଆମାନଙ୍କ ଭଳି ତେଲୁଗୁ ସଂପ୍ରଦାୟ ସହିତ ସମସ୍ତଙ୍କ ପ୍ରତି ସମଭାବାପନ୍ନ ତଥା ସହାନୁଭୂତିଶୀଳ । ସେହି ମର୍ମରେ ହିଁ ପାରଳା ରାଜ୍ୟର ଓଡ଼ିଆ ଏବଂ ତେଲୁଗୁ ସଂପ୍ରଦାୟ ତରଫରୁ ଗୋପାଳପୁରଠାରେ ସମସ୍ତ ସାକ୍ଷ୍ୟପ୍ରମାଣ ପ୍ରଦତ୍ତ ହୋଇଥିଲା । ଅଭ୍ରାନ୍ତ ଭାବରେ ତେଲୁଗୁମାନେ ସାକ୍ଷ୍ୟ ଦେଇଥିଲେ ଦେଶ ମିଶ୍ରଣ ସପକ୍ଷରେ ।



Ama Odisha pdf (aamaodisha@gmail.com)

ଅଣଆନୁଷ୍ଠାନିକ ଭାବେ ରାଜା ଗୌରଚନ୍ଦ୍ରଙ୍କ ତରଫରୁ ଚିକିଟି ରାଜପ୍ରାସାଦରେ ଏକ ସାଂଧ୍ୟମିଳନର ଆୟୋଜନ କରାଯାଇ ସମ୍ବର୍ଦ୍ଧନା ଦିଆଯାଇଥିଲା ସୀମାକମିଟିକୁ । ସେଠାରେ ଗଂଜାମର ସବୁ ରାଜା, ଜମିଦାର ଏକତ୍ର ହୋଇ ମି. ଓଡ଼ନେଲ୍‌ଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରିଥିଲେ ଏବଂ ମାନପତ୍ରମାନ ପ୍ରଦତ୍ତ ହୋଇଥିଲା । ପଣ୍ଡିତ ରାଧାମୋହନ ବକ୍ସି ସଂସ୍କୃତ ଭାଷାରେ ଏକ ସାରଗର୍ଭକ ଭାଷଣ ମାଧ୍ୟମରେ ଗଂଜାମର ତତ୍‌କାଳୀନ ଦୁରବସ୍ଥା ବର୍ଣ୍ଣନା କରିଥିଲେ । ସେଥିରେ ଓଡ଼ନେଲ୍‌ଙ୍କ ହୃଦ୍‌ବୋଧ ହୋଇଥିଲା ଯେ ବାସ୍ତବରେ ତାହା ଓଡ଼ିଆବାସୀଙ୍କ ବାସସ୍ଥଳୀ ଏବଂ ସମ୍ଭବତଃ ସେଇ କାରଣରୁ ହିଁ ତାଙ୍କରି ସୁପାରିସରେ ସେହି ଅଞ୍ଚଳ ହୋଇଥିଲା ଓଡ଼ିଶାର ଶେଷସୀମା ।

ଏଭଳି ସମସ୍ତ ସାକ୍ଷ୍ୟପ୍ରମାଣ ସତ୍ତ୍ୱେ ଆନୁଷ୍ଠାନିକ ଭାବେ ମାନ୍ଦ୍ରାଜ ସରକାରଙ୍କ ଜନଗଣନା ବିଭାଗର ମୁଖ୍ୟ ମି ଇଟସ୍ ପ୍ରଦାନ କରିଥିବା ତଥ୍ୟ ଉପରେ ବିଶେଷ ଭାବରେ ନିର୍ଭର କରିଥିଲେ ମିଷ୍ଟର ଓଡ଼ନେଲ୍ । ଓଡ଼ିଆ ଭାଷାଗରିଷ୍ଠ ଅଞ୍ଚଳ ଏବଂ ଜାତି ଗରିଷ୍ଠ ଅଞ୍ଚଳଗୁଡ଼ିକୁ ଚିହ୍ନଟ କରି ମିଷ୍ଟର ଇଟିସ୍ ସୀମା କମିଟିକୁ ଦୁଇଟି ମାନଚିତ୍ର ପ୍ରଦାନ କରିଥିଲେ । ଉଭୟ ମାନଚିତ୍ରରେ ଅନେକ ଭ୍ରାନ୍ତି ରହିଥିଲା । ତଥାପି ଜାତିଭିତ୍ତିକ ମାନଚିତ୍ରକୁ କମିଟି ସଭ୍ୟ ମହାରାଜା ଅଧିକ ଗୁରୁତ୍ୱ ପ୍ରଦାନ କରିଥିଲେ ସୁଦ୍ଧା ଓଡ଼ନେଲ୍ କିନ୍ତୁ ତାହାକୁ ଗ୍ରହଣଯୋଗ୍ୟ ମନେ କରିନଥିଲେ । ସେହିଭଳି ଓଡ଼ିଶା ସହ ମିଶ୍ରଣପାଇଁ ବିଭିନ୍ନ ପ୍ରଦେଶାନ୍ତର୍ଗତ ଓଡ଼ିଆଭାଷୀ ଅଞ୍ଚଳଗୁଡ଼ିକର ଦୃଢ଼ ଦାବି ଉପସ୍ଥାପିତ ହୋଇଥିବା ବେଳେ ତାର ବିରୋଧ ମଧ୍ୟ କରାଯାଇଥିଲା ତତ୍‌କାଳ । ତେବେ ସଂପୃକ୍ତ ରାଜ୍ୟଗୁଡ଼ିକର ଜନଗଣନା ଅଧିକାରୀଙ୍କଠାରୁ ସେସବୁ ନିର୍ଦ୍ଦିଷ୍ଟ ଅଞ୍ଚଳଗୁଡ଼ିକର ଜନସଂଖ୍ୟା, ମାତୃଭାଷା, ଅନ୍ୟ ଜ୍ଞାତବ୍ୟ ଭାଷା, ତଥା ଜାତି ସଂପର୍କରେ ବିଭିନ୍ନ ତଥ୍ୟାବଳୀର ବରାଦ କରିଥିଲେ ସୀମା କମିଟି ।

ସେସବୁର ଅଧ୍ୟୟନ କରି ସୀମା କମିଟି ନୂତନ ଓଡ଼ିଶାପାଇଁ ଯେଉଁ ସୀମା ସରହଦ ସ୍ଥିର କରିଥିଲେ ସେଥିରେ ଥିଲା ବିହାର ଓଡ଼ିଶାର ଓଡ଼ିଶା ଡିଭିଜନ୍ ସମେତ ଅନୁଗୋଳ ରାଜ୍ୟ, କେନ୍ଦ୍ର ପ୍ରଦେଶର ପଦ୍ମପୁର ଏବଂ ଖଡ଼ିଆଳ ରାଜ୍ୟ ମାନ୍ଦ୍ରାଜ ଶାସନରୁ ଗଂଜାମ ଏବଂ ବିଶାଖାପାଟଣାର କିଛିକିଛି ଅଞ୍ଚଳ । ଏବଂ ଏଠାରେ ବିଶେଷ ଉଲ୍ଲେଖଯୋଗ୍ୟ ଥିଲା– ପ୍ରସ୍ତାବିତ ନୂତନ ଓଡ଼ିଶାରେ ପାରଳାଖେମୁଣ୍ଡି ଅନ୍ତର୍ଭୁକ୍ତ ହୋଇ ନଥିଲା । କମିଟିର ଅନ୍ୟାନ୍ୟ ସଭ୍ୟଗଣ ସେହି ପ୍ରସ୍ତାବରେ ସହମତ ନଥିଲେ ସୁଦ୍ଧା ଅଧ୍ୟକ୍ଷ ମି. ଓଡ଼ନେଲ୍‌ଙ୍କ ଯୁକ୍ତିଥିଲା ପାରଳା ଜମିଦାରୀ ଏକ ତେଲୁଗୁ ଭାଷା ବହୁଳ ରାଜ୍ୟ । ସେ ଜନଗଣନା ନିର୍ଦ୍ଦେଶକ ମି. ଇଟ୍‌ସ ଏବଂ ଅନ୍ୟ ଜଣେ ଆଇ.ସି.ଏସ୍. ଅଫିସର ମିଷ୍ଟର କ୍ରୋମ୍ବେଙ୍କଦ୍ୱାରା ସେହି ଦିଗରେ ଅଧିକ ପ୍ରଭାବିତ ହୋଇଥିବା ସମ୍ଭାବନା ଥିଲା ଅଧିକ । ମିଷ୍ଟର ଇଟସ୍ ଓଡ଼ିଶା ଆନ୍ଦୋଳନ ବିରୋଧୀ ମାନ୍ଦ୍ରାଜ ସରକାରଙ୍କ ଜଣେ ପଦସ୍ଥ ଅଫିସର ରହିଥିବା ବେଳେ ମିଷ୍ଟର କ୍ରୋମ୍ବେ ଥିଲେ ବ୍ୟକ୍ତିଗତ ଭାବେ ମହାରାଜାଙ୍କ ବିରୋଧୀ । ଅତୀତରେ ସେ



Ama Odisha pdf (aamaodisha@gmail.com)

ପାରଳା ମହାରାଜାଙ୍କର ଦେବାନ୍ ଭାବେ କାର୍ଯ୍ୟରତ ଥିଲେ ପାରଳାରେ । କିନ୍ତୁ ତାଙ୍କର ପ୍ରଜାବିରୋଧୀ ଏବଂ ଅତି ଅହଂକାରୀ ମନୋଭାବ ଯୋଗୁଁ ଏକଦା ମହାରାଜା ୨୪ ଘଣ୍ଟା ମଧ୍ୟରେ ରାଜ୍ୟ ଛାଡ଼ି ଚାଲିଯିବାପାଇଁ ଆଦେଶ ଦେଇଥିଲେ । ଆଇ.ସି.ଏସ୍. ଅଫିସର ହୋଇଥିବା ଯୋଗୁଁ ଆତ୍ମବଡ଼ିମାଯୁକ୍ତ କ୍ରୋଧେ ତାହା ନ କରିବାରୁ ସେ ରହୁଥିବା ଅତିଥି ଭବନର ପାଣି ଓ ଆଲୁଅ ବ୍ୟବସ୍ଥା ବନ୍ଦ କରାଇ ଦେଇଥିଲେ ମହାରାଜା । ତତ୍‌ପରେ ବାଧ୍ୟହୋଇ ଏକ ପ୍ରକାର ତଡ଼ା ଖାଇ ପାରଳା ତ୍ୟାଗ କରିଥିଲେ ସେ । ତତ୍‌ପରେ ମାନ୍ଦ୍ରାଜ ସରକାରଙ୍କ ଅଧୀନରେ ଜମିଜୁମା ବିଭାଗର ସେକ୍ରେଟାରୀ ରୂପେ ନିଯୁକ୍ତ ହୋଇଥିଲେ । ତେବେ ସେ ମି. ଓଡ଼ନାଲ୍‌ଙ୍କୁ ମହାରାଜାଙ୍କ ବିରୁଦ୍ଧରେ ପ୍ରଭାବିତ କରିଥିବା ସମ୍ଭାବନା ଥିଲା ଅଧିକ ।

ସୂର୍ଯ୍ୟର ଆଲୋକକୁ କେବେ କ'ଣ ଅସ୍ୱୀକାର କରାଯାଇପାରିବ ? ସୀମା କମିଟିର ଅନୁସନ୍ଧାନ ବେଳେ ସେ ଯେଉଁ ମତାମତ ରାଜ୍ୟର ତେଲୁଗୁ ପ୍ରଜାଗଣ ତଥା ଆଦିବାସୀ ସଂପ୍ରଦାୟଗୁଡ଼ିକ ନିକଟରୁ ପ୍ରକାଶ୍ୟ ଭାବରେ ପାଇଥିଲେ ତାହାକୁ ଅସ୍ୱୀକାର କରିବା ସମ୍ଭବ ନଥିଲା । ତେଣୁ କମିଟି ସୁପାରିସରେ ଛତ୍ରେଛତ୍ରେ ମହାରାଜାଙ୍କର ଭୂରିଭୂରି ପ୍ରଶଂସା କରାଯାଇଥିଲା । ମୁକ୍ତ କଣ୍ଠରେ ସେମାନେ ସ୍ୱୀକାର କରିଥିଲେ ଯେ ସେହିଭଳି କମିଟି ଗଠନ ସମ୍ଭବ ହୋଇଥିଲା କେବଳ ମହାରାଜାଙ୍କ ଯୋଗୁଁ- ସେ ପ୍ରଥମ ଗୋଲଟେବୁଲ୍ ବୈଠକରେ ବାଢ଼ିଥିବା ଏବଂ ସର୍ବସମ୍ମତିକ୍ରମେ ଗୃହୀତ ହୋଇଥିବା ପ୍ରସ୍ତାବଯୋଗୁଁ । ବାସ୍ତବରେ ସେଥିରୁ ତାହାଙ୍କର ଜାତୀୟ ମମତାର ଔଜଲ୍ୟ ପ୍ରକାଶିତ ହୋଇଥିଲା । ଅନୁସନ୍ଧାନ କାଳରେ ଅଭିଜ୍ଞତା ଆଧାରରେ କିଭଳି ଭାବରେ ତାହାଙ୍କର ତେଲୁଗୁ ପ୍ରଜା, କନ୍ଧ-ସଉରା ଇତ୍ୟାଦି ପାହାଡ଼ିଆ ଆଦିବାସୀ ସଂପ୍ରଦାୟ ତଥା ଜମିଦାରୀ ଅଞ୍ଚଳର ଓଡ଼ିଆ ଜନଗଣ ମହାରାଜାଙ୍କୁ ପିତୃତୁଲ୍ୟ ସ୍ନେହ, ଶ୍ରଦ୍ଧା ଏବଂ ଭକ୍ତି କରୁଥିଲେ ତାହାର ଏକ ସ୍ପଷ୍ଟଚିତ୍ର ପ୍ରତିଫଳିତ ହୋଇଥିଲା କମିଟି ସୁପାରିସରେ । ତଥାପି ସେମାନଙ୍କ ଅନୁଭବ ଥିଲା ଜମିଦାରିର ଅଧିକାଂଶ ପାହାଡ଼ିଆ ପ୍ରଜା ଥିଲେ ତେଲୁଗୁ ଭାଷୀ ବ୍ୟକ୍ତି । କିନ୍ତୁ ମହାରାଜାଙ୍କୁ ଜଣେ ସଂସ୍କୃତିସଂପନ୍ନ ଓଡ଼ିଆ ରାଜା ଭାବରେ ଅଭିହିତ କରାଯାଇ ତାହାଙ୍କର ଓଡ଼ିଶାର ଗଜପତି ପୁରୀ ରାଜାଙ୍କ ସହିତ ପାରିବାରିକ ସଂପର୍କ ବିଷୟରେ ମଧ୍ୟ ଉଲ୍ଲେଖ କରାଯାଇଥିଲା । ସେ ଆପଣାର ଜମିଦାରି ସହ ଓଡ଼ିଶାରେ ମିଶିବାପାଇଁ ଆଗ୍ରହୀ ଥିବା ସ୍ପଷ୍ଟ କରାଯାଇଥିଲେ ସୁଦ୍ଧା ବର୍ତ୍ତମାନ ଅପେକ୍ଷା ଭବିଷ୍ୟତ ସମୟର ଅନାଗତ ଆଶଙ୍କା ଜନ୍ ଓଡ଼ନାଲଙ୍କୁ ଅଧିକ ପ୍ରଭାବିତ କରିଥିଲା । ତାଙ୍କରି ବିଚାର ଥିଲା ବର୍ତ୍ତମାନ ଏକ ସ୍ୱରରେ ତେଲୁଗୁ ଓ ଓଡ଼ିଆ ପ୍ରଜାଗଣ ମହାରାଜାଙ୍କର ଜୟଜୟକାର କରୁଥିଲେ ସୁଦ୍ଧା ଏବଂ ବର୍ତ୍ତମାନ ଅତି ଉତ୍ତମ ଭାବରେ ଜମିଦାରି ପରିଚାଳିତ ହେଉଥିଲେ ସୁଦ୍ଧା ଜମିଦାରଙ୍କ ବିଚାରଧାରା ଭବିଷ୍ୟତରେ ପରିବର୍ତ୍ତିତ ହୋଇଯାଇପାରେ; ତାଙ୍କରି ଉତ୍ତରାଧିକାରୀଗଣ ଅନ୍ୟ ଭାଷୀ ଲୋକଙ୍କ ପ୍ରତି ପକ୍ଷପାତ ବିଚାର କରିପାରନ୍ତି ।



Ama Odisha pdf (aamaodisha@gmail.com)

କିନ୍ତୁ ପ୍ରତ୍ୟକ୍ଷ ଭାବେ ସମସ୍ତ ସାକ୍ଷ୍ୟପ୍ରମାଣ ଏବଂ ଆପଣାର ଅନୁଭବ ଆଧାରରେ କମିଟିର ଭାରତୀୟ ସଭ୍ୟଗଣ ମିଷ୍ଟର ଓଡ଼ନେଲ୍‌ଙ୍କ ମତାମତ ସହିତ ସହମତ ହୋଇପାରି ନଥିଲେ । ଏଯାବତ୍ ସମଭିବ୍ୟାହାରରେ କାଳାତିପାତ କରିଥିବା ପାରଳା ମହାରାଜାଗଣ କେତେବେଳେ ଯେ ଅତୀତ ଇତିହାସର ଧାରାକୁ ବ୍ୟାହତ କରି ତେଲୁଗୁ ପ୍ରଜାଙ୍କ ପ୍ରତି ପାତର ଅନ୍ତର ନୀତି ଆପଣାଇ ନେବେ ସେଥିପ୍ରତି ସନ୍ଦିହାନ ଥିଲେ ସେମାନେ । ଗଞ୍ଜାମର ଅନ୍ୟାନ୍ୟ ଜମିଦାରି ସଂପର୍କରେ ସୁବିଚାର କରାଯାଇ ଯଦି କେବଳ ତେଲୁଗୁ ସଂଖ୍ୟାଗରିଷ୍ଠତାକୁ  ବିଚାରକୁ ନେଇ ସେହି ଜମିଦାରିକୁ ଓଡ଼ିଶା ସହ ମିଶ୍ରଣ କରାନଯାଏ ତାହା ଅତ୍ୟନ୍ତ ଦୁର୍ଭାଗ୍ୟଜନକ ହେବ ବୋଲି ସେମାନେ ମତବ୍ୟକ୍ତ କରିଥିଲେ ।

କିନ୍ତୁ ସେଇ ଦୁର୍ଭାଗ୍ୟଜନକ ସ୍ଥିତିକୁ ହିଁ ଅଧ୍ୟକ୍ଷ ମହୋଦୟ ଆପଣାଇ ନେଇଥିଲେ ଓଡ଼ିଶାର ସୀମା ସୁପାରିସ କରିବାବେଳେ ।

ହେଲେ କମିଟି ଅଧ୍ୟକ୍ଷଙ୍କ ସେଭଳି ମତାମତକୁ ସର୍ବତ୍ର ତୀବ୍ର ବିରୋଧ କରାଯାଇଥିଲା । ମହାରାଜା ମଧ୍ୟ ସମସ୍ତ ଶକ୍ତି ପ୍ରୟୋଗ କରିଥିଲେ ଜନଜାଗରଣ ମାଧ୍ୟମରେ ସେଇ କମିଟି ସୁପାରସର ଅଯଥାର୍ଥତା ପ୍ରମାଣ କରିବାପାଇଁ । ପ୍ରାଦେଶିକ କଂଗ୍ରେସ କମିଟି ଆଶଙ୍କା ପ୍ରକାଶ କରିଥିଲା ଯେ ସେଭଳି ସୁପାରିସ ଗ୍ରହଣ କରାଗଲେ ନୂତନ ଓଡ଼ିଶାର ଭବିଷ୍ୟତ ସଂପୂର୍ଣ୍ଣ ଅନ୍ଧକାର ହୋଇଯିବ । ସେଭଳି ବିରୋଧ ଦକ୍ଷିଣ ଓଡ଼ିଶାରେ ଥିଲା ଅତି ତୀବ୍ର । ମହାରାଜାଙ୍କ ରାଜ୍ୟ ରାଜଧାନୀ ପାରଳାର ଛତ୍ରେଛତ୍ରେ ଜନଜାଗରଣ- ପାରଳାରାଜ୍ୟର ଲୋକେ ନୂତନ ଓଡ଼ିଶା ସହ ରହିବା ସପକ୍ଷବାଦୀ ତେଣୁ ସେହି ଅନୁକ୍ରମେ ପ୍ରସ୍ତାବିତ ନୂତନ ଓଡ଼ିଶାର ସୀମା ସଂଶୋଧନ କରାଯାଉ ।

ସେହି ଉଦ୍ଦେଶ୍ୟରେ ହିଁ ଉତ୍କଳ ସମ୍ମିଳନୀର ଏକ ଜରୁରୀ ବୈଠକ ବ୍ରହ୍ମପୁରଠାରେ ଆୟୋଜିତ ହୋଇଥିଲା । ସେଠାରେ ନିର୍ଦ୍ଧାରଣ ନିଆଯାଇଥିଲା ଯେ ପାରଳା ମହାରାଜାଙ୍କ ଅଧ୍ୟକ୍ଷତାରେ ଏକ ପ୍ରତିନିଧିମଣ୍ଡଳୀ ଭାରତର ବଡ଼ଲାଟଙ୍କୁ ସାକ୍ଷାତ୍‌କରି ପ୍ରସ୍ତାବିତ ଓଡ଼ିଶାର ସୀମା ସଂଶୋଧନପାଇଁ ପ୍ରଭାବିତ କରିବେ ଏବଂ ନୂତନ ପ୍ରଦେଶ ଗଠନ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିବେ । ଉପରୋକ୍ତ ନିର୍ଦ୍ଧାରଣ ଅନୁଯାୟୀ ମହାରାଜା କୃଷ୍ଣଚନ୍ଦ୍ର ଏକ ଚଉଦଜଣିଆ ପ୍ରତିନିଧିମଣ୍ଡଳୀରେ ଯାଇ ସିମଳାଠାରେ ବଡ଼ଲାଟ ଲର୍ଡ଼ ୱିଲିଙ୍ଗଡ଼ନ୍‌ଙ୍କୁ ସାକ୍ଷାତ୍ କରିଥିଲେ ୧୯୩୨ ମସିହା ସେପ୍ଟେମ୍ବର ୧୭ ତାରିଖ ଦିନ । ସେହି ପ୍ରତିନିଧିମଣ୍ଡଳୀରେ ଥିଲେ ପାରଳା ମହାରାଜାଙ୍କ ସମେତ ସର୍ବଶ୍ରୀ ଭୁବନାନନ୍ଦ ଦାସ,  ବାରିଷ୍ଟର ବିଶ୍ୱନାଥ ମିଶ୍ର, ଲିଙ୍ଗରାଜ ପାଣିଗ୍ରାହୀ, ମଧୁସୂଦନ ପାଣିଗ୍ରାହୀ, ଯୋଗେନ୍ଦ୍ର ନାରାୟଣ ଆଚାର୍ଯ୍ୟ, ଗୌରଚନ୍ଦ୍ର ସାମନ୍ତରାୟ, ଲକ୍ଷ୍ମୀ ନାରାୟଣ ସାହୁ, ଶ୍ୟାମସୁନ୍ଦର ଗନ୍ତାୟତ, ଚୌଧୁରୀ ରାଧାନାଥ ମିଶ୍ର, ଅଚ୍ୟୁତାନନ୍ଦ ପୁରୋହିତ, ଗିରିଜାଭୂଷଣ ଦତ୍ତଙ୍କ ସମେତ ମଧୁପୁର ଓ ପାରିକୁଦର ରାଜାଗଣ ।



Ama Odisha pdf (aamaodisha@gmail.com)

ବିସ୍ତୃତ ବିବରଣୀଯୁକ୍ତ ଏକ ସ୍ମାରକପତ୍ର ପ୍ରଦାନକରି ୧୯୩୨ ମସିହା ସେପ୍ଟେମର ୧୭ ତାରିଖ ଦିନ ସିମଲାଠାରେ ଦଳର ନେତା ମହାରାଜା ପ୍ରଥମେ ବଡ଼ଲାଟଙ୍କ ସହ ଆଲୋଚନା ଆରମ୍ଭ କରିଥିଲେ । ଇଂରେଜ ସାମ୍ରାଜ୍ୟର ହିତାକାଂକ୍ଷୀ ପ୍ରଜା ରୂପେ ବିଗତ ଯୁଦ୍ଧବେଳେ ଦୈହିକ ତଥା ଆର୍ଥିକ ସହାୟତାର ନିଦର୍ଶନ ଦେଇ ସେଇ ଓଡ଼ିଆ ପ୍ରଜାଗଣ କିଭଳି ଚାରୋଟି ପ୍ରାଦେଶିକ ସରକାରରେ ନିର୍ଯ୍ୟାତିତ ଅବସ୍ଥାରେ କାଳାତିପାତ କରୁଛନ୍ତି ତାହା ଆଲୋଚନା କରିଥିଲେ । ନୂତନ ଓଡ଼ିଶାରେ ଜାତିଗତ ପ୍ରଶ୍ନ ନେଇ ଯେ କଦାପି ବିଦ୍ୱେଷ ସୃଷ୍ଟି ହେବ ନାହିଁ କିମ୍ବା ଶାସନଗତ ଅସୁବିଧା ହେବନାହିଁ ତାହା ଉଲ୍ଲେଖକରି ଓଡ଼ିଆମାନଙ୍କର ଦୀର୍ଘ ଦିନର ଅଭିଳାଷ ଶୀଘ୍ରାତିଶୀଘ୍ର ପୂରଣ ପାଇଁ ଅନୁରୋଧ ଜଣାଇଥିଲେ ।

ପ୍ରତିନିଧି ଦଳର ସଦସ୍ୟ ଶ୍ରୀ ଭୁବନାନନ୍ଦ ଦାସ ନୂତନ ପ୍ରଦେଶର ଆର୍ଥିକ ବିଭବ ସଂପର୍କରେ ଏବଂ ଶ୍ରୀ ଲିଙ୍ଗରାଜ ପାଣିଗ୍ରାହୀ ସୀମା ସରହଦ ସଂପର୍କରେ ଆଲୋଚନାମାନ କରିଥିଲେ । ସେତେବେଳେ ବଡ଼ଲାଟଙ୍କ ଦୃଷ୍ଟି ଆକର୍ଷଣ କରି ପୂର୍ବରୁ ତୃଣମୂଳ ସ୍ତରକୁ ଯାଇ ଏବଂ ପ୍ରତ୍ୟକ୍ଷ ଭାବେ ଜନଗଣଙ୍କ ସହିତ ସଂପର୍କ ସ୍ଥାପନକରି ମତ ରଖିଥିବା ଫିଲପ୍-ଡଫ୍ କମିଟି ତଥା ଅଟଲି ସବ୍‌କମିଟିର ମତାମତକୁ ସୀମାକମିଟି କିଭଳି ଉପେକ୍ଷା କରିଛି ଏବଂ କିଭଳି କେବଳ ମାନ୍ଦ୍ରାଜ ସରକାରୀ ଶାସନାନ୍ତର୍ଗତ ତେଲୁଗୁଭାଷୀଗଣ ନୂତନ ପ୍ରଦେଶ ଗଠନକୁ ତୀବ୍ର ବିରୋଧ କରୁଛନ୍ତି ତାହା ସୂଚାଇ ଦେଇଥିଲେ । ସେତିକିବେଳେ ଶ୍ରୀ ଯୋଗେନ୍ଦ୍ର ନାରାୟଣ ଆଚାର୍ଯ୍ୟ ଆଲୋଚନା କରିଥିଲେ ସିଂହଭୂମ ସମସ୍ୟା ନେଇ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ତେଲୁଗୁଭାଷୀ ଏକ ପ୍ରତିନିଧିମଣ୍ଡଳୀ ଯାଇ ବଡ଼ଲାଟଙ୍କୁ ସାକ୍ଷାତ କରିବା ସଂଗେସଂଗେ ମତ ପ୍ରକାଶ କରିଥିଲା ଯେ ବ୍ରହ୍ମପୁରଠାରୁ ଆରମ୍ଭ କରି ଦକ୍ଷିଣର ପାରଳାଖେମଣ୍ଡି ଜମିଦାରି ପର୍ଯ୍ୟନ୍ତ ଅଞ୍ଚଳ ନୂତନ ପ୍ରଦେଶାନ୍ତର୍ଗତ ନହେଉ । କିନ୍ତୁ ସେମାନଙ୍କ ଯୁକ୍ତି ସମ୍ଭବତଃ ବଡ଼ଲାଟଙ୍କୁ ସେଭଳି ପ୍ରଭାବିତ କରିପାରି ନଥିଲା ।

ଓଡ଼ିଆ ପ୍ରତିନିଧିମଣ୍ଡଳୀଙ୍କ ସହ ସାକ୍ଷାତ ଆଲୋଚନାରେ ବଡ଼ଲାଟ ବିଶେଷ ପ୍ରୀତ ହୋଇଥିଲେ । ସେହି ଆଲୋଚନା ବେଳେ ବିସ୍ତୃତ ଭାବରେ ଆଲୋଚିତ ଓଡ଼ିଆଭାଷୀ ଜନଗଣଙ୍କ ସମସ୍ୟା ବିଶେଷକରି ସୀମା ତଥା ଆର୍ଥନୀତିକ ସମସ୍ୟାବଳୀ ସଂପର୍କରେ ଅବଗତ ହୋଇ ସେ ମଧ୍ୟ ଆଶା ପୋଷଣ କରିଥିଲେ ଯେ ତାଙ୍କରି କାର୍ଯ୍ୟକାଳ ମଧ୍ୟରେ ନୂତନ ଓଡ଼ିଶା ଗଠିତ ହୋଇ ପାରିବ । ଏଠାରେ ଉଲ୍ଲେଖଯୋଗ୍ୟ ଯେ ସୀମା କମିଟି ତାହାର କାର୍ଯ୍ୟ ଆପାତତଃ ଶେଷ କରିସାରିଥିଲେ ସୁଦ୍ଧା ସରକାରଙ୍କ ନୀତିଗତ ଘୋଷଣା ସେତେବେଳ ପର୍ଯ୍ୟନ୍ତ ବିଧିବଦ୍ଧ ଭାବରେ ହୋଇନଥିଲା । ତେଣୁ ବଡ଼ଲାଟ ପ୍ରତିନିଧି ଦଳଙ୍କୁ ସାକ୍ଷାତ କରିବା ପରେ ପରେ ସେ ନେଇ ଆପଣାର ସୁପାରିସ ସହିତ ଇଂଲଣ୍ଡ ଭାରତ ବିଭାଗ ସଚିବଙ୍କୁ ପତ୍ର ଲେଖିଥିଲେ ।



Ama Odisha pdf (aamaodisha@gmail.com)



**ସିମଳା ଦଳର ନେତା**

ସିମଳାରୁ ଫେରିବା ପରେ ମହାରାଜା ପାରଳାର ଉତ୍କଳ ହିତୈଷିଣୀ ସମାଜ ତରଫରୁ ୧୯୩୨ ଅକ୍ଟୋବର ୧୬ ତାରଖ ଦିନଟିକୁ 'ଓଡ଼ିଶା ଏକୀକରଣ ଦିବସ' ରୂପେ ପାଳନ କରିବାପାଇଁ ଆୟୋଜନ କରିଥିଲେ । ଏଥିରେ ସ୍ଥାନୀୟ 'ପିପୁଲ୍‌ସ ଏସୋସିଏସନ୍' ସଂପୂର୍ଣ୍ଣ ସହଯୋଗ କରିବା ଥିଲା ସ୍ୱାଭାବିକ । ମହାରାଜଙ୍କ ଦିଗ୍‌ଦର୍ଶନରେ ହିତୈଷିଣୀ ସମାଜର ଆହ୍ୱାନ କ୍ରମେ କଟକଠାରେ ଏକ ସର୍ବଦଳୀୟ ସମ୍ମିଳନୀର ଆୟୋଜନ ହୋଇଥିଲା । ସେଠାରେ ଏକ ପ୍ରସ୍ତାବ ଗୃହୀତ ହୋଇଥିଲା, ଯେ ପର୍ଯ୍ୟନ୍ତ ଅତି କମ୍‌ରେ ପାରଳାଖେମଣ୍ଡି ଓ ଜୟପୁର ନୂତନ ଓଡ଼ିଶାର ସୀମା ସହିତ ଯୁକ୍ତ ହୋଇନାହିଁ ସେ ପର୍ଯ୍ୟନ୍ତ ଓଡ଼ିଆମାନଙ୍କଦ୍ୱାରା ନୂତନ ଓଡ଼ିଶା ପ୍ରଦେଶ ଗ୍ରହଣୀୟ ନୁହେଁ ।

ଓଡ଼ିଶାରେ ଏଭଳି ଉଦ୍‌ବେଳିତ ସ୍ଥିତି ଥିବାବେଳେ ଇଂଲଣ୍ଡରେ ଅନୁଷ୍ଠିତ ହୋଇଥିଲା ତୃତୀୟ ଗୋଲ୍‌ଟେବୁଲ୍ ବୈଠକ । ଏହା ୧୯୩୨ ନଭେମ୍ବର ୧୭ରୁ ଆରମ୍ଭ ହୋଇ ଡିସେମ୍ବର ୨୪ ପର୍ଯ୍ୟନ୍ତ ଚାଲିଥିଲା । ସେଥିରେ ଓଡ଼ିଶାରୁ ଯୋଗଦେଇଥିଲେ ଖଲିକୋଟ ରାଜା ରାମଚନ୍ଦ୍ର ମର୍ଦ୍ଦରାଜ ଏବଂ କେନ୍ଦ୍ର ବିଧାନପରିଷଦର ସଭ୍ୟ ଶ୍ରୀ ଭୁବନାନନ୍ଦ ଦାସ । ରାଜା ରାମଚନ୍ଦ୍ର ଡିସେମ୍ବର ସାତ ତାରିଖଦିନ ସେଇ ବୈଠକରେ ଆପଣା ଭାଷଣରେ ସ୍ୱତନ୍ତ୍ର ଓଡ଼ିଶା ଗଠନ ପ୍ରକ୍ରିୟାକୁ ତ୍ୱରାନ୍ୱିତ କରାଯିବାପାଇଁ ଦାବି କରିଥିଲେ ।

ମହାରାଜା କୃଷ୍ଣଚନ୍ଦ୍ର ତାଙ୍କର ବନ୍ଧୁ ତଥା ସହପାଠୀ ଖଲିକୋଟ ରାଜା ରାମଚନ୍ଦ୍ରଙ୍କୁ ତତ୍‌ପରଦିନ ବଧାଇପୂର୍ବକ ଟେଲିଗ୍ରାମ କରିଥିଲେ ଗୋଲଟେବୁଲ୍ ବୈଠକରେ ଉତ୍କଳୀୟ ଆକାଂକ୍ଷାର ଯଥାର୍ଥ ପ୍ରତିଫଳନ ପାଇଁ । ପୁଣି ମଧ୍ୟ ଅନୁରୋଧ ଜଣାଇଥିଲେ ସେ ଯେଉଳି



Ama Odisha pdf (aamaodisha@gmail.com)

କୌଣସି ସମୟରେ ଦକ୍ଷିଣ ଓଡ଼ିଶା ତଥା ସିଂହଭୂମର ଓଡ଼ିଆମାନଙ୍କୁ ଅବହେଳା ପ୍ରଦର୍ଶନ ନକରନ୍ତି । ନୂତନ ଓଡ଼ିଶା ସହ ସେମାନଙ୍କ ସଂପୃକ୍ତି ପାଇଁ ସେଠାରେ ଯଥାସାଧ୍ୟ ଉଦ୍ୟମ ଜାରି ରଖିବାପାଇଁ ମଧ୍ୟ ପୁଣିଥରେ ସ୍ମରଣ କରାଇଦେଇଥିଲେ ।

ଅନ୍ତିମ (ତୃତୀୟ) ଗୋଲ୍‌ଟେବୁଲ୍ ବୈଠକର ଅନ୍ତିମ ଦିବସ- ଡିସେମ୍ବର ୨୪ ତାରିଖ ଦିନ ଭାରତ ବିଭାଗ ସଚିବ ସାର୍ ସାମୁଏଲ୍ ହୋର୍ ପ୍ରଥମ ଗୋଲ୍‌ଟେବୁଲ୍ ବୈଠକରେ ନିଆଯାଇଥିବା ଏବଂ ଦ୍ୱିତୀୟ ବୈଠକରେ ସେଇ ସଂପର୍କରେ ଆଲୋଚନା ମଧ୍ୟ ହୋଇଥିବା ନୀତିଗତ ନିଷ୍ପତ୍ତିକୁ ବିଧିବଦ୍ଧ ଭାବରେ ଘୋଷଣା କରି କହିଥିଲେ ଯେ ଓଡ଼ିଶା ଓ ସିନ୍ଧୁ ପ୍ରଦେଶ ଭାରତ ମାନଚିତ୍ରରେ ସ୍ୱତନ୍ତ୍ର ରାଜ୍ୟ ଭାବରେ ପ୍ରତିଷ୍ଠିତ ହେବ । ବିଗତ ଦୁଇବର୍ଷ ଧରି ଏହି ବିଷୟ ପ୍ରସଙ୍ଗରେ ଆଲୋଚନାମାନ ଚାଲିଛି । ଓଡ଼ିଶା ବିଷୟକ ପ୍ରଶ୍ନର ପୁଙ୍ଖାନୁପୁଙ୍ଖ ବିଚାର ସଂଗେସଂଗେ ବିଶେଷଜ୍ଞମାନଙ୍କଦ୍ୱାରା ତଦନ୍ତ ମଧ୍ୟ ଶେଷ ହୋଇଛି । ପୁଣି ଓଡ଼ିଶାର ସୀମା ନିର୍ଦ୍ଧାରଣ ବର୍ତ୍ତମାନପାଇଁ ଏକ ବିବାଦୀୟ ବିଷୟ ଏବଂ ସେ ସଂପର୍କରେ ବିଭିନ୍ନ ପ୍ରଶ୍ନ ଉଠିଲାଣି । ତାହାର ସଂପୂର୍ଣ୍ଣ ବିଚାର କରାଯାଇପାରିନାହିଁ । ତଥାପି ଭାରତୀୟ ରାଷ୍ଟ୍ର ସଂଘରେ ଏହି ଦୁଇଟି ପ୍ରଦେଶ ନୂତନ ଭାବରେ ସ୍ଥାନିତ ହେବେ ।

ଏ ଘୋଷଣା ପ୍ରକାଶ ପାଇବା ପରେ ପରେ ଓଡ଼ିଶାର ଛତ୍ରେଛତ୍ରେ ଆନନ୍ଦର ଲହରୀ ଖେଳି ଯାଇଥିଲା । ରାଜା ରାମଚନ୍ଦ୍ରଙ୍କ ପରାମର୍ଶକ୍ରମେ ଓଡ଼ିଶାର ବିଭିନ୍ନ ପ୍ରାନ୍ତରରୁ ଏବଂ ଓଡ଼ିଆମାନଙ୍କ ତରଫରୁ ସାର୍ ସାମୁଏଲ୍ ହୋର୍‌ଙ୍କୁ ଅଭିନନ୍ଦନମାନ ଜ୍ଞାପନ କରାଯାଇଥିଲା । ସେଥିରେ ଦକ୍ଷିଣ ଓଡ଼ିଶା ତଥା ପାରଳା ଅଞ୍ଚଳର ଅବଦାନ ଥିଲା ସର୍ବାଧିକ । ପାରଳା ମହାରାଜାଙ୍କ ଦିଗ୍‌ଦର୍ଶନକ୍ରମେ ସରକାରଙ୍କୁ ତଥା ସାମୁଏଲ ହୋର୍‌ଙ୍କୁ ସାଧୁବାଦ ସମେତ ସୀମାମକିଟି ସୁପାରିଶରେ ବାଦ ପଡ଼ିଯାଇଥିବା ଓଡ଼ିଆ ଅଞ୍ଚଳ ସବୁକୁ ଯୁକ୍ତ କରାଯିବା ପାଇଁ ପୁନଃ ନିଷ୍ପତ୍ତି ନିଆଯିବା ଲାଗି ମଧ୍ୟ ଅନୁରୋଧ କରଯାଇଥିଲା ।

୧୯୩୨ ଡିସେମ୍ବର ୩୧ ତାରିଖ ଦିନ ସେତେବେଳେ ଇଂଲଣ୍ଡରେ ଥିବା ବଂଧୁ ରାମଚନ୍ଦ୍ରଙ୍କୁ ମହାରାଜା କୃଷ୍ଣଚନ୍ଦ୍ର ଏକ ଟେଲିଗ୍ରାମ ମାଧ୍ୟମରେ ଅନୁରୋଧ ଜଣାଇଥିଲେ । ସେଠାରେ ଆଉ କିଛି ଅଧିକ ସମୟ ରହିବାପାଇଁ; ଘୋଷିତ ହୋଇଥିବା ନୂତନ ପ୍ରଦେଶ ସଂପର୍କରେ ସରକାରଙ୍କର ବିଭିନ୍ନ ପଦକ୍ଷେପର ଅନୁଧ୍ୟାନ ପାଇଁ । ସେ ଅନୁରୋଧ ଜଣାଇଥିଲେ ସେଠରେ ରହି ସେ ଗୋପାଳପୁରଠାରେ ସୀମାକମିଟିକୁ ପ୍ରଦାନ କରିଥିବା ଦାବିଗୁଡ଼ିକର ସଫଳ ରୂପ ଗ୍ରହଣ ପାଇଁ ଉଦ୍ୟମ କରିବେ ଏବଂ କୌଣସି ପରିସ୍ଥିତିରେ ସେଥିରୁ ଯେମିତି ତିଳେ ମାତ୍ର ବିଚ୍ୟୁତ ନହୁଅନ୍ତି ସେଥିପାଇଁ ସଦା ଜାଗ୍ରତ ରହିବେ । ମୁଁ ବର୍ତ୍ତମାନ ଯେଉଁଠି ଅଛି ସେଇଠି ଛାଡ଼ିଦେଇ ଆପଣମାନେ ଚାଲିଯିବା (ଓଡ଼ିଶାକୁ) କ'ଣ ଅନୁଦାରତା ହେବନାହିଁ ? ସେହି ପରିସ୍ଥିତିରେ ବର୍ତ୍ତମାନ ତାହା ଏକ ନିର୍ଣ୍ଣାୟକ ସ୍ତରରେ ଥିବା ଯୋଗୁଁ ଏହି ବିଷୟର ଶେଷ ନିଷ୍ପତ୍ତି ନିଆଯିବା ପର୍ଯ୍ୟନ୍ତ ସେଠାରେ



Ama Odisha pdf (aamaodisha@gmail.com)

ରହି ପରିସ୍ଥିତି ଉପରେ ତୀକ୍ଷ୍ଣ ନଜର ରଖିବାପାଇଁ ଅନୁରୋଧ ଜଣାଇଥିଲେ । ପୁଣି ସେଥିରେ ମତ ରଖିଥିଲେ ଯେ ଯଦି ସେ ରହିବାରେ ବିଶେଷ ଅସୁବିଧା ହୁଏ ତା' ହେଲେ ଭୁବନାନନ୍ଦ ଦାସଙ୍କୁ ସେଠାରେ ସେହି ଦାୟିତ୍ୱ ଦିଆଯାଇପାରେ ଏବଂ ସେଠରେ ତାଙ୍କର ବ୍ୟୟଭାର ଇତ୍ୟାଦି ଆମେ ବହନ କରିବା । ନୂତନ ଓଡ଼ିଶା ଗଠନ ଏବଂ ତତ୍‌ସହିତ ପାରଳା ଅଞ୍ଚଳ ଅଙ୍ଗୀଭୂତ ହେବା ନେଇ ଗଜପତି କୃଷ୍ଣଚନ୍ଦ୍ରଙ୍କ ଆକୁଳତା ଏଥିରୁ ସ୍ପଷ୍ଟ ଅନୁମେୟ ।

ମହରାଜାଙ୍କ ଅନୁରୋଧ ରକ୍ଷାକରି ଖଲିକୋଟ ରାଜା ରାମଚନ୍ଦ୍ର ଆଉ କିଛି କାଳ ଲଣ୍ଡନରେ ରହିବା ନିଷ୍ପତ୍ତି ନେଇଥିଲେ । ସେ ବିଶଦ ଭାବରେ ତଥ୍ୟ ସମ୍ବଳିତ ଏକ ସ୍ମାରକପତ୍ର ପଦାନ କରିଥିଲେ । ସେଥିରେ ଫିଲପ୍ ଡଫ୍ କିମଟିରୁ ଆରମ୍ଭ କରି ଅଟଲି ସବ୍‌କମିଟି, ସାଇମନ୍ କମିଶନ୍‌ର ମତାମତ ସବୁକୁ ଉପେକ୍ଷା କରି ସୀମା କମିଟି ଯେଉଁ ସୁପାରିଶ କରିଛି ତାହା ଉତ୍କଳୀୟଙ୍କ ଆଶା ଆକାଂକ୍ଷାରୁ ଯେ ଅନେକ ଦୂରରେ ତାହା ପ୍ରମାଣିତ କରାଇଥିଲେ ସେଥିରେ । ଅନୁରୋଧ କରିଥିଲେ ସେଇ ସବୁର ଉପଯୁକ୍ତ ବିଚାର କରି ଯଥାଯୋଗ୍ୟ ନିଷ୍ପତ୍ତି ନିଆଯିବା ଆବଶ୍ୟକ ଏବଂ ଅଧିକ ଆଲୋଚନା ମନେହେଲେ ସେଥିପାଇଁ ଜାନୁଆରି( ୧୯୩୩) ମଧ୍ୟ ଭାଗ ପର୍ଯ୍ୟନ୍ତ ସେ ସେଠାରେ ରହୁଥିବା କାରଣରୁ ପ୍ରତ୍ୟକ୍ଷ ସହଯୋଗ ପାଇଁ ପଦକ୍ଷେପ ନିଆଯାଇପାରେ ।

ଏଭଳି ପରିସ୍ଥିତି ଭିତରେ ଉତ୍କଳ ସମ୍ମିଳନୀର ଏକ ସ୍ୱତନ୍ତ୍ର ଅଧିବେଶନ କଟକଠାରେ ଅନୁଷ୍ଠିତ ହୋଇଥିଲା ୧୯୩୩ ମସିହା ଫେବ୍ରୁଆରି ୧୨ ତାରିଖ ଦିନ । ଗୋଲ୍‌ଟେବୁଲ୍ ବୈଠକରେ ଯୋଗଦେଇ ଫେରିବା ପରେ ଭୁବନାନନ୍ଦ ଦାସ ସେଥିରେ ଅଧ୍ୟକ୍ଷତା କରିଥିଲେ । ଉତ୍କଳୀୟ ଏକୀକରଣ ଆନ୍ଦୋଳନ ଏବଂ ସୀମା ସମସ୍ୟା ଉପରେ ବିଶଦ୍ ଆଲୋଚନା ହୋଇଥିଲା । କୁଳବୃଦ୍ଧ ମଧୁସୂଦନ ବିଶେଷ କରି ପାରଳା ଓ ଜୟପୁର ସଂପର୍କୀୟ ଆଲୋଚନା ପ୍ରସଙ୍ଗରେ କହିଥିଲେ 'ଆମ୍ଭେମାନେ ଦୀର୍ଘକାଳ ଧରି ଯାହା କାର୍ଯ୍ୟରେ ପରିଣତ କରିପାରି ନଥିଲୁ, ତାହା ପାରଳା ମହାରାଜାଙ୍କ ବ୍ୟକ୍ତିଗତ ଉଦ୍ୟମରେ ଏବଂ ସେକ୍ରେଟାରୀ ଅଫ୍ ଷ୍ଟେଟ୍ ସାର୍ ସାମୁଏଲ୍ ହୋର୍‌ଙ୍କୁ ପ୍ରଭାବିତ କରିବା ଫଳରେ ସମ୍ଭବ ହୋଇପାରିଛି । ବର୍ତ୍ତମାନ ଯେଉଁ କେତେକ ବିଚ୍ଛିନ୍ନ ଅଞ୍ଚଳ ଓଡ଼ିଶାରେ ମିଶିନାହିଁ ତାହା ସେହି ମହାରାଜାଙ୍କ ଉଦ୍ୟମରେ ହିଁ ନିଶ୍ଚୟ ଫଳବତୀ ହେବ ।''

ଏବଂ ବାସ୍ତବରେ ତାହା ହିଁ ହୋଇଥିଲା ।

—୦—



Ama Odisha pdf (aamaodisha@gmail.com)

# ପାରଳାର ବିଭାଜନ

୧୯୩୩ ମାର୍ଚ୍ଚ ୧୭ ତାରିଖ ଦିନ ନୂତନ ପ୍ରଦେଶପାଇଁ ସୀମା ନିର୍ଦ୍ଦେଶିତ ହୋଇ ସରକାରୀ ଶ୍ୱେତପତ୍ର ପ୍ରକାଶିତ ହୋଇଥିଲା । ସେଥିରେ ଥିଲା ଜଣେ ଗଭର୍ଣ୍ଣରଙ୍କ ଦ୍ୱାରା ଶାସିତ ହୋଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେବ । ସେହି ସ୍ୱତନ୍ତ୍ର ପ୍ରଦେଶପାଇଁ ଯେଉଁ ସୀମା ନିର୍ଦ୍ଦେଶ ହୋଇଥିଲା ତାହା ଥିଲା-

– ବିହାର-ଓଡ଼ିଶା ପ୍ରଦେଶର ଓଡ଼ିଶା ଡିଭିଜନ୍ ଅନ୍ତର୍ଗତ କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର ଓ ଅନୁଗୋଳ ଜିଲ୍ଲା ।

– କେନ୍ଦ୍ର (ମଧ୍ୟ) ପ୍ରଦେଶର ଖଡିଆଳ ଏବଂ ପଦ୍ମପୁର ଜମିଦାରି ସମେତ କୁଲାକୋଣ୍ଡା, ବୋଡ଼ିମାଳ, ପାଞ୍ଚପୁଡ଼ିଆ, ବ୍ରହ୍ମପୁର, ପଞ୍ଚପୁରାଣିଆ ଏବଂ ଠାକୁରପଲ୍ଲୀ ଗ୍ରାମ ।

– ମାନ୍ଦ୍ରାଜ ପ୍ରଦେଶର ପାରଳାଖେମଣ୍ଡି ଓ ଜଳନ୍ତରକୁ ବାଦ୍‌ଦେଇ ଗଞ୍ଜାମର ମାଳ ଅଞ୍ଚଳ ତଥା ଘୁମୁସର ଆସିକା, ସୋରଡ଼ା, କୋଦଳା, ଛତ୍ରପୁର ତାଲୁକା ସମେତ ଇଚ୍ଛାପୁର ତାଲୁକାର ସୁରଙ୍ଗୀ, ଜରଡ଼ା, ଚିକିଟୀ ଏବଂ ବ୍ରହ୍ମପୁର ତାଲୁକାର ଉତ୍ତରାଞ୍ଚଳ । ସେହି ଉତ୍ତରାଞ୍ଚଳର ଅର୍ଥ ଥିଲା ମାନଚିତ୍ରରେ ସୁରଳାର ତତ୍‌କାଳୀନ ଲୁଣମରା କାରଖାନା ଦେଇ ପୁରୁଷୋତ୍ତମପୁର ଏବଂ ସୁନପୁରକୁ ଯୋଗ କରୁଥିବା ସରଳ ରେଖା ।

ସୀମା କମିଟିର ସୁପାରିସ ଉପରେ ଭିତ୍ତିକରି ସେହି ଶ୍ୱେତପତ୍ର ପ୍ରକାଶ ପାଇବା ପରେ ପରେ ଓଡ଼ିଶାରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି ହୋଇଥିଲା । କେବଳ ସେହି କମିଟିର ସଭାପତି ମିଷ୍ଟର ଓଡ଼ନାଲଙ୍କ ମତାମତ ଉପରେ ଭିତ୍ତିକରି ମୋଟାମୋଟି ଭାବେ ସୀମା କମିଟି ରିପୋର୍ଟ ପ୍ରସ୍ତୁତ ହୋଇଥିଲା । ତେଣୁ ସେଥିରୁ ପାରଳା ଓ ଜୟପୁର ଇଲାକା ବାଦପଡ଼ି ଯାଇଥିବା ଯୋଗୁଁ କମିଟିରେ ଥିବା ଉଭୟ ଭାରତୀୟ ସଦସ୍ୟ ମଧ୍ୟ ସେମାନଙ୍କ ଅସନ୍ତୋଷ ବ୍ୟକ୍ତ କରିଥିଲେ । ସେମାନେ ସଂପୃକ୍ତ ଅଞ୍ଚଳ ଏବଂ ଜନଗଣଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସିଥିଲେ ଏବଂ ଅଭିଜ୍ଞ ମଧ୍ୟ ଥିଲେ । ଶ୍ରୀ ତରୁଣରାମ ଫୁକନ୍‌ଙ୍କ ନୈରାଶ୍ୟଜନକ ମତ ଥିଲା ଶତକଡ଼ା ୯୬ ଭାଗ ଓଡ଼ିଆଭାଷୀ ବ୍ୟକ୍ତି ବସବାସ କରି ରହୁଥିବା ଜୟପୁର ଅଞ୍ଚଳ ଏବଂ 'ନୂତନ ଓଡ଼ିଶା'ର



Ama Odisha pdf (aamaodisha@gmail.com)

ଅଗ୍ରଗଣ୍ୟ ନେତା ପାରଳା ମହାରାଜାଙ୍କ ଜମିଦାରୀ ଅଞ୍ଚଳ- ଯେଉଁଠି ତେଲୁଗୁଭାଷୀ ପ୍ରଜାଗଣ ରାଜାଙ୍କ ସହ ଓଡ଼ିଶାରେ ରହିବା ପାଇଁ ଆଗ୍ରହୀ ସେଭଳି କ୍ଷେତ୍ରରେ ସେଇ ସବୁ ଅଞ୍ଚଳ, ଓଡ଼ିଶା ସହ ଯୁକ୍ତ ହେବା ବିଧେୟ । ଓଡ଼ିଆମାନଙ୍କର ସେହି ଯୁକ୍ତିଯୁକ୍ତ ଦାବି ଓ ଅସଂତୋଷ ମିଳିତ ପାର୍ଲିଆମେଣ୍ଟାରୀ ବୈଠକ ବେଳେ ସମାଧାନ ହେବା ବିଧେୟ । ଏହି ମତାମତ ସେ ଏକ ସାମ୍ବାଦିକ ସମ୍ମିଳନୀରେ ରଖିଥିଲେ ୧୯୩୩ ମସିହା ମାର୍ଚ୍ଚ ୨୨ ତାରିଖ ଦିନ ।

ସେହିଭଳି ସୀମା କମିଟିର ଅନ୍ୟତମ ସଦସ୍ୟ ଓଡ଼ିଆଙ୍କ ସମସ୍ୟା ସଂପର୍କରେ ସଂପୂର୍ଣ୍ଣ ଅନୁଭବୀ ଶ୍ରୀ ଏଚ୍. ଏମ୍. ମେହେଟ୍ଟା ଏସୋସିଏଟେଡ୍ ପ୍ରେସ୍‌କୁ ମାର୍ଚ୍ଚ ୨୬ ତାରିଖ ଦିନ ପ୍ରଦାନ କରିଥିବା ଅଭିବ୍ୟକ୍ତିରେ କହିଥିଲେ- ପାରଳା ଜମିଦାରୀ ଏକ ସଂପୂର୍ଣ୍ଣ ଓଡ଼ିଆ ଅଞ୍ଚଳ । ଦୀର୍ଘ ଅତୀତରୁ ମହାରାଜାଗଣଙ୍କ ଉଦାରତା ଏବଂ ଉତ୍କୃଷ୍ଟ ଶାସନରେ ଆକୃଷ୍ଟ ହୋଇ ନିକଟସ୍ଥ ମାନ୍ଦ୍ରାଜ ଅଞ୍ଚଳରେ ଅନେକ ତେଲୁଗୁ ଏଇ ଅଞ୍ଚଳକୁ ଚାଲି ଆସିଥିଲେ ନିରପେକ୍ଷ ଶାସନରେ ରହିବା ପାଇଁ । ଅତଏବ ବର୍ତ୍ତମାନ ଯଦିବା ସେଠାରେ ସଂଖ୍ୟାତ୍ମକ ଦୃଷ୍ଟିରୁ ତେଲୁଗୁମାନେ କିଞ୍ଚିତ ପରିମାଣରେ ଅଧିକ, ତଥାପି ସେମାନେ ବର୍ତ୍ତମାନର ମହାରାଜାଙ୍କ ସହିତ ଓଡ଼ିଶାରେ ଯୁକ୍ତ ହେବା ପାଇଁ ଆଗ୍ରହୀ । ଓଡ଼ିଶା ସହ ଯଦି ପାରଳା ଯୁକ୍ତ ନହୁଏ ତେବେ ଉଭୟ ଗୋଷ୍ଠୀ ମଧ୍ୟରେ ସେଇ ପୁରାତନ ସୌହାର୍ଦ୍ଦ୍ୟ ସମ୍ଭବତଃ ରହିବ ନାହିଁ । ସେହିଭଳି ଭାବରେ ୯୬ ପ୍ରତିଶତ ଓଡ଼ିଆ ଥିବା ଜୟପୁର ମାଳ ଅଞ୍ଚଳ ଓଡ଼ିଶା ସହ ସାମିଲ ହୋଇ ନପାରିବା ଦୁର୍ଭାଗ୍ୟର ବିଷୟ ।

ଏଭଳି ମତାମତଗୁଡ଼ିକ ଥିଲା ସୀମା କମିଟିରେ ତିନିଜଣ ସଭ୍ୟଙ୍କ ମଧ୍ୟରୁ ଦୁଇ ଭାରତୀୟ ସଭ୍ୟଙ୍କ ଅନୁଭବର କଥା- ତଥ୍ୟାନୁସନ୍ଧାନ ବେଳେ ଅର୍ଜନ କରିଥିବା ଅଭିଜ୍ଞତାର ନିଛକ ପରିପ୍ରକାଶ ।

ଓଡ଼ିଶା କଂଗ୍ରେସର ସଭ୍ୟଗଣ ଉକ୍ତ ଶ୍ୱେତପତ୍ରର ତୀବ୍ର ବିରୋଧ କରିଥିଲେ । ଶ୍ରୀ ରାଧାନାଥ ରଥ ତଥା ଯଦୁମଣି ମଙ୍ଗରାଜଙ୍କ ଭଳି ବ୍ୟକ୍ତିବୃନ୍ଦ ସେଭଳି ଏକ ତରଫା ମତାମତ ବିରୁଦ୍ଧରେ ରାଜ୍ୟରେ ହରତାଳ ଓ ଧର୍ମଘଟର ଆହ୍ୱାନ ଦେଇଥିଲେ । ସେହିଭଳି ଜୟପୁରର ରାଜା ବିକ୍ରମଦେବ ବର୍ମା ବିଶେଷ ବ୍ୟଥିତ ହୋଇଥିଲେ ସେଇ ପ୍ରକାରର ସରକାରୀ ନିର୍ଦ୍ଧାରଣ ଯୋଗୁଁ । ପାରଳାର ତେଲୁଗୁ ଜନଗଣ ସୁଦ୍ଧା ବେଶ୍ ବ୍ୟସ୍ତ ବିଚଳିତ ହେବା ଥିଲା ସ୍ୱାଭାବିକ । ସେମାନଙ୍କର ପ୍ରତିକ୍ରିୟା ଦେଶର ପ୍ରତିଷ୍ଠିତ ପତ୍ର-ପତ୍ରିକାଗୁଡ଼ିକରେ ପ୍ରକାଶ ପାଇଥିଲା । ହିନ୍ଦୁ, ମାନ୍ଦ୍ରାଜ ମେଲ୍ ପ୍ରଭୃତି ଜାତୀୟ ସ୍ତରର ପତ୍ରିକା ବ୍ୟତୀତ ସ୍ଥାନୀୟ ପ୍ରାୟ ସବୁ ପତ୍ର ପତ୍ରିକାରେ ଜନ ଅସନ୍ତୋଷ ବିଶେଷ ଭାବରେ ପ୍ରକାଶିତ ହୋଇ ଚାଲିଥିଲା ସେଇ କିଛିକାଳ ।

କେନ୍ଦ୍ର ବିଧାନ ପରିଷଦରେ ଶ୍ରୀ ଭୁବନାନନ୍ଦ ଦାସ ଏବଂ ଶ୍ରୀ ବିଶ୍ୱନାଥ ମିଶ୍ର ୧୯୩୩ ଅପ୍ରେଲ୍ ୫ ଏବଂ ୨୨ରେ ପ୍ରଶ୍ନୋତ୍ତର ମାଧ୍ୟମରେ ସେଇ ସମସ୍ୟାର ଆଲୋଚନା କରିଥିଲେ । ମାନ୍ଦ୍ରାଜ ବିଧାନସଭାରେ ସଭ୍ୟ ରାଜା ରାମଚନ୍ଦ୍ର ମର୍ଦ୍ଦରାଜ ଦେବ ଏ ସଂପର୍କରେ ଆଲୋଚନା



Ama Odisha pdf (aamaodisha@gmail.com)

କରି ସରକାରଙ୍କ ସେଭଳି ନିର୍ଦ୍ଧାରଣକୁ ଅତ୍ୟନ୍ତ ଦୁର୍ଭାଗ୍ୟଜନକ ବୋଲି ମତ ରଖିଥିଲେ । ଓଡ଼ିଆଙ୍କ ସାଧାରଣ ଅସନ୍ତୋଷ ସଂପର୍କରେ ଦୃଷ୍ଟି ଆକର୍ଷଣ କରାଯାଇ ମୋଟ ୮୭ଟି ଆବେଦନ ପହଂଚିଥିଲା ସରକାରଙ୍କ ନିକଟରେ, ଯେଉଁଥିରେ ଥିଲା କେବଳ ଗଂଜାମରୁ ୮୦ଟି ।

ସେତିକିବେଳେ ଉତ୍କଳ ସମ୍ମିଳନୀର ୨୩ତମ ଅଧିବେଶନ ବ୍ରହ୍ମପୁରରେ ଅନୁଷ୍ଠିତ ହୋଇଥିଲା ଏବଂ ତାହାର ଅଧ୍ୟକ୍ଷତା କରିଥିଲେ ଗଜପତି କୃଷ୍ଣଚନ୍ଦ୍ର । ପାରଳା ଏବଂ ଜୟପୁର ବ୍ୟତୀତ ନୂତନ ଓଡ଼ିଶା ଗଠନ ଏକ ଅକିଂଚିତ୍କର ପ୍ରୟାସ ବୋଲି ସର୍ବସମ୍ମତ ଅଭିବ୍ୟକ୍ତି ପ୍ରକାଶ ପାଇବା ସହିତ ସେହିସବୁ ଅଞ୍ଚଳ ଓଡ଼ିଶା ସହିତ ଯୁକ୍ତ କରାଯିବା ପାଇଁ ପ୍ରସ୍ତାବ ଗୃହୀତ ହୋଇଥିଲା । ପ୍ରାୟ ସେହି ସମୟରେ 'ଆଶା'ର ସମ୍ପାଦକ ଶ୍ରୀଯୁକ୍ତ ଶଶିଭୂଷଣ ରଥ ଯୁକ୍ତି ଦର୍ଶାଇଥିଲେ ଯେ ପ୍ରକାଶିତ ସୀମା ସୁପାରିସକୁ ସଂଶୋଧନ କରାଯିବା ପାଇଁ ଦାବି ହେଲେ ନୂତନ ଓଡ଼ିଶା ଗଠିତ ହେବା ପ୍ରକ୍ରିୟା ନିଶ୍ଚିତ ରୂପେ ବିଳମ୍ବିତ ହେବ ଏବଂ ପ୍ରଦେଶ ଗଠନ ମଧ୍ୟ । ତେଣୁ ତାଙ୍କର ଯୁକ୍ତି ଥିଲା- "କାନ୍ଦୁଥିବା; ଯାହା ମିଳୁଥିବ ବାନ୍ଧୁଥିବା ।" ବର୍ତ୍ତମାନ ମିଳୁଥିବା ଦ୍ରବ୍ୟକୁ ଗ୍ରହଣ କରାଯାଇ ପୁଣି ଆନ୍ଦୋଳନ କରାଯିବା ଆବଶ୍ୟକ ନୂତନ ପ୍ରଦେଶରେ ଯୁକ୍ତ ହୋଇ ନଥିବା ଅଞ୍ଚଳଗୁଡ଼ିକର ସମ୍ମିଶ୍ରଣ ପାଇଁ । କିନ୍ତୁ ସେହି ଯୁକ୍ତିକୁ ମହାରାଜାଙ୍କ ସମେତ ସ୍ୱତନ୍ତ୍ର ଓଡ଼ିଶା ଆନ୍ଦୋଳନକାରୀ ଅନେକ ନେତା ଗ୍ରହଣ କରିପାରି ନଥିଲେ ।

ସେହିଭଳି ସରକାରୀ ନିର୍ଦ୍ଧାରଣରେ ବିଶେଷ ବିଷାଦଗ୍ରସ୍ତ ହୋଇଯାଇଥିଲେ ମହାରାଜା । ଶ୍ୱେତପତ୍ର ପ୍ରକାଶ ପାଇବା ଦିନ ହିଁ ସେ ଗଭୀର ହତାଶା ଭିତରେ ସଂପୂର୍ଣ୍ଣ ବୁଡି ଯାଇଥିଲେ ଯେମିତି । ଘନୀଭୂତ ଅନ୍ଧକାର ଯେମିତି ତାହାଙ୍କୁ ମୁହୂର୍ତ୍ତକ ମଧ୍ୟରେ ପଥରୁଦ୍ଧ କରି ପକାଇଥିଲା । ହତାଶା... କେବଳ ହତାଶା...।

ଦେହ ଓ ମନରେ ପ୍ରବଳ ଉତ୍ତେଜନା । ଅସହାୟ, ଅସହାୟ ଭାବ ! ନିର୍ବାକ, ନିସ୍ପନ୍ଦ ହୋଇ ବସି ରହିଥିଲେ କେବଳ । ଘଣ୍ଟା ଘଣ୍ଟା ବିତି ଯାଇଥିଲା । କାହାରି ସହିତ କଥାବାର୍ତ୍ତା କରି ନଥିଲେ । କିଛି ବରାଦ ନଥିଲା । ସେହିଭଳି ଭାବରେ ପ୍ରାୟ ଚାରି ପାଞ୍ଚଘଣ୍ଟା କଟିଯିବା ପରେ ଅକସ୍ମାତ୍ ଅସ୍ତ୍ରାଗାର ଖୋଲିବା ପାଇଁ ନିର୍ଦ୍ଦେଶ ଦେଇଥିଲେ ତାହାର ରକ୍ଷକଙ୍କୁ ।

ସେଦିନ ସୀମା ସୁପାରିସ ଖବର ପହଂଚିବା ପରେ ପରେ ପ୍ରତିଟି ମୁହୂର୍ତ୍ତରେ ମହାରାଜାଙ୍କ ଗତିବିଧି ଉପରେ ସତର୍କ ଦୃଷ୍ଟି ରଖିଥିଲେ ଦେବାନ୍ ଲକ୍ଷ୍ମୀ ନାରାୟଣ ପଟ୍ଟନାୟକ (ବିଜୁବାବୁଙ୍କ ପିତା) । ସେ ତତ୍କ୍ଷଣାତ୍ ସେଠି ଉପସ୍ଥିତ ହୋଇ ଅସ୍ତ୍ରଭଣ୍ଡାର ନଖୋଲିବା ପାଇଁ କର୍ମଚାରୀ ଜଣଙ୍କୁ ଆଦେଶ ଦେବା ସଂଗେ ସଂଗେ ବିନୀତ ଭାବରେ ମହାରାଜାଙ୍କୁ ପ୍ରଶ୍ନ କରିଥିଲେ- ବର୍ତ୍ତମାନ ଅସ୍ତ୍ରାଗାର ଖୋଲାଯିବାର କି ଆବଶ୍ୟକତା ଅଛି ମହାରାଜ ? କଣ୍ଠରେ ଦୃଢ଼ତା ଥିଲା ।

ଉଭୟେ ଉଭୟଙ୍କ ଭାଷା ବୁଝି ପାରିଥିଲେ ଯେମିତି । ଦୁଇ ହଳ ଆଖି ପରସ୍ପରଙ୍କୁ ଦେଖୁଥିଲେ ଅପଲକ ନୟନରେ । ମହାରାଜାଙ୍କ ଆଖି ଛଳଛଳ ହୋଇ ଯାଇଥିଲା । ସେଇ ଲୁହ ଟଳମଳ



Ama Odisha pdf (aamaodisha@gmail.com)

ଆଖି ଦେବାନ୍‌ଙ୍କ ଆଖିରେ ମଧ୍ୟ ସୃଷ୍ଟି କରିଥିଲା ବୁନ୍ଦାବୁନ୍ଦା ଲୁହ । ଉଭୟଙ୍କର ସେଇ ଅଶ୍ରୁତର୍ପଣ ଭିତରେ ମହାରାଜାଙ୍କ ହତାଶ ମନଭିତରେ ଅକସ୍ମାତ୍ ପ୍ରବେଶ କରିଥିବା ଶୟତାନ୍‌ଟି କୁଆଡ଼େ ଉଭେଇ ଯାଇଥିଲା ଯେମିତି ।

ସେହିଭଳି ମାନସିକ ଅବସାଦ ଭିତରେ ହିଁ କିଛି ଦିନ ବିତି ଯାଇଥିଲା । ରାତିରେ ନିଦ ହେଉ ନଥିଲା । କେବଳ ଗୋଟିଏ ଚିନ୍ତା– 'ପାରଳା ଓ ଜୟପୁର ଜମିଦାରିର କିଭଳି ଓଡ଼ିଶା ସହ ମିଶ୍ରଣ ହୋଇପାରିବ !' ଦିନେ ତାହା ହିଁ ଚିନ୍ତା କରୁ କରୁ ରାତି ଅତି ଦୀର୍ଘ ହୋଇ ଯାଇଥିଲେ ସୁଦ୍ଧା ନିଦ ଆସିନଥିଲା । ରାତିର ପ୍ରାୟ ଶେଷ ପ୍ରହର । ଆଖିରେ ଛାଇ ଛାଇକା ନିଦ । ହଠାତ୍ ତାଙ୍କର ଇଷ୍ଟଦେବୀ ମାଣିକେଶ୍ୱରୀଙ୍କ ଲାବଣ୍ୟମୂର୍ତ୍ତି ମହାରାଜାଙ୍କ ପଲଙ୍କ ସାମନାରେ । ହାତଧରି ମହାରାଜାଙ୍କୁ ଉଠାଇ ବସାଇ ଦେଇଥିଲେ ଦେବୀ । ନିର୍ଦ୍ଦେଶ ଦେଇଥିଲେ– "ପୁଣି ଯାଇ ଚେଷ୍ଟାକର; କାର୍ଯ୍ୟ ସଫଳ ହେବ ।" ଅଭିଭୂତ ହୋଇ ଯାଇଥିଲେ ମହାରାଜା । ତାଙ୍କରି ବିଶ୍ୱାସ ପୁଣି ଥରେ ପୁନର୍ବିନ୍ୟାସ ହୋଇଥିଲା । ଇଷ୍ଟଦେବୀ ମାଣିକେଶ୍ୱରୀଙ୍କ ଆଶୀର୍ବାଦ କଦାପି ବିଫଳ ହେବାର ନୁହେଁ । ଅନ୍ତତଃ ଆଜି ପର୍ଯ୍ୟନ୍ତ କେଉଁ ହୋଇନାହିଁ । ସବୁବେଳେ, ସବୁ ବିପଦବେଳେ ସୁରକ୍ଷାର ଅଭୟ ହାତ ବଢ଼ାଇ ଦେଇଛନ୍ତି ଦେବୀ ମାଣିକେଶ୍ୱରୀ । ମଙ୍ଗଳମୟୀ ଦେବୀ; ସର୍ବାଦୌ ମଙ୍ଗଳମୟୀ !

ଗଡ଼ଦେବୀ ମାଣିକେଶ୍ୱରୀଙ୍କ ଉପରେ ଗଭୀର ଆସ୍ଥା ଏବଂ ବିଶ୍ୱାସ ଥିଲା ମହାରାଜାଙ୍କର । ସେ ଯଦି ଜୀବନରେ କାହାକୁ ସର୍ବାଧିକ ଭକ୍ତି କରୁଥିଲେ ସେଇ ଦୁଇଜଣ ଥିଲେ ତାହାଙ୍କର ଜନନୀ ଏବଂ ଗଡ଼ଦେବୀ ମାଣିକେଶ୍ୱରୀ । ଦେବୀଙ୍କ ମହିମା ଆଗରେ ସେ ନତମସ୍ତକ ହେଉଥିଲେ ସବୁବେଳେ; ଆଶୀର୍ବାଦ କାମନା କରୁଥିଲେ ସବୁ ଜଟିଳ ସମସ୍ୟାର ସମାଧାନ ପାଇଁ । ସେଭଳି ଭକ୍ତି ଉଦ୍ରେକକାରୀ ଘଟଣାଟିଏ ଘଟିଥିଲା ମହାରାଜାଙ୍କ ଯୌବନର ପ୍ରାକ୍ କାଳରେ ।

ନବ ଯୁବକ ରାଜା କୃଷ୍ଣଚନ୍ଦ୍ର ଥରେ ଇଚ୍ଛା କରିଥିଲେ ବ୍ରାହ୍ମଧର୍ମାନୁକ୍ରମେ କିଛିଟା ସାମାଜିକ ସଂସ୍କାର ପାଇଁ । ସେତିକିବେଳେ ଓଡ଼ିଶାରେ ବ୍ରାହ୍ମଚେତନା ବେଶ୍ ଜନପ୍ରିୟ ହୋଇ ଉଠିଥିଲା । ବାସ୍ତବରେ ହିନ୍ଦୁଧାର୍ମିକ କୁ-ସଂସ୍କାରଗୁଡ଼ିକ ପ୍ରତି ତାହା ଥିଲା ଏକ ଆହ୍ୱାନ ସ୍ୱରୂପ । ଦେବଦେବୀଙ୍କ ସଂତୁଷ୍ଟି ପାଇଁ ଅନେକ ସ୍ଥାନରେ ପଶୁବଳି ଅର୍ପିତ ହେଉଥିଲା । ସେହି ଅନୁଯାୟୀ ପାରଳା ଗଡ଼ଦେବୀ ମାଣିକେଶ୍ୱରୀଙ୍କ ପୀଠରେ ମଧ୍ୟ ପବିତ୍ର ଦଶହରା ଅବସରରେ ପଶୁବଳିର ଆୟୋଜନ ହେଉଥିଲା କାଳାନୁକ୍ରମେ । ବ୍ରାହ୍ମଚେତନା ଅନୁପ୍ରାଣିତ ମହାରାଜା ସେହି ପରଂପରାର ବ୍ୟତିକ୍ରମ କାମନା କରିଥିଲେ । ତେଣୁ ପଶୁବଳି ବନ୍ଦ ପାଇଁ ଉଦ୍ୟମ କରିଥିଲେ ।

କିନ୍ତୁ ସେତିକିବେଳେ ଏକ ଆଶ୍ଚର୍ଯ୍ୟଜନକ ଘଟଣା ଘଟିଥିଲା । ସେହି ବର୍ଷ ମହାଷ୍ଟମୀ ଦିନ ଗଭୀର ନିଶିଥରେ ମହାରାଜାଙ୍କୁ ସ୍ୱପ୍ନ-ଦର୍ଶନ ଦେଇଥିଲେ ଦେବୀ । ଗାଢ଼ ନିଦ୍ରାଭିଭୂତ ଥିବାବେଳେ ମହାରାଜା ଅନୁଭବ କରିଥିଲେ ତାହାଙ୍କ ଗାଲରେ ଏକ ଶକ୍ତ ଚାପୁଡ଼ା ଏବଂ ତାହା ପୁଣି ସ୍ୱୟଂ ଦେବୀଙ୍କ ହାତରୁ । ତାପରେ ସେ ମନେ କରିଥିଲେ ସ୍ୱୟଂ ଦେବୀ ତାଙ୍କ ଉପରେ ଅତ୍ୟନ୍ତ ରୁଷ୍ଟ ।



Ama Odisha pdf (aamaodisha@gmail.com)

ତତ୍ ପରଠାରୁ ସେ କୌଣସି ଧାର୍ମିକ ପରଂପରାରେ ପରିବର୍ତ୍ତନ ପାଇଁ ଉଦ୍ୟମ କରି ନଥିଲେ ବରଂ ଦେବୀଙ୍କ ପ୍ରତି ଅଚଳାଚଳ ଭକ୍ତି ଦୃଢ଼ ହୋଇଥିଲା ତାଙ୍କରି ମନ ଓ ହୃଦୟରେ । ସେ ମନେ କରିଥିଲେ ତାହାଙ୍କ ପ୍ରତି ଦେବୀଙ୍କ ମହିମା ଅପାର ଏବଂ ତତ୍ ପରେ ପରେ ତାହାଙ୍କର ଅନୁଭବ ଥିଲା ସବୁ ଆପଦ ବିପଦ ବେଳେ ଦେବୀ ତାହାଙ୍କ ମସ୍ତକରେ ଢାଳି ଦିଅନ୍ତି ଅଜସ୍ର ଆଶୀର୍ବାଦ ।

ଶିକାରପ୍ରିୟ ମହାରାଜା ଥରେ ତାଙ୍କର ଦକ୍ଷ ଘୋଡାଟିକୁ ନେଇ ଶିକାର ପାଇଁ ଯାଇଥିଲେ ପାରଳା ସହର ନିକଟସ୍ଥ ଜଙ୍ଗଲକୁ । ଶିକାର ଅନ୍ୱେଷଣରେ ବେଶ୍ କିଛି ଦୂର ଚାଲି ଯାଇଥିଲେ । ହେଲେ ଅପ୍ରତ୍ୟାଶିତ ଭାବେ ଜଙ୍ଗଲ ରାସ୍ତାରେ ଘୋଡ଼ାଟିର ଆଗ ଗୋଡ଼ ଦୁଇଟି ବିଲହୁଡ଼ା କଡ଼ରେ ଥିବା ଗୋଟିଏ ବିଲୁଆ ଗାତ ଭିତରେ ଗଳି ଯାଇଥିଲା । ଘୋଡାଟି ଏତେ ଜୋର୍‌ରେ ଆଘାତ ପାଇଥିଲା ଯେ ସଙ୍ଗେ ସଙ୍ଗେ ସେଠି ଟଳିପଡ଼ି ମରି ଯାଇଥିଲା । ତାର ପିଠି ଉପରୁ ବେଶ୍ କିଛି ଦୂରକୁ ଛିଟିକି ପଡ଼ିଥିଲେ ମହାରାଜା । ସଂଜ୍ଞା ହଜି ଯାଇଥିଲା ।

କେଉଁଠି ଥିଲେ କେଜାଣି, ସେଇ ଜନ ମାନବହୀନ ଜାଙ୍ଗଲିକ ପରିବେଶ ଭିତରୁ ଜଣେ ଗରିବ ବ୍ରାହ୍ମଣ ଆସି ସେଠି ପହଞ୍ଚି ଯାଇଥିଲେ । ନିକଟରୁ କେଉଁଠୁ ପାଣି ସଂଗ୍ରହ କରି ଧୂଳି ଧୂସରିତ ମହାରାଜାଙ୍କ ମୁହଁରେ ସିଞ୍ଚନ କରିଥିଲେ । ନିଜ ଗାମୁଛାରେ ମୁହଁ ପୋଛି ଦେଇଥିଲେ । ପାଟିରେ ମୁନ୍ଦାଏ ପାଣି ଦେଇଥିଲେ । କିଛି ସମୟ ପରେ ସଚେତ ହୋଇ ଉଠି ବସିଥିଲେ ମହାରାଜା । ସେ ମନେ କରିଥିଲେ, ସେଭଳି ନିକାଞ୍ଚନ ପରିବେଶରେ ସେଇ ଅଯାଚିତ ସହାୟତା କେବଳ ତାହାଙ୍କ ଈଷ୍ଟଦେବୀଙ୍କ ମହିମା ବ୍ୟତୀତ ଅନ୍ୟ କିଛି ହୋଇ ନପାରେ ।

ଠିକ୍ ସେହିଭଳି ହୃଦ୍‌ବୋଧ କରିଥିଲେ ମହାରାଜା ଅନ୍ୟ ଏକ ଘଟଣାରେ ।

ପାରଳା ରାଜବାଟୀର ଠିକ୍ ପଛ ପଟରେ ସୀତାସାଗର– ସବୁବେଳେ ଜଳରେ ପରିପୂର୍ଣ୍ଣ ଏକ ବିରାଟ ପୁଷ୍କରିଣୀ । ଥରେ ମହାରାଜା ଘୋଡ଼ା ଗାଡ଼ିରେ ବସି ପରିଭ୍ରମଣରେ ଯାଉଥିଲେ ସେଇ ସାଗର କୂଳର ପ୍ରଶସ୍ତ ରାସ୍ତାରେ । ଦେହରେ ପୂର୍ଣ୍ଣ ରାଜପୋଷାକ ।

ରାସ୍ତା ମଝିରେ ହଠାତ୍ ଗାଡ଼ି ଟାଣୁଥିବା ଘୋଡ଼ାଟି ଚମକି ପଡିଥିଲା । ଗାଡ଼ିଟି ଓଲଟି ଯାଇଥିଲା ସୀତାସାଗର ଭିତରକୁ । ସାଗରର ପରିପୂର୍ଣ୍ଣ ଚିଙ୍ଗୁଡ଼ିଆ ଦଳ ଭିତରେ ମହାରାଜା ଛନ୍ଦି ହୋଇଯାଇଥିଲେ ଅକସ୍ମାତ୍ । ବାହାରିବା ପାଇଁ ଯେତେ ଚେଷ୍ଟା କରୁଥିଲେ ସେତିକି ଅଧିକ ଛନ୍ଦି ହୋଇ ଯାଉଥିଲେ ସେଇ ଦଳ ଭିତରେ । ଠିକ୍ ସେଇ ମୁହୂର୍ତ୍ତରେ ସେଇଠି ଉପସ୍ଥିତ ହୋଇଥିଲେ ଜଣେ ନାଉରିଆ । ଗଜପତି ଅନୁଭବ କରିଥିଲେ, ଦେବୀ ମାଣିକେଶ୍ୱରୀ ହିଁ ନାଉରିଆଟିଏ ହୋଇ ସେଠାକୁ ଆସିଥିଲେ କିମ୍ବା ନିଶ୍ଚିତ ରୂପେ ତାହାଙ୍କୁ ସେଠାକୁ ପ୍ରେରଣ କରିଥିଲେ । ସେଇ ନାଉରିଆ ଜଣକ ମହାରାଜାଙ୍କ ରାଜପୋଷାକରୁ ଦଳ ସଫା କରି ଏକ ମହା ବିପଦରୁ ଉଦ୍ଧାର କରିଥିଲେ । ତାହାକୁ କେବଳ ଦେବୀ କୃପା ବୋଲି ଗ୍ରହଣ କରି ନେଇଥିଲେ ମହାରାଜା ।



Ama Odisha pdf (aamaodisha@gmail.com)

ସେଇମିତି ଆଉ ଥରେ ଅପରାହ୍‌ଣରେ ଯାଉଥିଲେ ହୋମ୍ ଫାର୍ମ । ନିକାଞ୍ଚନ ରାସ୍ତାରେ ତାଙ୍କରି ଗାଡ଼ି ସାମନାରେ ସେ ଦେଖିଥିଲେ ଦେବୀ ମାଣିକେଶ୍ୱରୀ ଡାହାଣ ପଟରୁ ବାମପଟକୁ ଚାଲିଯାଇଥିଲେ ବେଶ୍ ସୁସଜ୍ଜିତ ବେଶ ପୋଷାକରେ । ସ୍ତମ୍ଭୀଭୂତ ହୋଇ ଯାଇଥିଲେ ମହାରାଜା । ସେ ମନେ କରିଥିଲେ ଏହା ଏକ ଦୁର୍ଘଟଣାର ସଙ୍କେତ ହୋଇପାରେ !

ହୋମ ଫାର୍ମରେ ପହଞ୍ଚିବା ପରେ ପରେ ଯଥାରୀତି ସେଠିକାର ଚୌକିଦାର ମହାରାଜାଙ୍କ ବସିବା ପାଇଁ ଚୌକିଟିଏ ଆଣି ଗୋଟିଏ ଆମ୍ବ ଗଛ ମୂଳରେ ପକାଇଥିଲା । ସେଠାରେ ଥିବା ଦେଶୀ କୁକୁରଟି ସବୁଦିନ ଭଳି ଲାଞ୍ଜ ହଲାଇ ହଲାଇ ଆସିଥିଲେ ସୁଦ୍ଧା ମହାରାଜାଙ୍କ ସହ ଖେଳିବା ପରିବର୍ତ୍ତେ କେବଳ ଜୋର୍‌ରେ ଭୁକିବା ଆରମ୍ଭ କରି ଦେଇଥିଲା । ପୁଣି ପାରଳା ଗଜପତିଙ୍କୁ ସେଇ ଚଉକି ଉପରେ ବସିବା ପାଇଁ ଦେଇ ନଥିଲା । ତାଙ୍କରି ପିନ୍ଧା ପ୍ୟାଣ୍ଟକୁ କାମୁଡ଼ି ଧରି ଦୂରକୁ ହିଁ ଟାଣି ନେଉଥିଲା । ତାପରେ ମହାରାଜା ଚୌକିଦାରକୁ ଡ଼ାକି ଚୌକିଟିକୁ ଭଲକରି ଦେଖିନେବା ପାଇଁ କହିଥିଲେ । ସେଇ ସେବକଟି ହଠାତ୍ ଆବିଷ୍କାର କରିଥିଲା ଚଉକିର ସ୍ପ୍ରିଙ୍ଗ୍ ଭିତରେ ଗୁଡ଼େଇ ହୋଇ ରହିଥିବା ସାପଟିଏକୁ । ସେଇଟି ପୁଣି ଗୋଟିଏ ମାରାତ୍ମକ ଚିତିସାପ । ମୁଣ୍ଡ ଆଉଜି ରଖିବା ସ୍ଥାନ ଓ ବେକ ପାଖରେ ରହିଥିଲା ସେଇ ସ୍ପ୍ରିଙ୍ଗ୍‌ଟି ।

ମହାରାଜା ଅନୁଭବ କରିଥିଲେ, ଗଡ଼ଦେବୀଙ୍କ ରକ୍ଷା କବଚର ପ୍ରଭାବଯୋଗୁଁ ହିଁ ତାହା ସମ୍ଭବ ହୋଇଥିଲା । ପୁଣି ସେଭଳି ଆଉ ଏକ ଘଟଣା ଘଟିଥିଲା ଜଣେ ବିଦେଶୀ ବନ୍ଧୁଙ୍କ ସହ ମାନ୍ଦ୍ରାଜ ଯାତ୍ରା କରୁଥିବା ବେଳେ । ଏକ ଗୁରୁତର ଦୁର୍ଘଟଣାର ପୂର୍ବ ସୂଚନା ଦେଇଥିଲେ ଦେବୀ ।

ସବୁ ଥର ଭଳି ସେଥର ମଧ୍ୟ ମହାରାଜାଙ୍କ ଯାତ୍ରା ପାଇଁ କଲିକତାରୁ ମାନ୍ଦ୍ରାଜ ଯାଏଁ ଗୋଟିଏ ପ୍ରଥମ ଶ୍ରେଣୀ ବଗି ଆରକ୍ଷିତ ହୋଇଥିଲା । ପଲାସା ଷ୍ଟେସନ୍‌ରୁ ଉଭୟେ ଚଢ଼ିଥିଲେ ସେଥିରେ । ଅଭ୍ୟାସବଶତଃ ବନ୍ଧୁଜଣକ କିଛି ମାଦକ ଦ୍ରବ୍ୟ ପାନ କରି ଅଳ୍ପ ସମୟ ମଧ୍ୟରେ ଶୋଇ ଯାଇଥିଲେ ଗାଢ଼ନିଦରେ । ମହାରାଜା ବି କିଛି ସମୟ ପରେ ନିଦ୍ରା ଯାଇଥିଲେ । ସେଇ ଛାଇନିଦ ଭିତରେ ହଠାତ୍ ସେ ଦେବୀ ମାଣିକେଶ୍ୱରୀଙ୍କୁ ସ୍ୱପ୍ନରେ ଦେଖିଥିଲେ । ସତେ ଯେମିତି ଦେବୀଙ୍କ ସୂଚନା ଥିଲା– ଅଳ୍ପ ସମୟ ମଧ୍ୟରେ ଟ୍ରେନ୍‌ଟି ଦୁର୍ଘଟଣାଗ୍ରସ୍ତ ହେବ– ତେଣୁ ସତର୍କ ରହ !

ସେ ସଙ୍ଗେ ସଙ୍ଗେ ଉଠିପଡ଼ି ବନ୍ଧୁ ଜଣଙ୍କୁ ଉଠାଇବାକୁ ଉଦ୍ୟମ କରିଥିଲେ । ଯେତେ ଡାକିଲେ ବି ଉଠୁ ନାହାନ୍ତି ସେ ! ବାଧ୍ୟ ହୋଇ ବଳ ପ୍ରୟୋଗ କରିଥିଲେ ମହାରାଜା । ସେ ଉଠିବା ପରେ ମହାରାଜା ତାହାଙ୍କୁ ଦେବୀଙ୍କ ସ୍ୱପ୍ନ ଦର୍ଶନ କଥା କହିଥିଲେ । ବିଶ୍ୱାସ ଅପେକ୍ଷା ସମ୍ଭବତଃ ଅବିଶ୍ୱାସ ହିଁ ଆବୋରି ରଖିଥିବ ବିଦେଶୀ ବନ୍ଧୁଜଣଙ୍କୁ । କିନ୍ତୁ ସତକୁ ସତ କିଛି ସମୟର ବ୍ୟବଧାନ ପରେ ଟ୍ରେନ୍‌ଟି ଏକ ବିରାଟ ଦୁର୍ଘଟଣାର ସାମନା କରିଥିଲା । ଅନେକ ଯାତ୍ରୀ ଅଚେତନ ଅବସ୍ଥାରେ ଥିବା ଯୋଗୁଁ ବିଶେଷ ଆହତ ହୋଇଥିଲେ । ଏପରିକି ସେଥିପାଇଁ ସଚେତନ ମହାରାଜାଙ୍କର ମଧ୍ୟ ସାମାନ୍ୟ କ୍ଷତି ହୋଇଥିଲା । ଏହା ଦେବୀକୃପା ବ୍ୟତୀତ କ'ଣ



Ama Odisha pdf (aamaodisha@gmail.com)

ହୋଇପାରେ ! ସେହି କୃପାମୟୀ ଦେବୀ ଏବେ ମଧ୍ୟ ଅନ୍ୟ ଏକ ପୂର୍ବ ସୂଚନା ପ୍ରଦାନ କରିଛନ୍ତି ! ଦେବୀକୃପା ତ କେବେବି ବିଫଳ ହୋଇନାହିଁ !

ଗଡ଼ଦେବୀଙ୍କ ସ୍ୱପ୍ନ ଦର୍ଶନ ପରେ ମହାରାଜାଙ୍କ ଅଙ୍ଗପ୍ରତ୍ୟଙ୍ଗରେ ସତେଯେମିତି ଏକ ନୂତନ ଶିହରଣ ସୃଷ୍ଟି ହୋଇଥିଲା । ସଙ୍ଗେ ସଙ୍ଗେ ସେ ଉଠି ପଡିଥିଲେ । ତାହାଙ୍କ ଜୀବନରେ ପରମପୂଜ୍ୟ ଥିଲେ ଦେବୀ ମାଣିକେଶ୍ୱରୀ ଏବଂ ମାଆ । ମାଆଙ୍କ ନିକଟରେ ପହଞ୍ଚି ଯାଇଥିଲେ ତତ୍‌କ୍ଷଣାତ୍ । ସବୁ କଥା କହି ଯାଇଥିଲେ ଏକା ନିଃଶ୍ୱାସରେ । ତା'ପରେ ମାଆ ରାଧାମଣୀ ଦେବୀ ପରାମର୍ଶ ଦେଇଥିଲେ ପୁଣି ଥରେ ବିଲାତ ଯିବା ପାଇଁ । ମାଣିକେଶ୍ୱରୀଙ୍କ କଥା ଅନ୍ୟଥା ହେବାର ନୁହେଁ । ତେଣୁ ସେଥିପାଇଁ ଯତ୍ନଶୀଳ ହେବା ଆବଶ୍ୟକ ବୋଲି ପରାମର୍ଶ ଦେଇଥିଲେ ।

ଭାରତରେ ଶାସନ ସଂସ୍କାର କ୍ରମରେ ଭାଷାଭିତ୍ତିରେ ନୂତନ ଓଡ଼ିଶା ପ୍ରଦେଶ ଗଠନ ସଂପର୍କରେ ଶେଷ ନିଷ୍ପତ୍ତି ନିଆଯିବାର ଥିଲା ଲଣ୍ଡନଠାରେ; ମିଳିତ ସଂସଦୀୟ କମିଟିରେ । ତାହା ନିକଟ ଭବିଷ୍ୟତରେ ଅନୁଷ୍ଠିତ ହେବାର କାର୍ଯ୍ୟକ୍ରମ ଥିଲା । ତେଣୁ ସେହି କମିଟିକୁ ପ୍ରଭାବିତ କରିବା ପାଇଁ ମହାରାଜା ପୁଣି ଥରେ ଲଣ୍ଡନ ଯିବାପାଇଁ ପ୍ରସ୍ତୁତି ଆରମ୍ଭ କରିଥିଲେ ।

ହେଲେ ସେଥର ବ୍ୟକ୍ତିଗତ ଉଦ୍ୟମରେ ଇଂଲଣ୍ଡ ଯାତ୍ରା କରୁଥିବାରୁ ସମସ୍ତ ଖର୍ଚ୍ଚ ନିଜେ ହିଁ ବହନ କରିବା ପାଇଁ ହୋଇଥିଲା । ସେଥିପାଇଁ ରାଜ ଅନ୍ତଃପୁରର ଆତ୍ମୀୟ ସ୍ୱଜନଙ୍କ ବେଶ୍ ଦାମୀ ଗହଣାଗାଣ୍ଠି ବିକ୍ରୀ କରିଦେବା ପାଇଁ ନା ଆତ୍ମୀୟଗଣ ନା ମହାରାଜା-କାହାରି ମନରେ ଦ୍ୱିଧା ନଥିଲା । ତାରି ଭିତରେ ତଥାପି ମହାରାଜା ତାହାଙ୍କର କେତେଜଣ ସେବାକାରୀଙ୍କୁ ନେବାକୁ ମଧ୍ୟ ପଛାଇ ନଥିଲେ । ପୁଣି କାର୍ଯ୍ୟରେ ସହାୟତା ପାଇଁ ଖଲିକୋଟ ରାଜା, ଲିଙ୍ଗରାଜ ପାଣିଗ୍ରାହୀ, ଭୁବନାନନ୍ଦ ଦାସଙ୍କୁ ମଧ୍ୟ ସହଯୋଗୀ ରୂପେ ନେବାପାଇଁ ନିଷ୍ପତ୍ତି ନେଇଥିଲେ । ପୁଣି ଯାତ୍ରା କରିବା ପୂର୍ବରୁ ବିଶେଷ କରି ପାରଳା ଜମିଦାରିର ଓଡ଼ିଶା ସହ ମିଶ୍ରଣ କରାଯିବା ସପକ୍ଷରେ ଯୁକ୍ତି ସମୂହକୁ ବିସ୍ତୃତ ବିଶ୍ଳେଷଣ କରି ଏକ ସ୍ମାରକପତ୍ର ପ୍ରସ୍ତୁତ କରି ପାରଳାରେ ମୁଦ୍ରଣ କରାଇ ନେଇଥିଲେ ।

୧୯୩୩ ମାର୍ଚ୍ଚ ୧୭ରେ ଶ୍ୱେତପତ୍ରର ପ୍ରକାଶନ । ଅପ୍ରେଲ୍‌ରେ ମିଳିତ ସଂସଦୀୟ କମିଟି ଗଠନ । ସେଇ କମିଟିକୁ ପ୍ରଭାବିତ କରାଇବା ପାଇଁ ମହାରାଜାଙ୍କ ଇଁଲଣ୍ଡ ଯାତ୍ରା ଅପ୍ରେଲ୍ ଶେଷ ସପ୍ତାହରେ ।

ଯେଉଁଦିନ ସେ ପାରଳାର ଛୋଟିଆ ରେଳଷ୍ଟେସନ୍‌ରୁ ସ୍ୱତନ୍ତ୍ର ସେଲୁନ୍ ଯୋଗେ ବାହାରିଥିଲେ, ସେଦିନ ଆକାଶରେ କଳାହାଣ୍ଡିଆ ବାଦଲର ଘଟାଟୋପ । ହେଲେ ପ୍ରବଳ ବର୍ଷାକୁ ଖାତିର୍ ନଥିଲା ଲୋକଙ୍କର । ରାଜ୍ୟର ହଜାର ହଜାର ପ୍ରଜା ଅଶ୍ରୁଳ ନୟନରେ ସମବେତ ହୋଇଥିଲେ ସେଠାରେ । ଅନେକଙ୍କ ଆଖିର ଲବଣାକ୍ତ ଲୁହର ଧାରା ମିଶିଯାଉଥିଲା ବର୍ଷାଜଳ ସହିତ । ମନରେ ଅନେକ ଆଶା ନିରାଶାର ଯୁକ୍ତ ଭାବନା । କ'ଣ ହେବ ସେମାନଙ୍କ ଅବସ୍ଥା !



Ama Odisha pdf (aamaodisha@gmail.com)

କ'ଣ ହେବ ପାରଳା ଏବଂ ଜୟପୁରର ଅବସ୍ଥା ! ସରକାରୀ ମନୋଭାବ ସେଇ ଅଞ୍ଚଳବାସୀଙ୍କ ପାଇଁ ସଂପୂର୍ଣ୍ଣ ନକାରାତ୍ମକ । ସବୁ ଆଶା-ଭରସା କେବଳ ମହାରାଜାଙ୍କ ଉପରେ ।

ସେଲୁନ୍ ଭିତରୁ ବାହାରକୁ ଆସିଥିଲେ ମହାରାଜା । ଅଭୟବାଣୀ ଶୁଣାଇଥିଲେ– ଆଜି ପର୍ଯ୍ୟନ୍ତ ମାଣିକେଶ୍ୱରୀଙ୍କ ଆଶୀର୍ବାଦ ବିଫଳ ହୋଇନାହିଁ । ଏଥର ମଧ୍ୟ ହେବନାହିଁ । ଜୟଯୁକ୍ତ ହୋଇ ଫେରିବା ପାଇଁ ସ୍ୱପ୍ନ ସଂକେତ ଦେଇଛନ୍ତି ଗଡ଼ଦେବୀ । ତେଣୁ ଆପଣମାନେ ଶଙ୍କାହୀନ ହୋଇ ରହନ୍ତୁ । ମୁଁ ନିଶ୍ଚୟ ସଫଳକାମ ହୋଇ ଫେରିବି ।

ଇଂଲଣ୍ଡ ପାର୍ଲାମେଣ୍ଟର ଉଭୟ ସଂସଦରୁ ୧୬ଜଣ ଲେଖାଏଁ ସଭ୍ୟଙ୍କୁ ନେଇ ୧୯୩୩ ଅପ୍ରେଲ୍ ମାସରେ ଗଠିତ ହୋଇଥିଲା ଏକ ମିଳିତ ସଂସଦୀୟ କମିଟି । ତାର ଅଧ୍ୟକ୍ଷ ଥିଲେ ଲର୍ଡ ଲିନ୍‌ଲିଥ୍‌ଗୋ । ୧୯୨୭ ମସିହାରେ ଭାରତ ପାଇଁ ଗଠିତ ରାଜକୀୟ କୃଷି କମିଶନ୍‌ର ସେ ଅଧ୍ୟକ୍ଷ ଥିବା ବେଳେ ମହାରାଜା ଥିଲେ ତାହାର ଏକମାତ୍ର ଭାରତୀୟ ସଭ୍ୟ । ଦୀର୍ଘ ଦୁଇ ବର୍ଷ କାଳ ସେମାନେ ଏକାଠି ଭାରତ ସାରା ଗସ୍ତ କରି କୃଷିର ଉନ୍ନତି ପାଇଁ ଗଭୀର ଭାବରେ ପରିସ୍ଥିତିର ଅନୁଶୀଳନ କରିଥିଲେ । ସେତିକିବେଳେ ମହାରାଜାଙ୍କ ସହିତ ଆନ୍ତରିକ ଭାବର ଆଦାନ ପ୍ରଦାନ ହୋଇଥିଲା ଲର୍ଡ ଲିନ୍ ଲିଥ୍‌ଗୋଙ୍କର । ଆପାତତଃ ଉଭୟଙ୍କ ମଧ୍ୟରେ ବେଶ୍ ସହୃଦୟତା ମଧ୍ୟ ସ୍ଥାପିତ ହୋଇଥିଲା । ସେହି ଦୃଷ୍ଟିରୁ ପାରଳା ଓ ଜୟପୁରକୁ ଓଡ଼ିଶା ସହ ମିଶ୍ରଣ ଦିଗରେ ପାର୍ଲାମେଣ୍ଟାରୀ କମିଟି ଅଧ୍ୟକ୍ଷଙ୍କୁ ପ୍ରଭାବିତ କରାଇ ପାରିବା ଆଶା ମନରେ ପୋଷଣ କରିଥିଲେ ମହାରାଜା । ଭାରତର ଶାସନ ସଂସ୍କାର ସଂପର୍କରେ ଚୂଡ଼ାନ୍ତ ମତାମତ ଦେବା ଥିଲା ସେହି କମିଟିର ପ୍ରଧାନ ଲକ୍ଷ୍ୟ । ବାସ୍ତବରେ ତାହାରି ସୁପାରିସ ଭିତ୍ତିରେ ହିଁ ପ୍ରତିଷ୍ଠିତ ବିଖ୍ୟାତ ୧୯୩୫ ଭାରତ ଶାସନ ଆଇନ । ସେହି କମିଟିକୁ ବିଭିନ୍ନ ବିବାଦୀୟ ବିଷୟରେ ଅଧିକ ତର୍ଜମା କରି ପରାମର୍ଶ ଦେବା ପାଇଁ କେତେକ ସବ୍‌କମିଟି ଗଠିତ ହୋଇଥିଲା । ତନ୍ମଧ୍ୟରୁ ଗୋଟିଏ ଥିଲା ନୂତନ ଓଡ଼ିଶା ପ୍ରଦେଶର ସୀମା ସଂପର୍କୀୟ ସମସ୍ୟାର ସମାଧାନ ପାଇଁ ।

ମହାରାଜାଙ୍କ ନେତୃତ୍ୱରେ ପ୍ରତିନିଧିଗଣ ୧୯୩୩ ଜୁଲାଇ ମାସର ପ୍ରଥମ ସୋମବାର ତିନି ତାରିଖ ଦିନ ସବ୍ କମିଟିକୁ ସାକ୍ଷାତ କରିଥିଲେ । ବିଶେଷ ଭାବେ ସମସ୍ୟାର ଆଲୋଚନା କରିବା ସଂଗେ ସଂଗେ ପ୍ରତିନିଧିଗଣ ସମସ୍ତ ଯୁକ୍ତି ଉପସ୍ଥାପନ କରି ପାରଳାଖେମଣ୍ଡିକୁ ନୂତନ ପ୍ରଦେଶ ସହିତ ସାମିଲ୍ କରାଯିବା ସପକ୍ଷରେ ଉଦ୍ଦିଷ୍ଟ ସ୍ମାରକପତ୍ର ପ୍ରଦାନ କରିଥିଲେ । ସେଥିରେ ବିଭିନ୍ନ ଯୁକ୍ତି ମଧ୍ୟରେ ଥିଲା ପାରଳା ଓ ଜୟପୁର ବିନା ଘୋଷିତ ନୂତନ ପ୍ରଦେଶ ଓଡ଼ିଆମାନଙ୍କ ପାଇଁ ଏକ ଦାରୁଣ ଧକ୍କା । ଓଡ଼ିଆଙ୍କ ସାଧାରଣଙ୍କ ଜନମତ ଅନୁଯାୟୀ ପାରଳା ବ୍ୟତୀତ ନୂତନ ଓଡ଼ିଶା ବାସ୍ତବରେ ଏକ ମସ୍ତିଷ୍କବିହୀନ ଶରୀର ଭଳି । ପୁଣି ଭାଷା ଓ ଜାତି ନିର୍ବିଶେଷରେ ପାରଳାର ରାଜାନୁଭକ୍ତ ପ୍ରଜାଗଣ ସମସ୍ୱରରେ ଦ୍ୱିଧାହୀନ ଭାବେ ମିଶ୍ରଣ ସପକ୍ଷରେ ସବୁ କମିଟି ସାମନାରେ ମତ ରଖିଥିବା ବେଳେ ତାହା ସମ୍ଭବ ନହେଲେ ସେମାନେ ଆନ୍ଦୋଳନ କରିବାକୁ



Ama Odisha pdf (aamaodisha@gmail.com)

ବାଧ୍ୟ ହେବେ । ପ୍ରଥମ ଗୋଲ୍‌ଟେବୁଲ୍ ବୈଠକରେ ଯୋଗଦେଇ ସେ (ମହାରାଜା ନିଜେ) ୧୯୩୧ ଫେବ୍ରୁଆରିରେ ଫେରିବା ଅବସରରେ ସମଗ୍ର ରାଜ୍ୟରେ ତାହାଙ୍କୁ ଯେଉଁଭଳି ଭାବରେ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଦିଆଯାଇଥିଲା ତାହାର ଏକମାତ୍ର ଉଦ୍ଦେଶ୍ୟ ଥିଲା ନୂତନ ଓଡ଼ିଶା ଗଠନ ଏବଂ ସେଥିରେ ସେମାନଙ୍କ ନିଶ୍ଚିତ ଅଂଶୀଦାର ହେବାର ଉଜ୍ଜ୍ୱଳ ସମ୍ଭାବନା । ପୁଣି ବର୍ତ୍ତମାନ ସରକାରଙ୍କ ଭ୍ରମାତ୍ମକ ସୀମା ନିର୍ଦ୍ଧାରଣ ଯୋଗୁଁ ପାରଳା ରାଜ୍ୟର ଅସଂତୁଷ୍ଟ ପ୍ରଜାଗଣ ସେମାନଙ୍କ ମତାମତ ବିଭିନ୍ନ ସଂଗଠନ ତଥା ବ୍ୟକ୍ତି ବିଶେଷଙ୍କ ଜରିଆରେ ପ୍ରକାଶ କରି ଆସୁଛନ୍ତି । ଏଥିରୁ ସେମାନଙ୍କ ଆକାଂକ୍ଷା ଆକଳନ କରାଯାଇପାରେ ।

ଫିଲଫ୍-ଡଫ୍ କମିଟି ତଥା ସୀମା କମିଟିର ତିନିଜଣ ସଭ୍ୟଙ୍କ ମଧ୍ୟରୁ ଦୁଇଜଣଙ୍କ ମତାମତ ସ୍ପଷ୍ଟ ଭାବରେ ମିଶ୍ରଣ ସପକ୍ଷରେ ଥିବା ତଥ୍ୟ ସେଇ ସ୍ମାରକପତ୍ରରେ ଉଲ୍ଲେଖ କରିଥିଲେ ମହାରାଜା । ପୁଣି ସାମାଜିକ ତଥା ସାଂସ୍କୃତିକ ପଛଭୂମିରୁ ଓଡ଼ିଶା ସହ ପାରଳାର ସଂପର୍କ ଉଲ୍ଲେଖ କରି କହିଥିଲେ ଯେ ବାସ୍ତବରେ ପୁରୀ ରାଜବଂଶର ଦାୟାଦ ସେମାନେ । ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ବିକାଶ କ୍ଷେତ୍ରରେ ପାରଳା ଏକ ପ୍ରମୁଖ କେନ୍ଦ୍ର ରୂପେ ଦୀର୍ଘ ଅତୀତରୁ ପ୍ରତିଷ୍ଠିତ । ଏଠିକାର ଅସଂଖ୍ୟ ଧାର୍ମିକ ଅନୁଷ୍ଠାନ-ମଠ, ମନ୍ଦିର ଇତ୍ୟାଦି ପୁରୀରେ ଥିବା ସେଭଳି ଅନୁଷ୍ଠାନଗୁଡ଼ିକର ଯଥାର୍ଥ ସାଦୃଶ୍ୟ । ଏଠିକାର ପୂଜକଗଣ ଓଡ଼ିଆ ଏବଂ ମଧ୍ୟ ଅନୁଷ୍ଠାନଗୁଡ଼ିକର ରୀତି-ନୀତି, ପୂଜା-ପାର୍ବଣଗୁଡ଼ିକ ସେଇ ଏକାଧାରାରେ ପରିଚାଳିତ– ପୁରୀର ବିଶ୍ୱବିଖ୍ୟାତ ରଥଯାତ୍ରା ଭଳି ପାରଳାର ରଥଯାତ୍ରା । ଏଇ ସବୁ ଦୃଷ୍ଟିରୁ ସଂସଦୀୟ କମିଟି ସମ୍ବେଦନଶୀଳ ହୋଇ ସେଥିପାଇଁ ଅନୁକୂଳ ମତାମତ ଦେବେ ଏବଂ ସରକାରଙ୍କ ପୂର୍ବ ତ୍ରୁଟିର ଯଥାର୍ଥ ସଂଶୋଧନ କରିବେ ବୋଲି ମହାରାଜା ଆଶା ପୋଷଣ କରିଥିଲେ ସେଥିରେ ।

ସେଇ ସ୍ମାରକ ପତ୍ରର ଏକ ନକଲ ତତ୍‌କାଳ ଇଂଲଣ୍ଡରେ ଥିବା ତେଲୁଗୁ ପ୍ରତିନିଧି ମାନଙ୍କୁ ପ୍ରଦାନ କରାଯାଇ ସେହି ଯୁକ୍ତିଗୁଡ଼ିକର ଅସାରତା ପ୍ରମାଣ ପାଇଁ ସୁଯୋଗ ଦିଆଯାଇଥିଲା । ସଂସଦୀୟ କମିଟି ତରଫରୁ ମହାରାଜାଙ୍କ ଗୋଷ୍ଠୀ ଭଳି ସେମାନେ ମଧ୍ୟ ଇଂଲଣ୍ଡ ଯାଇଥିଲେ ଓଡ଼ିଶା ସହ ଗଞ୍ଜାମ ମିଶ୍ରଣ ବିରୋଧୀ ଅଭିଯାନ ଚଳାଇବା ପାଇଁ । ସେହିକ୍ରମରେ ସେଇ ଜୁଲାଇ ମାସର ଦ୍ୱିତୀୟ ସୋମବାର-୧୦ ତାରିଖ ଦିନ ସାର୍ ସାମୁଏଲ୍ ହୋର୍ ଏବଂ ସବ୍ କମିଟି ସେମାନଙ୍କ ସହ ସାକ୍ଷାତ ଆଲୋଚନା କରି ସ୍ମାରକପତ୍ର ଗ୍ରହଣ କରିଥିଲେ । ତାହା କିନ୍ତୁ ବିଶେଷ ଭାବରେ ଯୁକ୍ତି ସମ୍ବଳିତ ନଥିଲା । ସେଥିରେ ବର୍ତ୍ତମାନର ବ୍ରହ୍ମପୁର ସମେତ ଋଷିକୂଲ୍ୟା ନଦୀର ସମୁଦାୟ ଦକ୍ଷିଣାଞ୍ଚଳକୁ ଆନ୍ଧ୍ର ସହିତ ଯୁକ୍ତ କରି ରଖିବା ପାଇଁ ପ୍ରସ୍ତାବ ଦିଆଯାଇଥିଲେ ସୁଦ୍ଧା ସେଥିପାଇଁ ଯୁକ୍ତିଯୁକ୍ତ କାରଣ ଆଦୌ ଦର୍ଶାଯାଇ ନଥିଲା । ତେଣୁ ତାହାକୁ ଖଣ୍ଡନ କରିବା ପାଇଁ ଓଡ଼ିଶା ପ୍ରତିନିଧିମାନଙ୍କୁ ଆଦୌ କଷ୍ଟକର ବ୍ୟାପାର ବୋଲି ମନେ ହୋଇ ନଥିଲା ।



Ama Odisha pdf (aamaodisha@gmail.com)

ସେଥରର ରହଣି କାଳରେ ମହାରାଜା କୃଷ୍ଣଚନ୍ଦ୍ର ଇଂଲଣ୍ଡର ମହାମାନ୍ୟ ସମ୍ରାଟ ପଞ୍ଚମ ଜର୍ଜଙ୍କୁ ସୌଜନ୍ୟମୂଳକ ସାକ୍ଷାତ କରିବା ସହିତ ଆଲୋଚନା କାଳରେ ଓଡ଼ିଆମାନଙ୍କ ନ୍ୟାଯ୍ୟ ଦାବି ସମ୍ପର୍କରେ ଅବଗତ କରାଇଥିଲେ । କେବଳ ଓଡ଼ିଆମାନଙ୍କ ସମସ୍ୟା ସମ୍ପର୍କରେ ଇଂରେଜ ହାକିମମାନଙ୍କ ଦୃଷ୍ଟି ଆକର୍ଷଣ କରିବା ପାଇଁ ସେଥର କିଛି ଅଧିକ ସମୟ ଲଣ୍ଡନରେ ରହିଥିଲେ । ସେଇ ରହଣି କାଳରେ ମହାରାଜା ଲର୍ଡ ଲିନ୍ ଲିଥ୍‌ଗୋ, କ୍ଲେମେଣ୍ଟ ଅଟଲି ତଥା ଅନ୍ୟ ପ୍ରମୁଖ ବ୍ୟକ୍ତିବୃନ୍ଦଙ୍କ ସହିତ ସାକ୍ଷାତ୍ ଆଲୋଚନା କରିଥିଲେ; ସେମାନଙ୍କ ଧ୍ୟାନ ଆକର୍ଷଣ କରିଥିଲେ ଜୟପୁର ଓ ପାରଳା ସମେତ ପୂର୍ଣ୍ଣାଙ୍ଗ ଓଡ଼ିଶା ପ୍ରଦେଶ ଗଠନ ପାଇଁ । ଅନୁରୋଧ ଜଣାଇଥିଲେ ସେଥିପାଇଁ ଯେଉଁଭଳି ଆବଶ୍ୟକ ସହାୟତା ସେମାନେ ଯୋଗାଇ ଦେବେ ।

ଦୁର୍ଭାଗ୍ୟର କଥା, ଇଂଲଣ୍ଡରେ ମହାରାଜା ସେଭଳି ଉଦ୍ୟମ ଚଳାଉଥିବା ବେଳେ ଭାରତ ବିଭାଗ ସଚିବଙ୍କ ନିକଟରେ ଓଡ଼ିଶାରୁ ଟେଲିଗ୍ରାମ ପହଞ୍ଚିଥିଲା ଯେ ପାରଳା ଓ ଜୟପୁର ବିନା ନୂତନ ଓଡ଼ିଶା ଗ୍ରହଣୀୟ । ଏହା ଅତିଶୀଘ୍ର ଗଠିତ ହେଉ । ପୁଣି ମଧ୍ୟ ଜୟପୁର ରାଜାଙ୍କ ଇଚ୍ଛା ଥିବା ଦର୍ଶାଇ ବେନାମୀ ତାରବାର୍ତ୍ତା ମାଧ୍ୟମରେ ସାର୍ ସାମୁଏଲ୍ ହୋର୍‌ଙ୍କୁ ଅନୁରୋଧ କରାଯାଇଥିଲା ଯେ ଜୟପୁର ଅଞ୍ଚଳକୁ ଓଡ଼ିଶା ସହ ସାମିଲ କରାନଯାଉ । ମିଷ୍ଟର ହୋର୍ ସେ ସଂପର୍କରେ ବିଚାର ଆଲୋଚନା କରିଥିଲେ । କିନ୍ତୁ ସେହିମତର ତୀବ୍ର ବିରୋଧ କରି ମହାରାଜା କୃଷ୍ଣଚନ୍ଦ୍ର ମତ ଦେଇଥିଲେ ଯେ ଜୟପୁର ମହାରାଜା ବିକ୍ରମଦେବ ହେଉଛନ୍ତି ତାଙ୍କର ମାତୁଳ ଏବଂ ସେ ନିଜେ ମାମୁଙ୍କର ଓଡ଼ିଶା ସହ ମିଶ୍ରଣ ସପକ୍ଷମତ ତଥା ତାଙ୍କର ସେଥିପାଇଁ ଆଗ୍ରହ ଥିବା ସମ୍ପର୍କରେ ସ୍ପଷ୍ଟ ଏବଂ ନିର୍ଦ୍ଦିଷ୍ଟ ଭାବେ ଜାଣନ୍ତି । ତେଣୁ ସେହି ବେନାମୀ ତାରବାର୍ତ୍ତା ପରିବର୍ତ୍ତେ ଖୋଦ୍ ଜୟପୁର ମହାରାଜାଙ୍କଠାରୁ ସେ ନେଇ ସରଜମିନ୍ ତଦନ୍ତ କରାଯାଇପାରେ । ସେଥିପାଇଁ ସମସ୍ତ ଖର୍ଚ୍ଚ ମହାରାଜା କୃଷ୍ଣଚନ୍ଦ୍ର ବହନ କରିବାକୁ ପ୍ରସ୍ତୁତ ବୋଲି ମଧ୍ୟ ଦୃଢ଼ ଭାବରେ ବ୍ୟକ୍ତ କରିଥିଲେ ।

ପୁଣି ସୌଭାଗ୍ୟର କଥା, ଠିକ୍ ସେତିକିବେଳେ ଓଡ଼ିଆଙ୍କର ତଥା ଓଡ଼ିଶାର ଯଥାର୍ଥ ଜନମତ ତାରବାର୍ତ୍ତା ମାଧ୍ୟମରେ ସେଠାରେ ପହଂଚିଥିଲା । ବିଭିନ୍ନ ସଭାସମିତିରେ ଗୃହୀତ ପ୍ରସ୍ତାବ ସବୁକୁ କେବଲ୍ ମାଧ୍ୟମରେ ପହଞ୍ଚାଇ ଦିଆଯାଇଥିଲା ମି: ସାମୁଏଲ୍ ହୋର୍‌ଙ୍କ ନିକଟରେ । ପାରଳା ଓ ଜୟପୁର ବିନା ଓଡ଼ିଶା ପ୍ରଦେଶ ଆଦୌ ଗ୍ରହଣଯୋଗ୍ୟ ନୁହେଁ ବୋଲି ସର୍ବଶ୍ରୀ ରାଧାନାଥ ରଥ, ପଣ୍ଡିତ ସୂର୍ଯ୍ୟ ନାରାୟଣ ଦାଶ, ହରିହର ମହାପାତ୍ର, ବ୍ରଜବନ୍ଧୁ ଦାସ ପ୍ରମୁଖମାନଙ୍କ ଦସ୍ତଖତରେ ଯେଉଁସବୁ ତାରବାର୍ତ୍ତାମାନ ସେଠାରେ ପହଂଚିଥିଲା, ତାହା ବାସ୍ତବରେ ମହାରାଜାଙ୍କ ପାଇଁ ଥିଲା ବିଶେଷ ଆଶ୍ୱାସନା ।

ମିଳିତ ସଂସଦୀୟ କମିଟିର ସଭ୍ୟମାନଙ୍କଠାରୁ ନିର୍ଭର ପ୍ରତିଶ୍ରୁତି ପାଇବା ପରେ ଏବଂ ସେଇ ଗସ୍ତକ୍ରମର ସାର୍ଥକତା ନେଇ ନିଜ ମନରେ ଦୃଢ଼ ଆସ୍ଥା ସ୍ଥାପିତ ହୋଇ ସାରିବା ପରେ ସେ ଭାରତ ପ୍ରତ୍ୟାବର୍ତ୍ତନ ପାଇଁ ମନସ୍ଥ କରିଥିଲେ । ସେଥର ସେଠାରେ ରହିଥିଲେ ପ୍ରାୟ ଚାରିମାସରୁ



Ama Odisha pdf (aamaodisha@gmail.com)

କିଛି କମ୍‌ଦିନ । ୧୯୩୩ ଅଗଷ୍ଟ ୧୩ରେ ଫେରିଥିଲେ ନିଜ ରାଜ୍ୟକୁ । ଆପଣାର ହୃଦ୍‌ବୋଧ ମଧ୍ୟ ଉତ୍କଳ ଗୌରବ ମଧୁସୂଦନଙ୍କୁ ଜଣାଇଥିଲେ । ଓଡ଼ିଶା ସହ ମିଶ୍ରଣର ଉଜ୍ଜ୍ୱଳ ସମ୍ଭାବନା ଯୋଗୁଁ ମହାରାଜାଙ୍କ ରାଜ୍ୟବାସୀ ତାହାଙ୍କର ପ୍ରତ୍ୟାବର୍ତ୍ତନ କାଳରେ ଭବ୍ୟ ସ୍ୱାଗତ ଜଣାଇଥିଲେ । ପାରଳାର ଘରେ ଘରେ ଆନନ୍ଦର ଉତ୍ସବ । ପ୍ରତି ଦ୍ୱାରରେ ପୂର୍ଣ୍ଣକୁମ୍ଭ । ଆଲୋକ ସଜ୍ଜାରେ ଉଦ୍‌ଭାସିତ ସମଗ୍ର ସହର । କିନ୍ତୁ କିଏ ଜାଣିଥିଲା, ଆକାଶରେ ପୁଣି ଏକ ଅଦିନିଆ ଘନ କଳା ବାଦଲ ସୃଷ୍ଟି ହେବ ବୋଲି ।

ଲଣ୍ଡନରୁ ଫେରିବାର କିଛି ମାସ ପରେ ସେଠିକାର ଜଣେ ବନ୍ଧୁଙ୍କ ଠାରୁ ପତ୍ରଟିଏ ପାଇଥିଲେ । ସେଥିରୁ ସେ ଅବଗତ ହୋଇଥିଲେ ଯେ ଜୟପୁର ଅଞ୍ଚଳ ଓଡ଼ିଶା ସହ ସଂଯୁକ୍ତ ହେବା ଲାଗି ସରକାର ନିଷ୍ପତ୍ତି ନେଉଥିଲେ ସୁଦ୍ଧା ପାରଳା ଅଞ୍ଚଳ ପାଇଁ ମିଳିତ ସଂସଦୀୟ କମିଟି ସୁପାରିସ କରୁ ନାହାନ୍ତି । ଦକ୍ଷିଣ ଓଡ଼ିଶାର ସୀମା ଛତ୍ରପୁର ପରିବର୍ତ୍ତେ ବ୍ରହ୍ମପୁର ପର୍ଯ୍ୟନ୍ତ ବିସ୍ତାର କରାଯିବା ପାଇଁ ସମ୍ମତ ହୋଇଥିଲେ ସୁଦ୍ଧା ପୂର୍ବ ପ୍ରସ୍ତାବିତ ମହେନ୍ଦ୍ର ଗିରିରେ ଗ୍ରୀଷ୍ମକାଳୀନ ରାଜଧାନୀ ପ୍ରତିଷ୍ଠା ନହେବା ଲାଗି ସେହି ନିର୍ଦ୍ଧାରଣରେ ରହିଥିଲା । ସେ ମଧ୍ୟ ସମ୍ବାଦ ପାଇଥିଲେ ଯେ ନୂତନ ଓଡ଼ିଶା ଗଠନ ଏବଂ ତତ୍ ସହିତ ଆପଣା ରାଜ୍ୟର ମିଶ୍ରଣ ପାଇଁ ବରାବର ଦାବି କରି ଆସୁଥିବା ପାରଳା ମହାରାଜାଙ୍କ ପ୍ରତି ଓଡ଼ିଶା ସବ୍‌କମିଟିର ସଦସ୍ୟ ମି: ଅଟ୍‌ଲି ଯଥେଷ୍ଟ ସମ୍ବେଦନଶୀଳ ମନୋଭାବ ପ୍ରକାଶ କରିଥିଲେ ସୁଦ୍ଧା ସେଇ ରାଜ୍ୟର ଅଧିକାଂଶ ଜନଗଣଙ୍କ ଭାଷା ତଥା ଜାତିଗତ ଭିନ୍ନତା ଯୋଗୁଁ ମହାରାଜାଙ୍କ ଇଚ୍ଛା ପୂରଣ ପାଇଁ ସୁପାରିସ କରିପାରୁ ନଥିବାରୁ ଦୁଃଖ ପ୍ରକାଶ କରିଥିଲେ ସେଇ ସୁପାରିସରେ ।

ସେଭଳି ପରିସ୍ଥିତିରେ ସାରା ଓଡ଼ିଶାରେ ପୁଣି ଥରେ ତୀବ୍ର ଆନ୍ଦୋଳନ ପାଇଁ ଗଜପତି କୃଷ୍ଣଚନ୍ଦ୍ର ନିଷ୍ପତ୍ତି ନେଇଥିଲେ । ସେଥିପାଇଁ ନିୟୋଜିତ କରିଥିଲେ ଆପଣାର ଅନୁଗାମୀମାନଙ୍କୁ । ପ୍ରଫେସର ହୀରାଲାଲ ବର୍ଦ୍ଧନ ଏବଂ ସତ୍ୟ ନାରାୟଣ ରାଜଗୁରୁ ସାରା ରାଜ୍ୟର ବିଭିନ୍ନ ସ୍ଥାନରେ ପ୍ରତିବାଦ ସଭାମାନ ଆୟୋଜନରେ ଲାଗି ପଡ଼ିଥିଲେ । ଡଃ ରାଜଗୁରୁଙ୍କ ସ୍ମୃତି ଚାରଣରେ "୧୯୩୪ ସାଲ ଜାନୁଆରି ମାସରେ ଆମେ ଓଡ଼ିଶା ଗସ୍ତରେ ବାହାରି ସମ୍ବଲପୁରଠାରୁ ଜୟପୁର ପର୍ଯ୍ୟନ୍ତ ପ୍ରତି ଅଞ୍ଚଳରେ ସଭା ସମିତି ମାଧ୍ୟମରେ ଓଡ଼ିଆମାନଙ୍କ ପ୍ରତିବାଦ ସର୍କାରଙ୍କଠାରେ ଉପସ୍ଥାପନ କଲୁ । ସେ ମାସ ନଅ ତାରିଖ ଦିନ ପାରଳାଖେମଣ୍ଡିରୁ ଓଡ଼ିଶା ବ୍ୟାପୀ ଆନ୍ଦୋଳନ ଓ ବିକ୍ଷୋଭର ପ୍ରକୃତ ବିବରଣୀ ଜାଣିବା ପାଇଁ ମାନ୍ଦ୍ରାଜର ତତ୍‌କାଳୀନ ଲାଟସାହେବ ସସ୍ତ୍ରୀକ ପାରଳାଖେମଣ୍ଡି ଆଗମନ କଲେ ।"

ଫେବ୍ରୁଆରି ପ୍ରଥମ ସପ୍ତାହରେ କଟକଠାରେ ଏକ ବିରାଟ ସାଧାରଣ ସଭା ଆୟୋଜିତ ହୋଇଥିଲା । ଧରାକୋଟ ରାଜା ମଦନ ମୋହନ ସିଂହଦେବଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହୋଇଥିବା ସେହି ପ୍ରତିବାଦ ସଭାରେ 'ପାରଳା ବିନା ଓଡ଼ିଶା ବର୍ଜନ' ମୂଳକ ଏକ ପ୍ରସ୍ତାବ



Ama Odisha pdf (aamaodisha@gmail.com)

ଗୃହୀତ ହେବା ସଙ୍ଗେ ସଙ୍ଗେ ଭାରତର ବଡ଼ଲାଟ ଲର୍ଡ ୱିଲିଙ୍ଗଡନ୍‌ଙ୍କୁ ପୁଣି ଥରେ ସାକ୍ଷାତ କରିବା ପାଇଁ ମହାରାଜାଙ୍କୁ ଅନୁରୋଧ କରାଯାଇ ସେଥିପାଇଁ ଏକ ପ୍ରତିନିଧିମଣ୍ଡଳୀଙ୍କୁ ମନୋନୀତ କରାଯାଇଥିଲା । ସେଥିରେ ଅନ୍ତର୍ଭୁକ୍ତ ଥିଲେ ସର୍ବଶ୍ରୀ ଭୁବନାନନ୍ଦ ଦାସ, ବ୍ରଜସୁନ୍ଦର ଦାସ ଏବଂ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ପ୍ରମୁଖମାନେ ।

ଭାଗ୍ୟର କ୍ରୂର ପରିହାସ, ଠିକ୍ ସେହି ସମୟରେ– ଫେବ୍ରୁଆରି ଚାରି ତାରିଖ ଦିନ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଆନ୍ଦୋଳନର ଜନକ ଦେଶପ୍ରାଣ ମଧୁସୂଦନଙ୍କ ଦେହାନ୍ତ ହୋଇ ଯାଇଥିଲା । ତାହା ଥିଲା ମହାରାଜାଙ୍କପାଇଁ ଏକ ଅତ୍ୟନ୍ତ ବେଦନାଦାୟକ ଘଟଣା । ତେବେ ସେହିଭଳି ଅନ୍ୟ ଏକ ବେଦନାଦାୟକ ନିଷ୍ପତ୍ତି ମହାରାଜା ନେବା ପାଇଁ ମାନସିକ ପ୍ରସ୍ତୁତି କରିଥିଲେ । କେବଳ ତେଲୁଗୁ ଭାଷା/ଜାତି ବହୁଳତା କାରଣ ଦର୍ଶାଯାଇ ପ୍ରତିଟି ସମୟରେ ପାରଳା ଜମିଦାରିକୁ ନୂତନ ଓଡ଼ିଶାରେ ସାମିଲ୍ ପାଇଁ ବିରୋଧ କରାଯାଉଥିବା କାରଣରୁ ତାହାଙ୍କର ମୂଳ ଦାବିର ପରିବର୍ତ୍ତନ କରିଥିଲେ । ଯେତେ ଯନ୍ତ୍ରଣାଦାୟକ ହେଲେ ସୁଦ୍ଧା ନିଜ ଜମିଦାରିଟିକୁ ଦୁଇ ଭାଗରେ ବିଭକ୍ତ କରିବା ପାଇଁ ମନସ୍ଥ କରିଥିଲେ । ଜନଗଣଙ୍କ ହିତ ଦୃଷ୍ଟିରୁ ଓଡ଼ିଆ ଅଧ୍ୟୁଷିତ ଅଞ୍ଚଳଗୁଡ଼ିକ ଓଡ଼ିଶା ସହ ଯୁକ୍ତ ହେବା ବେଳେ ତେଲୁଗୁ ଭାଷା ବହୁଳ ଅଞ୍ଚଳ ସବୁ ଆନ୍ଧ୍ର ସହିତ ଯୁକ୍ତ ହେବା ବିଧେୟ ବୋଲି ମତ ପ୍ରଦାନ କରିଥିଲେ । ସେହି ମର୍ମରେ ୧୯୩୪ ଫେବ୍ରୁଆରି ୨୩ ତାରିଖ ଦିନ ଏକ ସ୍ମାରକପତ୍ର ପ୍ରଦାନ କରିଥିଲେ ମାନ୍ଦ୍ରାଜ ଗଭର୍ଣ୍ଣରଙ୍କୁ ।

ସେଇ ପରିବର୍ତ୍ତିତ ପ୍ରସ୍ତାବ ସମସ୍ତଙ୍କ ପାଇଁ ଗ୍ରହଣଯୋଗ୍ୟ ମନେ ହୋଇଥିଲା । ପ୍ରତିପତ୍ତିଶାଳୀ ମାନ୍ଦ୍ରାଜ ଜମିଦାର ସଂଘ ତାହାକୁ ପୂର୍ଣ୍ଣ ସମର୍ଥନ ଜଣାଇଥିଲା । ସ୍ଥାନୀୟ ପତ୍ର ପତ୍ରିକାଗୁଡ଼ିକ ମଧ୍ୟ ବହୁଳ ଭାବରେ ସମର୍ଥନ କରିବା ସହିତ ବିଶେଷ ଭାବେ ପ୍ରସାରଣ ମଧ୍ୟ କରିଥିଲେ ।

ମହାରାଜାଙ୍କ ସେଇ ପ୍ରସ୍ତାବକୁ ଦେଶର ତେଲୁଗୁ ସଂପ୍ରଦାୟ ମଧ୍ୟ ଗ୍ରହଣ କରି ନେଇଥିଲେ । ତାହା ସମଗ୍ର ଦେଶରେ ଏଭଳି ଆଲୋଡ଼ନ ମଧ୍ୟ ସୃଷ୍ଟି କରିଥିଲା ଯେ କେନ୍ଦ୍ରୀୟ ବିଧାନ ପରିଷଦର ସଭ୍ୟମାନଙ୍କ ମଧ୍ୟରୁ ୧୬ ଜଣ ମିଳିତ ଭାବରେ ଭାରତର ଗଭର୍ଣ୍ଣର ଜେନେରାଲ୍‌ଙ୍କୁ ଅନୁରୋଧ ଜଣାଇଥିଲେ, ସେହି ପ୍ରସ୍ତାବକୁ କାର୍ଯ୍ୟକାରି କରାଇବା ପାଇଁ । ଖୋଦ୍ ମହାରାଜା ୧୯୩୪ ମାର୍ଚ୍ଚ ୧୭ ତାରିଖ ଦିନ ପରିସ୍ଥିତି ଚାପରେ ପଡ଼ି ମୂଳ ପ୍ରସ୍ତାବର ପରିବର୍ତ୍ତନ ସଂପର୍କରେ ବିଶଦ୍ ଭାବରେ ବଡ଼ଲାଟ୍‌ଙ୍କୁ ଜଣାଇ ଦେଇଥିଲେ । ଉଭୟ ଗୋଷ୍ଠୀର ଲୋକଙ୍କ ପାଇଁ ତାହା ସନ୍ତୋଷଜନକ ହେବ ବୋଲି ମଧ୍ୟ ଆଶା ପୋଷଣ କରିଥିଲେ । ସେଥିରେ ସେ ଅନୁରୋଧ ମଧ୍ୟ କରିଥିଲେ ଯେ ଏହି ପରିବର୍ତ୍ତିତ ଦାବିର ଯଥାର୍ଥ ବିଚାର କରାଯାଇ ପୁନଶ୍ଚ ସୀମା ନିର୍ଦ୍ଧାରିତ ହେବା ପର୍ଯ୍ୟନ୍ତ ଓଡ଼ିଶାର ସୀମା ସଂଶୋଧନ ପ୍ରକାଶନ ସ୍ଥଗିତ ରଖାଯାଉ ।

ଅତ୍ୟନ୍ତ ଦୁଃଖଦାୟକ ହେଲେ ସୁଦ୍ଧା ମହାରାଜା ସେଭଳି ନିଷ୍ପତ୍ତି ନେବାକୁ ଏକରକମ ବାଧ୍ୟ ହୋଇଥିଲେ । ପାରଳା ଜମିଦାରିର ମିଶ୍ରଣ ଦାବିର ପୁନର୍ବିନ୍ୟାସ ହେବା ପରେ ପରେ ମହାରାଜା



Ama Odisha pdf (aamaodisha@gmail.com)

**ଓଡ଼ିଶାର ଗଡ଼ଜାତ ଅଞ୍ଚଳ**

ଏବଂ ପୂର୍ବ ନିର୍ଦ୍ଧାରିତ ଅନ୍ୟ ପ୍ରତିନିଧିମଣ୍ଡଳୀ ୧୯୩୪ ଅପ୍ରେଲ ମାସରେ ବଡ଼ଲାଟ୍‌ଙ୍କୁ ଭେଟିବାକୁ ଯାଇଥିଲେ । ହେଲେ ବଡ଼ଲାଟଙ୍କ ବ୍ୟକ୍ତିଗତ ସଚିବଙ୍କ ପରାମର୍ଶ ଥିଲା ୧୯୩୧ ଜନଗଣନା ଅନୁଯାୟୀ ଓଡ଼ିଆ ଏବଂ ତେଲୁଗୁ ଅଞ୍ଚଳର ଚିହ୍ନଟ ହୋଇଥିବା ମାନଚିତ୍ର ପ୍ରସ୍ତୁତ ହେଉ । ତାହା ଯେ ଯଥାର୍ଥ ଭାବରେ ବଡ଼ଲାଟଙ୍କୁ ହୃଦ୍‌ବୋଧ କରାଇ ପାରିବ ଏହା ସମସ୍ତେ ଅନୁଭବ କରିଥିଲେ ।



Ama Odisha pdf (aamaodisha@gmail.com)

ସେଥିପାଇଁ ଏକ ତାରବାର୍ତ୍ତାରେ ମେନେଜର ଲକ୍ଷ୍ମୀ ନାରାୟଣ ପଟ୍ଟନାୟକଙ୍କୁ ମହାରାଜା ନିର୍ଦ୍ଦେଶ ଦେଇଥିଲେ, ପାରଳା ସମସ୍ଥାନ ଅଫିସରେ ଉପଯୁକ୍ତ ମାନଚିତ୍ର ପ୍ରସ୍ତୁତ କରି ତିନିଦିନ ଭିତରେ ଦିଲ୍ଲୀ ପଠାଇବା ପାଇଁ । ରାତିଦିନ ଅକ୍ଳାନ୍ତ ପରିଶ୍ରମ କରି ଓଡ଼ିଶା ସହ ମିଶ୍ରଣ କାମନା କରାଯାଉଥିବା ଅଞ୍ଚଳଗୁଡ଼ିକ ଚିହ୍ନଟ କରାଯାଇ ମାନଚିତ୍ର ପ୍ରସ୍ତୁତ ହୋଇଥିଲା । ପ୍ରତିନିଧିମଣ୍ଡଳୀ ବଡ଼ଲାଟଙ୍କ ସହ ସାକ୍ଷାତ କରିବା ଅବସରରେ ତାହାକୁ ପ୍ରଦାନ କରିଥିଲେ ଏବଂ ବଡ଼ଲାଟ ମଧ୍ୟ ସେହି ପରିବର୍ତ୍ତିତ ପ୍ରସ୍ତାବକୁ ସମ୍ପୂର୍ଣ୍ଣ ସମର୍ଥନ କରିବା ସହିତ ଯଥାର୍ଥ ଭାବେ ସୁପାରିସ କରି ମାନଚିତ୍ର ସହିତ ଇଂଲଣ୍ଡର ଭାରତ ବିଭାଗ ସଚିବଙ୍କ ନିକଟକୁ ପ୍ରେରଣ କରିଥିଲେ ।

ମିଳିତ ସଂସଦୀୟ କମିଟିର ପୂର୍ବ ମତାମତକୁ ପ୍ରବଳ ବିରୋଧ କରାଯାଇ ଓଡ଼ିଶାରେ ଯେଉଁ ଜନମତ ସୃଷ୍ଟି ହୋଇଥିଲା ତାହା ଯଥାର୍ଥରେ ସେତେବେଳକୁ ବ୍ରିଟିଶ ସରକାର ଅନୁଭବ କରି ସାରିଥିଲେ । ତେଣୁ ଏହି ପରିବର୍ତ୍ତିତ ପ୍ରସ୍ତାବ, ଭାରତର ବିଭିନ୍ନ ପ୍ରଭାବିତ ପ୍ରାନ୍ତରରେ ପୂର୍ଣ୍ଣ ସ୍ୱୀକୃତି ଲାଭ କରୁଥିବା ଯୋଗୁଁ ବଡ଼ଲାଟଙ୍କ ସୁପାରିସକୁ ଯଥାର୍ଥରେ ଗ୍ରହଣ କରିନେଇଥିଲେ ବ୍ରିଟିଶ ସରକାର । ପରିଣାମତଃ ମିଳିତ ସଂସଦୀୟ କମିଟି ସୁପାରିସ ସେହି କ୍ରମରେ ପରିବର୍ତ୍ତିତ ହୋଇଥିଲା । ଏବଂ ସର୍ବୋପରି ସେହି ଦିଗରେ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଭୂମିକା ଥିଲା ଅନନ୍ୟ ।

ନୂତନ ଓଡ଼ିଶାର ସୀମା ସହିତ ପାରଳାଖେମଣ୍ଡି ରାଜ୍ୟର ମାଳ ଅଞ୍ଚଳକୁ ମିଶାଇ ପାରଳା ସହର ଏବଂ ତତ୍‌ସଂଲଗ୍ନ ଏକ କ୍ଷୁଦ୍ର ଓଡ଼ିଆଭାଷୀ ଅଞ୍ଚଳର ମିଶ୍ରଣ ସୁପାରିସ ହୋଇଥିଲା । ମୋଟାମୋଟି ଭାବେ ସମଗ୍ର ଜମିଦାରିର ମାତ୍ର ୩୦ ପ୍ରତିଶତ ଅଞ୍ଚଳ ଓଡ଼ିଶା ସହ ଯୁକ୍ତ ହେବା ପାଇଁ ନିଷ୍ପତ୍ତି ହୋଇଥିଲା । ଜମିଦାରିର ମୋଟ ପ୍ରାୟ ୬୩୯ ବର୍ଗ ମାଇଲ (୧୬୯୫ ବର୍ଗ କିଲୋମିଟର) ଅଞ୍ଚଳ ମଧ୍ୟରୁ ମାତ୍ର ୧୯୧ ବର୍ଗମାଇଲ (୪୯୫ ବର୍ଗ କିଲୋମିଟର) ପରିମିତ ଅଞ୍ଚଳ ଓଡ଼ିଶାର ସୀମା ଅନ୍ତର୍ଭୁକ୍ତ ହୋଇଥିଲା । ପାରଳା ରାଜ୍ୟର ମୋଟ ୫୦୩ ଗୋଟି ଗ୍ରାମ ମଧ୍ୟରୁ ମାତ୍ର ୧୮୮ଟି ରୟତି ଗ୍ରାମ ରହିଥିଲା ନୂତନ ପ୍ରଦେଶ ସହ ଯୁକ୍ତ ହୋଇ । ଅବସ୍ଥା ଚକ୍ରରେ ବାଧ୍ୟ ହୋଇ ଖଣ୍ଡିତ ହୋଇଥିଲେ ମଧ୍ୟ ମହାରାଜାଙ୍କ ସ୍ୱପ୍ନ ସାକାର ହୋଇଥିଲା । ବିଭାଗୀକୃତ ଅଞ୍ଚଳର ସୀମାରେଖା ରୂପେ ଗୁଣପୁର-ପାରଳାଖେମଣ୍ଡି ରେଳ ଲାଇନ୍‌ର ଦକ୍ଷିଣ ଦିଗଟି ପ୍ରାୟ ସ୍ଥିରୀକୃତ ହୋଇଥିଲା । ହେଲେ ସେଭଳି ବିଭାଜନର ପରିଣାମ ସ୍ୱରୂପ ଏହି ଭୂଖଣ୍ଡରେ ପୁରାତନ ପ୍ରତିଷ୍ଠିତ ଗଙ୍ଗବଂଶର ଅନେକ ଅନେକ ଅକ୍ଷୟକୀର୍ତ୍ତି ଆଧୁନିକ ଓଡ଼ିଶା ବାହାରେ ରହିଯାଇଥିଲା; ରହିଯାଇଥିଲା ବଂଶଧାରା ନଦୀକୂଳସ୍ଥ ପ୍ରାଚୀନ କଳିଙ୍ଗର ପୂର୍ବତନ ରାଜଧାନୀ ମୁଖଲିଙ୍ଗମ୍ ଅଞ୍ଚଳ ତଥା ଖେମଣ୍ଡି ରାଜବଂଶର ଅସଂଖ୍ୟ ସ୍ମୃତିର ସ୍ମାରକୀ ।

—୦—



Ama Odisha pdf (aamaodisha@gmail.com)

# ନୂତନ ଓଡ଼ିଶା : ପ୍ରଥମ ପ୍ରଧାନମନ୍ତ୍ରୀ

ଓଡ଼ିଶା ଶ୍ୱେତପତ୍ର ପ୍ରକାଶ ପାଇବା ପରଠାରୁ ସରକାରୀ ସ୍ତରରେ ନୂତନ ପ୍ରଦେଶ କାର୍ଯ୍ୟକ୍ଷମ ହେବା ପାଇଁ ବିଭିନ୍ନ ପ୍ରସ୍ତୁତିପର୍ବର ଅୟମାରମ୍ଭ କରାଯାଇଥିଲା । ସେତିକିବେଳେ ୧୯୧୨ରେ ବିହାର-ଓଡ଼ିଶା ଗଠନ ବେଳର ପଦ୍ଧତିକୁ ଅନୁସରଣ କରାଯାଇଥିଲା । ଭାରତ ବିଭାଗ ସଚିବ ବଡ଼ଲାଟଙ୍କୁ ତତ୍‌କାଳ ପରାମର୍ଶ ଦେଇଥିଲେ, ମଧ୍ୟବର୍ତ୍ତୀକାଳୀନ ସରକାର ଗଠନ ଦିଗରେ ବିହିତ ପଦକ୍ଷେପମାନ ଗ୍ରହଣ କରିବା ପାଇଁ ।

ବାସ୍ତବରେ ରାଜ୍ୟର ଦାୟିତ୍ୱ ନେବା ପୂର୍ବରୁ ତାହାର ବିଭିନ୍ନ ସମସ୍ୟା ଅନୁଧ୍ୟାନ ଏବଂ ସେ ସବୁର ଦୂରୀକରଣ ପାଇଁ ସମ୍ଭାବ୍ୟ ପଦକ୍ଷେପ ସବୁ ନେବାଲାଗି ଓଡ଼ିଶାର ପ୍ରଥମ ଗଭର୍ଣ୍ଣର ହେବାକୁ ଥିବା ସାର୍ ଜନ୍ ଅଷ୍ଟିନ୍ ହବାକ୍‌ଙ୍କୁ ସ୍ୱତନ୍ତ୍ର କ୍ଷମତା ଦିଆଯାଇ ଓଡ଼ିଶାରେ ଅବସ୍ଥାପିତ କରାଯାଇଥିଲା । ୧୯୩୩ ଜୁନ୍ ୨୪ ତାରିଖରେ ସରକାରଙ୍କ ଦ୍ୱାରା ଗଠିତ ଓଡ଼ିଶା ଶାସନ କମିଟିର ସେ ମୁଖ୍ୟ ରହିଥିବା ବେଳେ ଅନ୍ୟ ସଭ୍ୟଗଣ ଥିଲେ ସର୍ବଶ୍ରୀ ଲକ୍ଷ୍ମୀଧର ମହାନ୍ତି, ଲୋକନାଥ ମିଶ୍ର, ବୀରବର ନାରାୟଣଚନ୍ଦ୍ର ଧୀର ନରେନ୍ଦ୍ର, ମଧୁସୂଦନ ଦାସ, ଏନ୍. ରାମମୂର୍ତ୍ତି ନାଇଡୁ, ନୀଳମଣି ସେନାପତି ଗୌରଚନ୍ଦ୍ର ଦେବ ଏବଂ ଓ. ନିଉସାମ୍ । ଓଡ଼ିଶା କମିଟି ନୂତନ ପ୍ରଦେଶର ରାଜଧାନୀ ପାଇଁ ସ୍ଥାନ ନିର୍ବାଚନ, ସଚିବାଳୟ କର୍ମଚାରୀଙ୍କ ବାସଗୃହ ନିର୍ମାଣ ଲାଗି ଖର୍ଚ୍ଚ ଅଟକଳ, ହାଇକୋର୍ଟ, ବିଶ୍ୱବିଦ୍ୟାଳୟ ତଥା ଅନ୍ୟାନ୍ୟ ବୈଷୟିକ ଶିକ୍ଷାପ୍ରସାର ଲାଗି ଅନ୍ୟାନ୍ୟ ପ୍ରଦେଶ ସହିତ ଆଂଶିକଭାବେ ସଂଯୁକ୍ତ ରହିବା ପ୍ରଶ୍ନ ଇତ୍ୟାଦି ସମସ୍ତ ବିଷୟରେ ଅନୁଧ୍ୟାନ କରି ସରକାରଙ୍କୁ ପରାମର୍ଶ ଦେବାପାଇଁ ନିଷ୍ପତ୍ତି ନିଆଯାଇଥିଲା ।

ସେତେବେଳ ସୁଦ୍ଧା ଜୟପୁର ଓ ପାରଳା ଅଞ୍ଚଳ ଓଡ଼ିଶାରେ ସଂଯୁକ୍ତ ହୋଇନଥିଲା । ତେଣୁ ଆପାତତଃ ଶ୍ୱେତପତ୍ରରେ ପ୍ରକାଶିତ ଅଞ୍ଚଳ ପାଇଁ ହିଁ ଏହି କମିଟି ଅଧିକୃତ ଥିଲା ଏବଂ ସୀମା ସଂପର୍କୀୟ ମତାମତ ଦେବାପାଇଁ ଏହି ଶାସନ କମିଟିକୁ କୌଣସି ଅଧିକାର ଦିଆଯାଇନଥିଲା । ଅପରପକ୍ଷରେ ମହାରାଜା କୃଷ୍ଣଚନ୍ଦ୍ରଙ୍କ ନେତୃତ୍ୱରେ ଆନ୍ଦୋଳନ ଅବ୍ୟାହତ ରହିଥିଲା ନୂତନ ଓଡ଼ିଶାର ସୀମା ସଂଶୋଧନ ପାଇଁ ।



Ama Odisha pdf (aamaodisha@gmail.com)

ଓଡ଼ିଶା ଶାସନ କମିଟିରେ ମହାରାଜାଙ୍କ ଅନୁପସ୍ଥିତି ବେଶ୍ ଉପଲବ୍ଧି କରିଥିଲେ ସମସ୍ତେ । ଖୋଦ୍ ଜନ୍ ହବାକ୍‌ଙ୍କ ପାଇଁ ସେହି ଉପଲବ୍ଧି ଥିଲା ଅତ୍ୟଧିକ । ମଧୁବାବୁଙ୍କୁ ଗୋଟିଏ ପତ୍ରରେ ଆପଣାର ହୃଦୟ ଖୋଲି ଦେଇଥିଲେ ଯେ ଓଡ଼ିଆମାନଙ୍କ ଦୀର୍ଘ ଦିନର ଅଭିଳାଷ ପୂରଣ ହେବାବେଳେ ସମସ୍ତେ ଗର୍ବ ଅନୁଭବ କରିବା ଉଚିତ । ତେବେ ନୂତନ ପ୍ରଦେଶ ଗଠନର ମୁଖ୍ୟ ଉଦ୍ୟୋକ୍ତା ସେହି କମିଟି ସହିତ ସଂଯୁକ୍ତ ହୋଇପାରି ନଥିବା ଅତ୍ୟନ୍ତ ଦୁଃଖର ବିଷୟ । "କମିଟି ବୈଠକଗୁଡ଼ିକରେ ମୁଁ ଏକ ବିରାଟ ଶୂନ୍ୟତା ଅନୁଭବ କରୁଛି ।" -ସେ ସେତିକିବେଳେ ଆଶା ମଧ୍ୟ ପୋଷଣ କରିଥିଲେ ଯେ ଭବିଷ୍ୟତରେ ଆବଶ୍ୟକବେଳେ ମହାରାଜାଙ୍କ ସହଯୋଗ ନିଶ୍ଚିତ ଭାବେ ଲାଭ କରିବେ ।

ଆପାତତଃ ଓଡ଼ିଶାର ରାଜଧାନୀ କଟକଠାରେ ରହିବା ବେଳେ ରାଜ୍ୟପାଳଙ୍କ ରହିବା ପାଇଁ ଓଡ଼ିଶା ଶାସନ କମିଟି ସ୍ଥାନ ନିର୍ଣ୍ଣୟ କରିଥିଲା ପୁରୀ ।

ମିଳିତ ସଂସଦୀୟ କମିଟିର ମତାମତ ୧୯୩୪ ନଭେମ୍ବରରେ ସରକାରଙ୍କ ନିକଟରେ ଦାଖଲ ହୋଇଥିଲା । ତାହାକୁ ଆଧାର କରି ୧୯୩୫ ଫେବ୍ରୁଆରିରେ ଭାରତ ବିଭାଗ ସଚିବ ବ୍ରିଟିଶ୍ ପାର୍ଲାମେଣ୍ଟର ହାଉସ୍ ଅଫ୍ କମନ୍‌ସରେ ଏକ ବିଲ୍ ଆଗତ କରିଥିଲେ ଏବଂ ତାହା ଅଗଷ୍ଟ ୪ ତାରିଖ ଦିନ ଅନୁମୋଦନ ଲାଭକରି ଆଇନରେ ପରିଣତ ହୋଇଥିଲା । ତାହା ହିଁ ଆମଦେଶରେ ଖ୍ୟାତି ଲାଭ କରିଥିବା ୧୯୩୫ ଭାରତ ଶାସନ ଆଇନ । ସେହି ଅନୁଯାୟୀ ଓଡ଼ିଶା ଓ ସିନ୍ଧୁପ୍ରଦେଶ ନୂତନ କରି ଜନ୍ମଲାଭ କରିଥିବା ସଂଗେ ସଂଗେ ଲୋକପ୍ରତିନିଧିମୂଳକ ଶାସନ ପ୍ରବର୍ତ୍ତନ ହେବାର ବ୍ୟବସ୍ଥା ହୋଇଥିଲା । ତାହାକୁ କାର୍ଯ୍ୟକାରୀ କରାଇବା ପାଇଁ ସେହିକ୍ରମରେ "ଭାରତ ସରକାରଙ୍କ ଓଡ଼ିଶା ଗଠନ ଆଦେଶନାମା-୧୯୩୬" ପ୍ରସ୍ତାବ ପାର୍ଲାମେଣ୍ଟରେ ୧୯୩୬ ମସିହା ଜାନୁୟାରି ଏକ ତାରିଖ ଦିନ ଉପସ୍ଥାପିତ ହୋଇଥିଲା । ପରଂପରା ଅନୁଯାୟୀ ପାର୍ଲାମେଣ୍ଟର ଉଭୟ ସଦନ ଫେବ୍ରୁଆରି ମାସରେ ମହାମାନ୍ୟ ସମ୍ରାଟଙ୍କୁ ମିଳିତ ଭାବରେ ଅନୁରୋଧ ଜଣାଇଥିଲେ ଏବଂ ପ୍ରିଭି କାଉନ୍‌ସିଲର ପରାମର୍ଶକ୍ରମେ ଓଡ଼ିଶା ପ୍ରଦେଶ ଗଠନ ପାଇଁ ସମ୍ରାଟ ଚୂଡ଼ାନ୍ତ ଆଦେଶ ଦେଇଥିଲେ ୧୯୩୬ ମାର୍ଚ୍ଚ ତିନି ତାରିଖ ଦିନ । ସେହି ରାଜକୀୟ ଆଦେଶନାମା ହିଁ ଥିଲା ନୂତନ ଓଡ଼ିଶା ପ୍ରଦେଶର ସାମ୍ବିଧାନିକ ଭିତ୍ତି ।

୧୯୩୬ ଅପ୍ରେଲ୍ ପହିଲା ଦିନ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଉଦ୍‌ଘାଟିତ ହୋଇଥିଲା । ଏହାର ପ୍ରଥମ ଗଭର୍ଣ୍ଣର ହୋଇଥିଲେ ସାର୍‌ଜନ୍ ଅଷ୍ଟିନ୍ ହବାକ୍ । ତାହାଙ୍କୁ ଶପଥ ପାଠ କରାଇଥିଲେ ବିହାର-ଓଡ଼ିଶା ପ୍ରଦେଶ ହାଇକୋର୍ଟର ପ୍ରଧାନ ବିଚାରପତି ସାର୍ କଟ୍‌ନେ ଟେରାଲ୍ । ସେହି ଉଦ୍‌ଘାଟନୀ ଉତ୍ସବ କଟକ ରେଭେନ୍ସା କଲେଜରେ ଅନୁଷ୍ଠିତ ହୋଇଥିଲା ।

ନୂତନ ଓଡ଼ିଶାର ଆୟତନ ପ୍ରାୟ ୩୨,୧୯୮ ବର୍ଗ ମାଇଲ (୮୩,୩୯୩ ବ.କି.ମି.) ହୋଇଥିବା ବେଳେ ଜନସଂଖ୍ୟା ଥିଲା ୮୦,୪୩,୬୮୧ ଏବଂ ଏଥିରେ ଥିଲା କଟକ, ପୁରୀ,



Ama Odisha pdf (aamaodisha@gmail.com)

ବାଲେଶ୍ୱର, ଗଞ୍ଜାମ, କୋରାପୁଟ ଓ ସମ୍ବଲପୁର- ଏଇ ଛଅଟି ଜିଲ୍ଲା ସମେତ ୨୪ଟି ଗଡ଼ଜାତ ଅଞ୍ଚଳ । ସେତେବେଳ ପର୍ଯ୍ୟନ୍ତ ଏକ ଜିଲ୍ଲା ରୂପେ ପରିଗଣିତ ହେଉଥିବା ଅନୁଗୋଳକୁ ଦୁଇଭାଗ କରାଯାଇ ଗୋଟିଏ ଭାଗକୁ କଟକ ଏବଂ ଅନ୍ୟ ଭାଗଟିକୁ ଗଞ୍ଜାମ ସହ ସଂଯୁକ୍ତ କରାଇ




ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ: ୧୯୩୬ ଏପ୍ରିଲ୍ ପହିଲା



Ama Odisha pdf (aamaodisha@gmail.com)

ଦିଆଯାଇଥିଲା । ପୁଣି ସ୍ୱତନ୍ତ୍ର କ୍ଷମତା ବଜାୟ ରଖିଥିବା ୨ ୪ଟି ଗଡ଼ଜାତ ଅଞ୍ଚଳଗୁଡ଼ିକ ମଧ୍ୟରେ ଥିଲା ଗାଙ୍ଗପୁର, ବଣାଇ, କେନ୍ଦୁଝର, ମୟୂରଭଞ୍ଜ, ନୀଳଗିରି, ପାଲଲହଡ଼ା, ବାମରା, ରେଢ଼ାଖୋଲ, ଆଠମଲ୍ଲିକ, ତାଳଚେର, ଢେଙ୍କାନାଳ, ଆଠଗଡ, ତିଗିରିଆ, ବଡ଼ମ୍ବା, ନରସିଂହପୁର, ହିନ୍ଦୋଳ, ବାମଣ୍ଡା, ସୋନପୁର, ପାଟଣା, କଳାହାଣ୍ଡି, ଦଶପଲ୍ଲା, ଖଣ୍ଡପଡ଼ା, ନୟାଗଡ଼ ଏବଂ ରଣପୁର ।

ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠିତ ହୋଇଥିଲେ ସୁଦ୍ଧା ଓଡ଼ିଶା ବାହାରେ ଅନେକ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ନୂତନ ଓଡ଼ିଶାର ଚତୁଃପାର୍ଶ୍ୱରେ ରହିଯାଇଥିଲା । ବିହାରରେ ସିଂହଭୂମ; ବଙ୍ଗରେ ମେଦିନାପୁରର ଅନେକ ଓଡ଼ିଆଭାଷୀ ଅଞ୍ଚଳ; କେନ୍ଦ୍ର (ମଧ୍ୟ) ପ୍ରଦେଶରେ ଫୁଲଝର, ବିନ୍ଦ୍ରାନୂଆଗଡ଼, ବସ୍ତର, ରାଜଗଡ଼ ଏବଂ ସାରଙ୍ଗଗଡ଼ ରାଜ୍ୟ; ମାନ୍ଦ୍ରାଜରେ ମଞ୍ଜୁଷା, ତରଳା, ଟିକାଲି, ବୁଢ଼ାରସିଂ, ଜଳନ୍ତର; ବିଶାଖାପାଟଣା ମାଳଅଞ୍ଚଳର ଅଧିକାଂଶ ଭାଗ ଏବଂ ପାରଳା ଜମିଦାରିର ଅନେକ ଓଡ଼ିଆ ଅଧ୍ୟୁଷିତ ଅଞ୍ଚଳ ଓଡ଼ିଶା ବାହାରେ ରହି ଯାଇଥିଲା । ତେଣୁ ଆପାତତଃ ଓଡ଼ିଆ ଲୋକେ ଯେଉଁ ଆଶା ଆକାଂକ୍ଷା ନେଇ ଦୀର୍ଘଦିନ ଧରି ସ୍ୱତନ୍ତ୍ର ଓଡ଼ିଶା ଆନ୍ଦୋଳନ ଚଳାଇ ଆସିଥିଲେ ତାହା ସ୍ୱୟଂସଂପୂର୍ଣ୍ଣ ହୋଇପାରି ନଥିଲା କହିଲେ ଚଳେ । ତେବେ ଯେଉଁ ସଫଳତା ହାସଲ ହୋଇଥିଲା ତାହା ଥିଲା ଆଂଶିକ । ତଥାପି ତାହାର ଗୁରୁତ୍ୱ କିଛି କମ୍ ନଥିଲା । ଭାଷାଭିତ୍ତିରେ ତାହା ଥିଲା ଭାରତ ଭୂଖଣ୍ଡରେ ପ୍ରଥମ ସ୍ୱତନ୍ତ୍ର ପ୍ରଦେଶ । ସେତିକିବେଳେ ମଧ୍ୟ ଭାରତୀୟ ରାଷ୍ଟ୍ରସଂଘରେ ସ୍ୱତନ୍ତ୍ର ରାଜ୍ୟ ଭାବେ ଜନ୍ମଲାଭ କରିଥିଲା ସିନ୍ଧୁପ୍ରଦେଶ ।

ଭାଷା ଆଧାରରେ ଗଠିତ ନୂତନ ପ୍ରଦେଶର ଜନ୍ମୋତ୍ସବ ମହା ଆଡ଼ମ୍ବରରେ ପାଳିତ ହୋଇଥିଲା । ସେଥିପାଇଁ କଟକଠାରେ ଏକ ବିରାଟ ସାଧାରଣ ସଭାର ଆୟୋଜନ ହୋଇଥିଲା । ସେଥିରେ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ଆସିଥିବା ଜନଗଣଙ୍କର ଉଲ୍ଲସିତ ସମାଗମ । ଉତ୍କଳ ସମ୍ମିଳନୀର ସଭ୍ୟଗଣ ବିଶେଷ ଆନନ୍ଦିତ । ଆନୁଷ୍ଠାନିକ ଭାବେ ଦୀର୍ଘ ୩୩ ବର୍ଷ ଆନ୍ଦୋଳନର ଶୁଭଙ୍କର ପରିଣାମରେ ସେମାନେ; ସେମାନଙ୍କ ଲକ୍ଷ୍ୟ ବିନ୍ଦୁ ହାତ ମୁଠାରେ । ସେମାନଙ୍କ ସମେତ ଅନ୍ୟ ଅନେକଙ୍କ ଆଖିରେ ଆନନ୍ଦାଶ୍ରୁ । ସେଇ ଅଶ୍ରୁରେ କେବଳ ଆନନ୍ଦର ହିଁ ରେଣୁ ଯୁକ୍ତ ନଥିବ ଥିବ ମଧ୍ୟ କିଛି କିଛି ଦୁଃଖ ଏବଂ ବେଦନାର ଫେଣ୍ଟାଫେଣ୍ଟି ମିଶ୍ରଣ । ଆଜି ଅନେକ ଓଡ଼ିଆ ଭାଇ ଓଡ଼ିଶା ବାହାରେ ରହିଗଲେ ଯେ !

ସେ ଦିନ ସନ୍ଧ୍ୟାରେ ନବ ଉତ୍କଳର ଜନକ ମହାରାଜା କୃଷ୍ଣଚନ୍ଦ୍ର ଏକ ବିରାଟ ସାଂଧ୍ୟ ମିଳନର ଆୟୋଜନ କରିଥିଲେ କଟକର ବାରବାଟୀ କିଲ୍ଲା ଭିତରେ । ସରକାରୀ ତଥା ବେସରକାରୀ ବ୍ୟକ୍ତିବୃନ୍ଦ ଥିଲେ ସେଇ ଗାର୍ଡେନ୍ ପାର୍ଟିର ଅତିଥି । ମହାରାଜାଙ୍କ ନିମନ୍ତ୍ରଣ ରକ୍ଷା କରି ମାନ୍ଦ୍ରାଜ ତଥା ବିହାର-ଓଡ଼ିଶା ସରକାରଙ୍କ ଅନେକ ପଦସ୍ଥ କର୍ମଚାରୀ ସେଥିରେ ଅଂଶ ଗ୍ରହଣ କରିଥିଲେ- ଅଂଶ ଗ୍ରହଣ କରିଥିଲେ ହଜାର ହଜାର ଅତିଥି । ହେଲେ ସେଠାରେ ଦୃଶ୍ୟମାନ



Ama Odisha pdf (aamaodisha@gmail.com)




ଓଡ଼ିଶାର ଗଡ଼ଜାତ ଅଞ୍ଚଳ



Ama Odisha pdf (aamaodisha@gmail.com)

ହୋଇନଥିଲେ ଓଡ଼ିଶାର କଂଗ୍ରେସୀ ନେତୃବର୍ଗ । ସେମାନଙ୍କର ନୈତିକ ସମର୍ଥନ ସବୁଥିରେ ରହିଥିଲେ ସୁଦ୍ଧା ଦଳର ନୀତିଗତ ନିଷ୍ପତ୍ତି- ୧୯୩୫ ଭାରତ ଶାସନ ଆଇନ ବର୍ଜନକୁ ସମ୍ମାନ ଦେଇ ସେମାନେ ସେଠାରେ ଉପସ୍ଥିତ ହୋଇନଥିଲେ । ସେଇ ଆଇନର ପ୍ରଥମ ରୂପାୟନ ହିଁ ଥିଲା ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ । ସେଇ ଉତ୍ସବ ଆୟୋଜନର ଜଣେ ଅଂଶୀଦାର ଡଃ ସତ୍ୟନାରାୟଣ ରାଜଗୁରୁଙ୍କ ସ୍ମୃତିରେ- "ପାରଳାଖେମୁଣ୍ଡି ମହାରାଜାଙ୍କ ପକ୍ଷରୁ ତାଙ୍କ ଦେବାନ୍ ଲକ୍ଷ୍ମୀନାରାୟଣ ପଟ୍ଟନାୟକ ଓ ଆମେ ସହଯୋଗୀମାନେ ସେଇ ପ୍ରଥମ ଉତ୍କଳ ଦିବସର ସମସ୍ତ ଆୟୋଜନ ଭାର ଗ୍ରହଣ କରିଥିଲୁ । ଓଡ଼ିଶାରୁ ଏବଂ ଓଡ଼ିଶା ବାହାରୁ ସହସ୍ରାଧିକ ଭଦ୍ର ବ୍ୟକ୍ତି ନିମନ୍ତ୍ରିତ ହୋଇ ଯୋଗ ଦେଇଥିଲେ ।" ମହାରାଜାଙ୍କ ସେହି ଉଦ୍ୟମ ହିଁ ପ୍ରମାଣିତ କରାଇ ଦେଇଥିଲା ତାହାଙ୍କର ମାନସିକ ପ୍ରସନ୍ନତା ।

ନବ ଗଠିତ ପ୍ରଦେଶରେ ନିର୍ବାଚିତ ପ୍ରତିନିଧି ସଭା ଗଠିତ ହେବା ପର୍ଯ୍ୟନ୍ତ- ୧୯୩୬ ଅପ୍ରେଲ ପହିଲାରୁ ୧୯୩୭ ମାର୍ଚ୍ଚ ୩୧ ପର୍ଯ୍ୟନ୍ତ, ଏକ ବର୍ଷର ଶାସନ ଭାର ପ୍ରତ୍ୟକ୍ଷ ଭାବରେ ଗଭର୍ଣ୍ଣରଙ୍କ ଅଧୀନରେ ହିଁ ରହିଥିଲା । ସେଥିପାଇଁ ତାହାଙ୍କର ଏକ ଉପଦେଷ୍ଟା ପରିଷଦ ଗଠିତ ହୋଇଥିଲା । ଉଭୟ ମାନ୍ଦ୍ରାଜ ଏବଂ ବିହାର-ଓଡ଼ିଶା ପ୍ରାଦେଶିକ ବିଧାନସଭା ପାଇଁ ଓଡ଼ିଶାରୁ ପ୍ରତିନିଧିତ୍ୱ କରୁଥିବା ସଭ୍ୟଗଣଙ୍କୁ ରାଜ୍ୟପାଳଙ୍କ ଉପଦେଷ୍ଟା ପରିଷଦରେ ଗ୍ରହଣ କରାଯାଇଥିଲା । ସେଇ ହିସାବରେ ପାରଳା ମହାରାଜା ମଧ୍ୟ ଥିଲେ ସେଇ ପରିଷଦର ଜଣେ ସଭ୍ୟ ।

ଉକ୍ତ ପରାମର୍ଶଦାତା ପରିଷଦର ପ୍ରଥମ ବୈଠକ ୧୯୩୬ ମଇ ୮ ତାରିଖ ଦିନ ପୁରୀ ରାଜଭବନରେ ଆୟୋଜିତ ହୋଇଥିଲା । ସେଥିରେ ଯୋଗଦେବା ପାଇଁ ମହାରାଜା ତତ୍‌ପୂର୍ବଦିନ ପାରଳାରୁ ବାହାରି ଆପଣା ଜମିଦାରି ପୁରୀର ଡେଲାଙ୍ଗରେ ପହଂଚିଥିଲେ । ତାହା ଡେଲାଙ୍ଗବାସୀଙ୍କ ପାଇଁ ଥିଲା ଏକ ଐତିହାସିକ ଘଟଣା । ଦୀର୍ଘ ଅତୀତରୁ ୧୮୮୫ ମସିହାରେ ଗଜପତି ଗୌରଚନ୍ଦ୍ର ଦେବ ଉକ୍ତ ଜମିଦାରି କ୍ରୟ କରିଥିଲେ ସୁଦ୍ଧା ଏବଂ ଏପର୍ଯ୍ୟନ୍ତ ପାରଳା ଜମିଦାରଙ୍କ ପ୍ରତ୍ୟକ୍ଷ ଶାସନାଧୀନ ଥିଲେ ସୁଦ୍ଧା ସେମାନଙ୍କ ପ୍ରତିନିଧି ରୂପେ ପରିଚାଳକଗଣ ହିଁ ନିଯୁକ୍ତ ହୋଇ ରାଜ୍ୟ ପରିଚାଳନା କରୁଥିଲେ । ସେଠାରେ ଅନେକ କାଳ ମେନେଜର ରୂପେ କାର୍ଯ୍ୟ କରିଥିଲେ ରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଦେବାନ୍ ଲକ୍ଷ୍ମୀ ନାରାୟଣ ପଟ୍ଟନାୟକ (ବିଜୁବାବୁଙ୍କ ପିତା) । ତେଣୁ ସେଠାରେ ସେତେବେଳେ ମହାରାଜାଙ୍କ ଉପସ୍ଥିତି ଥିଲା ଏକ ଐତିହାସିକ ଘଟଣା ।

ସେହିଭଳି ମଧ୍ୟ ଅନ୍ୟ ଏକ ଐତିହାସିକ ଘଟଣା ଥିଲା, ତତ୍ ପରଦିନ ସକାଳ ନିର୍ଦ୍ଧାରିତ ସମୟ ଦଶଟା ବେଳେ ପୁରୀ ରାଜଭବନରେ ଉପସ୍ଥାନ । ଦୀର୍ଘ ଅତୀତରେ, ପାରଳା ସିଂହାସନର ପ୍ରଥମ ରାଜା ସର୍ବଜ୍ଞ ଜଗନ୍ନାଥ ନାରାୟଣ ଦେବ ବୈଦେଶିକ ଶାସନକୁ ବରଦାସ୍ତ କରି ନପାରି ୧୭୬୦ ମସିହାରେ ଖୋର୍ଦ୍ଧା ଆକ୍ରମଣ କରିଥିଲେ, ତଡିଦେଇଥିଲେ ମରହଟ୍ଟାମାନଙ୍କୁ । କିନ୍ତୁ ପରେ ପରେ ସେଇ ବୈଦେଶିକ ଶକ୍ତିକୁ ପାଥେୟ କରି ଖୋର୍ଦ୍ଧା ରାଜାଙ୍କ ସେନାନୀ



Ama Odisha pdf (aamaodisha@gmail.com)

ପାରଳାବାହିନୀକୁ ପଛକୁ ହଟାଇ ଦେଇଥିଲେ । ସେହିଦିନଠାରୁ ପୁରୀ ଏବଂ ପାରଳା ମଧ୍ୟରେ ତିକ୍ତତା ବୃଦ୍ଧି ପାଇଥିଲା । ତତ୍‌ପରଠାରୁ ପାରଳା ରାଜାଗଣ ଆଉ ପୁରୀ କିମ୍ବା ଶ୍ରୀମନ୍ଦିରକୁ ଯାଇ ନଥିଲେ ଅଭିମାନ କରି । ସେଇ ଦୀର୍ଘକାଳ ଅନ୍ତରରେ ପାରଳା ଗଜପତି ଶ୍ରୀକ୍ଷେତ୍ରରେ ପାଦ ପକାଇଥିଲେ । କିନ୍ତୁ ଅଭିମାନୀ ରାଜା ସିଧାସଳଖ ରାଜଭବନ ଯାଇ ପରାମର୍ଶଦାତା ବୈଠକରେ ଯୋଗଦେଇ ପୁଣି ଫେରି ଆସିଥିଲେ । ତତ୍ ପରବର୍ତ୍ତୀ ବୈଠକ ସେହି ବର୍ଷ ଅକ୍ଟୋବର ପାଞ୍ଚ ତାରିଖରେ ଅନୁଷ୍ଠିତ ହୋଇଥିଲେ ସୁଦ୍ଧା ମହାରାଜା କୃଷ୍ଣଚନ୍ଦ୍ର ପାରଳାରେ ଅନୁପସ୍ଥିତ ଥିବା କାରଣରୁ ସେଥିରେ ଯୋଗଦେଇ ପାରିନଥିଲେ ।

ସ୍ୱତନ୍ତ୍ର ପ୍ରଦେଶ ରୂପେ ଓଡ଼ିଶା ଗଠିତ ହେବା ପରେ ପରେ ଏଠାରେ ଦଳୀୟ ରାଜନୀତିର ପ୍ରଭାବ ବେଶ୍ ଅନୁଭୂତ ହୋଇଥିଲା । ମହାରାଜା ଏଠାରେ ଏକ ନୂତନ ରାଜନୈତିକ ଦଳ "ଓଡ଼ିଶା ଜାତୀୟ ଦଳ" ଗଠନ କରିଥିଲେ । ତାହାର ସଭାପତି ସେ ନିଜେ ହୋଇଥିବା ବେଳେ ରାଜ୍ୟର ଜଣେ ବିଶିଷ୍ଟ ଓକିଲ ତଥା ଓଡ଼ିଶା ଆନ୍ଦୋଳନର ସମର୍ପିତ ନେତା ଶ୍ରୀ ଭୁବନାନନ୍ଦ ଦାସ ଥିଲେ ତାହାର ସଂପାଦକ । ଜାତୀୟ ଭାବାପନ୍ନ ଯେଉଁ ନେତୃବର୍ଗ ଅତୀତରେ କଂଗ୍ରେସ ସହିତ ଯୋଗ ନଦେଇ ବିଶେଷ କରି ଦେଶ ମିଶ୍ରଣ ଆନ୍ଦୋଳନ ସହିତ ସଂଶ୍ଳିଷ୍ଟ ରହିଥିଲେ ଏବଂ ମହାରାଜାଙ୍କ ନେତୃତ୍ୱକୁ ଗ୍ରହଣ କରିଥିଲେ, ପ୍ରାୟତଃ ସେଇ ଓଡ଼ିଆ ସ୍ୱାଭୀମାନିଗଣ ଏଇ ନୂତନ ଦଳରେ ଯୋଗ ଦେଇଥିଲେ ।

ଓଡ଼ିଶାରେ ନୂତନ ବିଧାନସଭା ଗଠିତ ହେବାର ଅଳ୍ପ କିଛି କାଳ ପୂର୍ବରୁ ଜିଲ୍ଲାବୋର୍ଡ ସବୁ ଗଠିତ ହୋଇ ସେଥିପାଇଁ ନିର୍ବାଚନ ହୋଇଥିଲା ୧୯୩୬ ଡିସେମ୍ବର ୧୯ ତାରିଖ ଦିନ । ଗଞ୍ଜାମ ଜିଲ୍ଲାରେ, ଓଡ଼ିଶା ଜାତୀୟ ଦଳର ପ୍ରାର୍ଥୀ ରୂପେ ମହାରାଜା କୃଷ୍ଣଚନ୍ଦ୍ର ନିର୍ବାଚନରେ ଅଂଶ ଗ୍ରହଣ କରି ବିପୁଳ ଭୋଟରେ ବିଜୟୀ ହୋଇଥିଲେ । ହେଲେ ୨୭ଜଣ ସଭ୍ୟ ବିଶିଷ୍ଟ ଜିଲ୍ଲାବୋର୍ଡରେ ମାତ୍ର ଚାରୋଟି ଆସନରେ ଜାତୀୟ ଦଳର ସଭ୍ୟଗଣ ନିର୍ବାଚିତ ହୋଇଥିଲେ । ତଥାପି ସେଠାରେ ସଂଖ୍ୟା ଗରିଷ୍ଠତା ହାସଲ କରିଥିବା କଂଗ୍ରେସର ସଭ୍ୟଗଣ ମହାରାଜାଙ୍କୁ ହିଁ ସମର୍ଥନ କରିଥିଲେ ତାହାର ସଭାପତି ପଦବୀ ଲାଗି । ଦଳମତ ନିର୍ବିଶେଷରେ ସେମାନଙ୍କର ଦୃଢ଼ ହୃଦ୍‌ବୋଧ ହୋଇଥିଲା ଯେ ତାଙ୍କର ନେତୃତ୍ୱରେ ହିଁ ଗଞ୍ଜାମର ଉନ୍ନତି ସମ୍ଭବପର । ଜିଲ୍ଲାର ଶିକ୍ଷା, ସ୍ୱାସ୍ଥ୍ୟ, କୃଷି, ରାସ୍ତାଘାଟ ନିର୍ମାଣ ଇତ୍ୟାଦି କ୍ଷେତ୍ରରେ ଯଥାର୍ଥରେ ବିଶେଷ ଉନ୍ନତି ସାଧିତ ହୋଇଥିଲା ତାଙ୍କରି ଅମଳରେ । ସଭାପତି ରୂପେ ନିର୍ବାଚିତ ହେବା ପରେ ପରେ ଦଳମତର ଊର୍ଦ୍ଧ୍ୱକୁ ଚାଲିଯାଇ ସେ ଯଥାଯୋଗ୍ୟ ବ୍ୟକ୍ତିଙ୍କୁ ଦାୟିତ୍ୱ ଦେଉଥିଲେ ବିଭିନ୍ନ କାର୍ଯ୍ୟ ସମ୍ପାଦନ ପାଇଁ । ସେତେବେଳେ ଆପଣାର ରାଜନୈତିକ ଦଳ ତାଙ୍କ ପାଇଁ କୌଣସି ପ୍ରଭାବ ରଖିନଥିଲା ।

ସେତିକିବେଳେ ଅନୁଷ୍ଠିତ ହୋଇଥିଲା ରାଜ୍ୟର ପ୍ରଥମ ସାଧାରଣ ନିର୍ବାଚନ । ଏହା ୧୯୩୭ ଜାନୁଆରି ୧୮ରୁ ଆରମ୍ଭ ହୋଇ ୨୩ରେ ଶେଷ ହୋଇଥିଲା । ଓଡ଼ିଶା ବିଧାନସଭା ପାଇଁ



Ama Odisha pdf (aamaodisha@gmail.com)

ନିର୍ଦ୍ଧାରିତ ୬୦ଟି ଆସନରୁ ୫୬ଜଣ ନିର୍ବାଚିତ ହେବାକୁ ଥିବାବେଳେ ଚାରୋଟି ଆସନ ରାଜ୍ୟପାଳଙ୍କ ମନୋନୀତ ପ୍ରତିନିଧିମାନଙ୍କ ପାଇଁ ବ୍ୟବସ୍ଥିତ ଥିଲା । ନିର୍ବାଚିତ ପ୍ରତିନିଧିଙ୍କ ମଧ୍ୟରୁ ମୁସଲମାନ ସଂପ୍ରଦାୟ ପାଇଁ ଚାରୋଟି, ଖ୍ରୀଷ୍ଟିୟାନ୍‌ଙ୍କ ପାଇଁ ଗୋଟିଏ, ଜମିଦାର-ବାଣିଜ୍ୟ ସଭା ଏବଂ ମହିଳାମାନଙ୍କ ପାଇଁ ଦୁଇଗୋଟି ଲେଖାଏଁ ଏବଂ ଶ୍ରମିକମାନଙ୍କ ପାଇଁ ଗୋଟିଏ ଆସନ ସଂରକ୍ଷିତ ହୋଇଥିଲା । ଅବଶିଷ୍ଟ ଥିଲା ସାଧାରଣ ଆସନ । ସ୍ମରଣ ରଖାଯାଇ ପାରେ ଯେ ସେତେବେଳେ ସାଧାରଣ ସାବାଳକ ଭୋଟ ପ୍ରଥା ନଥିଲା କିମ୍ବା ପୁଣି ଓଡ଼ିଶାର ୨୪ ଗଡ଼ଜାତର ପ୍ରଜାଗଣ ମଧ୍ୟ ସାଧାରଣ ଶାସନ ସହ ସଂଯୁକ୍ତ ନଥିଲେ । ଭୋଟଦାତାଙ୍କ ଯୋଗ୍ୟତା ଥିଲା ମାଟ୍ରିକ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିବା ତଥା ନିର୍ଦ୍ଧାରିତ ପରିମାଣର ଟିକସ ଦାଖଲ କରୁଥିବା ବ୍ୟକ୍ତି ବିଶେଷ ଏବଂ ସବୁ ଆୟକରଦାତା ।

ସେହି ନିର୍ବାଚନରେ ମହାରାଜା ପାରଳାଖେମୁଣ୍ଡି ଆସନରୁ ବିପୁଳ ଭୋଟରେ ନିର୍ବାଚିତ ହୋଇଥିଲେ ସୁଦ୍ଧା ତାଙ୍କ ଦଳ ପାଇଥିଲା ମାତ୍ର ଚାରୋଟି ଆସନ । ମିଳିତ ଭାବରେ ଲଢ଼ିଥିବା ଯୋଗୁଁ ଅନ୍ୟ ଦୁଇଜଣ ନିର୍ବାଚିତ ସଭ୍ୟ ମହାରାଜାଙ୍କ ସହିତ ରହିଥିଲେ । ହେଲେ ପଣ୍ଡିତ ନୀଳକଣ୍ଠଙ୍କ ନେତୃତ୍ୱରେ କଂଗ୍ରେସ ଦଳ ବିଧାନସଭାରେ ୩୭ଟି ଆସନ ଲାଭ କରିଥିଲା । ୧୯୩୫ ଭାରତ ଶାସନ ଆଇନ ଅନୁଯାୟୀ ହୋଇଥିବା ସେହି ନିର୍ବାଚନରେ ଅଂଶ ଗ୍ରହଣ କରିଥିଲେ ସୁଦ୍ଧା ତାହାକୁ ବର୍ଜନ କରୁଥିବା କଂଗ୍ରେସ ଦଳ ପ୍ରାୟ ସବୁ ରାଜ୍ୟରେ ସେଭଳି ପ୍ରଭୂତ ବିଜୟ ହାସଲ କରି ମଧ୍ୟ କେଉଁଠାରେ ବି ମନ୍ତ୍ରିମଣ୍ଡଳ ଗଠନ କରିବ ନାହିଁ ବୋଲି ସରକାରଙ୍କୁ ଜଣାଇ ଦେଇଥିଲା । ସେଇ ସ୍ଥିତି ମଧ୍ୟ ଥିଲା ନବଗଠିତ ଓଡ଼ିଶାରେ । ତତ୍‌କାଳୀନ କଂଗ୍ରେସ ସଭାପତି ଡଃ ହରେକୃଷ୍ଣ ମହତାବ ସେହି ବିଷୟ ଗଭର୍ଣ୍ଣରଙ୍କୁ ଜଣାଇ ଦେଇଥିଲେ । ଗାନ୍ଧିଜୀ ବଡ଼ଲାଟଙ୍କ ନିକଟରେ ଦାବି ରଖିଥିଲେ ଯେ ରାଜ୍ୟର ଗଭର୍ଣ୍ଣରଙ୍କ ହାତରେ ପ୍ରାୟ ସବୁ କ୍ଷମତା କେନ୍ଦ୍ରୀଭୂତ ହୋଇଥିବା ଯୋଗୁଁ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠନ ପାଇଁ ଆଗ୍ରହୀ ନୁହେ । କିନ୍ତୁ ନିର୍ବାଚନରେ ଲଢ଼ି କଂଗ୍ରେସ ଦେଶରେ ତାହାର ଲୋକପ୍ରିୟତା କେବଳ ପ୍ରମାଣିତ କରାଇ ଦେଇଛି । ଗଭର୍ଣ୍ଣରମାନେ ସେମାନଙ୍କ ସ୍ୱତନ୍ତ୍ର କ୍ଷମତା ପ୍ରୟୋଗ କରିବେ ନାହିଁ ବୋଲି ପ୍ରତିଶ୍ରୁତି ନ ମିଳିବା ଯାଏଁ କେଉଁଠାରେ ମଧ୍ୟ କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠନ କରିବ ନାହିଁ ।

ତତ୍‌ପରିଣାମତଃ ଗଭର୍ଣ୍ଣର ଓଡ଼ିଶାରେ ମନ୍ତ୍ରିମଣ୍ଡଳ ଗଠନ ପାଇଁ ନିମନ୍ତ୍ରଣ ଜଣାଇଥିଲେ ପାରଳା ମହାରାଜାଙ୍କୁ । ଦଳୀୟ ବିଚାର ବିମର୍ଶ ପରେ ମହାରାଜା କୃଷ୍ଣଚନ୍ଦ୍ର ନୂତନ ଓଡ଼ିଶାର ଦ୍ୱିତୀୟ ଜନ୍ମ ଦିନରେ ପ୍ରଥମ ମନ୍ତ୍ରିମଣ୍ଡଳ ଗଠନ କରିଥିଲେ । ସେ ନିଜେ ପ୍ରଧାନମନ୍ତ୍ରୀ ହୋଇଥିବା ବେଳେ ତାଙ୍କ ସହଯୋଗୀ ହିସାବରେ ଗ୍ରହଣ କରିଥିଲେ ପୁରୀର ଓକିଲ ମୌଲବୀ ଲତିଫର ରହେମନ୍ ଏବଂ ବ୍ରହ୍ମପୁରର ଓକିଲ ତଥା ଛତ୍ରପୁର ସଭ୍ୟ ମାନଧାତା ଗୋରାଚାନ୍ଦ ପଟ୍ଟନାୟକଙ୍କୁ ।



Ama Odisha pdf (aamaodisha@gmail.com)

ସେତେବେଳେ ମନ୍ତ୍ରିମଣ୍ଡଳର ମୁଖ୍ୟଙ୍କୁ ପ୍ରଧାନମନ୍ତ୍ରୀ ରୂପେ ଆଖ୍ୟାୟିତ କରାଯାଉଥିବା ଯୋଗୁଁ ସେ ଥିଲେ ଓଡ଼ିଶାର ପ୍ରଥମ ପ୍ରଧାନମନ୍ତ୍ରୀ ।

ପ୍ରଥମ ପ୍ରଧାନମନ୍ତ୍ରୀ ପଦବୀରେ ଅଧିଷ୍ଠିତ ହେବା ପରେ ପରେ ଗଜପତି କୃଷ୍ଣଚନ୍ଦ୍ରଙ୍କର ପ୍ରଥମ କାର୍ଯ୍ୟଥିଲା ପୁରୀ ଶ୍ରୀମନ୍ଦିର ପରିଦର୍ଶନ; ତାଙ୍କର ଆରାଧଦେବ ଶ୍ରୀଜଗନ୍ନାଥଙ୍କ କୃପାଭିକ୍ଷା । ଦୀର୍ଘ ଅତୀତରୁ ବିଗତ କେତେ ଶତାବ୍ଦୀ ଧରି ପାରଳା ରାଜବଂଶ ଶ୍ରୀମନ୍ଦିର ଦର୍ଶନରେ ଯାଇନଥିଲେ । ତାର ପ୍ରଚ୍ଛଦ ପଟରେ ଥିଲା ଏକ ଆହତ ଅଭିମାନର ସ୍ୱଷ୍ଟ ଚିତ୍ର; ଏକ ଅତ୍ୟନ୍ତ ଶିଥିଳ ଐତିହାସିକ ଯୁକ୍ତି !

ଶ୍ରୀକ୍ଷେତ୍ର ପୁରୀର ଶ୍ରୀମନ୍ଦିରକୁ ନବକଳେବର ଯୁକ୍ତ କରିଥିବା ବିଖ୍ୟାତ ଗଙ୍ଗ ନରପତିଗଣଙ୍କ ସନ୍ତକ ଥିଲେ ପାରଳାର ଖେମଣ୍ଡି ରାଜବଂଶ । ସେମାନେ ଦୀର୍ଘ ଅତୀତରେ ବିଭକ୍ତ ହୋଇଥିବା ଆତ୍ରେୟ ଗୋତ୍ରୀ ଗଙ୍ଗବଂଶର ଏକ ରକ୍ତଧାରା । କିନ୍ତୁ ତତ୍‌ପର ସମୟରେ ପ୍ରତିଷ୍ଠିତ ହୋଇଥିଲେ ସୂର୍ଯ୍ୟବଂଶୀ ରାଜା କପିଳେନ୍ଦ୍ରଦେବ । ଆପାତତଃ କପିଳେନ୍ଦ୍ର ଦେବ ହିଁ ସୂର୍ଯ୍ୟବଂଶ ପ୍ରତିଷ୍ଠା କରିଥିଲେ । ତାଙ୍କରି ଉତ୍ତରାଧିକାରୀ ଭାବେ ଯେତେବେଳେ ଦାସୀ ପୁତ୍ର ପୁରୁଷୋତ୍ତମ ଦେବ ସିଂହାସନ ଆରୋହଣ କରିଥିଲେ, ସେତେବେଳେ କପିଳେନ୍ଦ୍ରଦେବଙ୍କ ପାଟରାଣୀ ସମ୍ଭୂତ ଅଷ୍ଟାଦଶପୁତ୍ର ଓଡ଼ିଶାର ବିଭିନ୍ନ ପ୍ରାନ୍ତକୁ ଚାଲି ଯାଇଥିଲେ । ଜ୍ୟେଷ୍ଠ କଳାହମ୍ବିର ଓଡ଼ିଶାର ଦାକ୍ଷିଣାତ୍ୟରେ ମହେନ୍ଦ୍ର ଗିରି ଅଞ୍ଚଳର କୌଣସି ପ୍ରାନ୍ତରେ ସମ୍ଭବତଃ ଆଶ୍ରୟ ନେଇଥିଲେ ଏବଂ ପର ସମୟରେ ଖେମଣ୍ଡି ରାଜ୍ୟର ପ୍ରତିଷ୍ଠାତା ରୂପେ ଲୋକମୁଖରେ ପରିଗଣିତ ହୋଇଥିଲେ । ଏଥିରେ ସାମାନ୍ୟତମ ଐତିହାସିକ ସତ୍ୟତା ନଥିଲେ ସୁଦ୍ଧା ପାରଳା ରାଜବଂଶ ଜ୍ୟେଷ୍ଠ ଦାୟାଦର ଅଭିମାନ ନେଇ କନିଷ୍ଠ-ପୁରୀ ଗଜପତିଙ୍କର ଆତିଥ୍ୟ ଗ୍ରହଣ ପାଇଁ କୁଣ୍ଠିତ ଥିଲେ ପାରଂପରିକ ଭାବେ । ଜଗତର ନାଥ ଶ୍ରୀଜଗନ୍ନାଥଙ୍କର ଯେ ପ୍ରଥମ ସେବକ ହେବାର କଥା ସେ କିଭଳି ଭାବରେ ସେଇ ସମ୍ମାନଜନକ ପଦରେ ଅନୁଜମାନଙ୍କୁ ଗ୍ରହଣ କରିପାରବ !

ସେଇ କପୋଳକଳ୍ପିତ କାହାଣୀ ହିଁ ଥିଲା ବଂଶାନୁକ୍ରମେ ପାରଳା ରାଜାଗଣ ଶ୍ରୀମନ୍ଦିର ପରିଦର୍ଶନରେ ନଯିବାର ମୁଖ୍ୟ କାରଣ । ପୁଣି ତତ୍‌ସହିତ ଯୋଗ ହୋଇଥିଲା ସର୍ବଜ୍ଞ ଜଗନ୍ନାଥ ଦେବଙ୍କର ଖୋର୍ଦ୍ଧା/ପୁରୀ ଆକ୍ରମଣ ଏବଂ ପୁଣି ଗୌର ଗଜପତିଙ୍କ ଦ୍ୱାରା ପୁରୀ ରାଜାଙ୍କ ଅଧୀନସ୍ଥ ଡେଲାଙ୍ଗ ଜମିଦାରି କ୍ରୟ ଘଟଣା । ଉଭୟ ରାଜ ପରିବାର ପାଇଁ ସମୟ କ୍ରମେ ଏହି ସବୁ ଘଟଣାବଳୀ ତିକ୍ତତା ସୃଷ୍ଟି କରିଥିଲା ।

ତେବେ ସମୟର ରଥଚକ ତଳେ ଦେଶର ରାଜନୈତିକ ଦୃଶ୍ୟପଟ ସମ୍ପୂର୍ଣ୍ଣ ପରିବର୍ତ୍ତନ ହୋଇଯାଇଥିଲା । ପୁରାତନ ରାଜ୍ୟ ଏବଂ ରାଜାର ମର୍ଯ୍ୟାଦା କେବଳ ନାମକୁ ମାତ୍ର ରହିଥିଲା କହିଲେ ଚଳେ । ସେଭଳି ସ୍ଥିତିରେ ଗଜପତି କୃଷ୍ଣଚନ୍ଦ୍ର ଚାହିଁଥିଲେ ସେଇ ସବୁର ଅବସାନ ହେଉ । ସେ ପୁରୀ ଗଜପତି ମହାରାଜା ରାମଚନ୍ଦ୍ର ଦେବଙ୍କ ନିକଟକୁ ସମ୍ବାଦ ପଠାଇଥିଲେ ଯେ



Ama Odisha pdf (aamaodisha@gmail.com)

ସେ ଶ୍ରୀମନ୍ଦିରରେ ଶ୍ରୀଜୀଉମାନଙ୍କୁ ଦର୍ଶନ କରିବାକୁ ଇଚ୍ଛୁକ । ସେଇ ପ୍ରସ୍ତାବକୁ ସାଦରରେ ଗ୍ରହଣ କରିଥିଲେ ପୁରୀ ଗଜପତି । ସେଥିପାଇଁ କାର୍ଯ୍ୟସୂଚୀ ନିର୍ଦ୍ଧାରିତ ହୋଇଥିଲା ।

ମହା ଆଡମ୍ବର ପୂର୍ଣ୍ଣ ଥାଟବାଟ ନେଇ ପୁରୀ ଗଜପତି ଅଠରନଳା ନିକଟରେ ଅପେକ୍ଷା କରିଥିଲେ ପାରଳା ଗଜପତିଙ୍କୁ । ସେ ସେଠାରେ ପହଂଚିବା ପରେ ଭବ୍ୟ ରାଜକୀୟ ସ୍ୱାଗତ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା । ଶ୍ରୀଜଗନ୍ନାଥଙ୍କ ପ୍ରଥମ ସେବକ ତାହାଙ୍କୁ ଶ୍ରୀମନ୍ଦିର ପରିଦର୍ଶନ ପାଇଁ ନିମନ୍ତ୍ରଣ ଜଣାଇବା ସଂଗେ ସଂଗେ ପାଛୋଟି ନେଇଥିଲେ ସେ ପର୍ଯ୍ୟନ୍ତ । ସେହିଭଳି ରାଜକୀୟ ସମ୍ବର୍ଦ୍ଧନା ଗଙ୍ଗବଂଶୀ ପାରଳା ମହାରାଜାଙ୍କ ବ୍ୟତୀତ ଅନ୍ୟ କୌଣସି ରାଜାଙ୍କୁ ଦିଆଯିବାର ନଜିର ନଥିଲା । କାରଣ ସେଇ ବଂଶର ରାଜନ୍ୟବର୍ଗ ପରା ଆଧୁନିକ ଶ୍ରୀମନ୍ଦିରର ପ୍ରତିଷ୍ଠାତା ।

ଗଜପତି କୃଷ୍ଣଚନ୍ଦ୍ରଙ୍କ ଶ୍ରୀଜୀଉମାନଙ୍କ ଦର୍ଶନ ଲାଗି ଶ୍ରୀମନ୍ଦିର ଶୋଧ କରାଯାଇଥିଲା । ସେବକଗଣ ତାହାଙ୍କୁ ରାଜକୀୟ ସମ୍ମାନ ଅର୍ପଣ କରିଥିଲେ । ଶ୍ରୀମନ୍ଦିରରେ ଠାକୁର ଦର୍ଶନ ଶେଷ କରି ଗଙ୍ଗ ରାଜବଂଶୀୟ ପରଂପରା କ୍ରମେ ମହାରାଜା ରତ୍ନ ସିଂହାସନ ଉପରେ ସ୍ୱର୍ଣ୍ଣମୋହର ଅର୍ପଣ କରିଥିଲେ ।

ସେଇ ଘଟଣା ଉଭୟ ରାଜପରିବାର ମଧ୍ୟରେ ମତାନ୍ତରର ପରିସମାପ୍ତି ଘଟାଇଥିଲା ଯେମିତି ।

ତାପରେ ଆରମ୍ଭ ହୋଇଥିଲା ରାଜ୍ୟ ଶାସନ । ମନ୍ତ୍ରୀମାନେ ମାସିକ ଏକ ହଜାର ଟଙ୍କା ଦରମାରେ ନୂତନ ରାଜ୍ୟର ଉନ୍ନତି କଳ୍ପେ କାର୍ଯ୍ୟ ଆରମ୍ଭ କରିଥିଲେ । କିନ୍ତୁ ଅତି ସ୍ୱଳ୍ପ ସଂଖ୍ୟକ ସଭ୍ୟଙ୍କ ସମର୍ଥନରେ ମହାରାଜା ମନ୍ତ୍ରିମଣ୍ଡଳ ଗଠନ କରିଥିବାରୁ କଂଗ୍ରେସ ଦଳର ସଭ୍ୟଗଣ ବିଭିନ୍ନ ପ୍ରକାରର ସମାଲୋଚନା କରିଥିଲେ । ଏକ ପ୍ରେସ୍ ଇସ୍ତାହାରରେ ମହାରାଜା ସ୍ପଷ୍ଟ ଉଲ୍ଲେଖ କରିଥିଲେ ଯେ ସରକାରଙ୍କ ଉନ୍ନତିମୂଳକ ପଦକ୍ଷେପଗୁଡ଼ିକରେ ଗଭର୍ଣ୍ଣର ଯଦି କେତେବେଳେ ହସ୍ତକ୍ଷେପ କରନ୍ତି ତାହେଲେ ମନ୍ତ୍ରିମଣ୍ଡଳ ସଂଗେ ସଂଗେ ଇସ୍ତଫା ଦେବା ପାଇଁ କୁଣ୍ଠିତ ହେବନାହିଁ । ତେଣୁ ରାଜ୍ୟ ଏବଂ ରାଜ୍ୟବାସୀଙ୍କ ସମୂହସ୍ୱାର୍ଥ ଦୃଷ୍ଟିରୁ ସମସ୍ତେ ସରକାରଙ୍କ ସହ ସହଯୋଗ କରିବା ଆବଶ୍ୟକ । ସେ ନିଜେ ମଧ୍ୟ ଜନଗଣଙ୍କ ସୁବିଧା ଅସୁବିଧା ସବୁର ପ୍ରତ୍ୟକ୍ଷ ଅନୁଭୂତି ଅର୍ଜନ ପାଇଁ ଉଦ୍ୟମ କରିଥିଲେ; ଉଦ୍ୟମ ଆରମ୍ଭ କରିଥିଲେ ରାଜ୍ୟରେ ଶିକ୍ଷାର ବିସ୍ତାର ପାଇଁ ।

ତେବେ ଭାରତୀୟ ରାଜନୀତିକ ଦୃଶ୍ୟପଟ ପରିବର୍ତ୍ତିତ ହୋଇଥିଲା ଗାନ୍ଧି, ନେହେରୁ ତଥା ପ୍ରମୁଖ ରାଜନେତାଙ୍କ ସହିତ ବଡ଼ଲାଟଙ୍କ ଘନ ଘନ ଆଲୋଚନାଯୋଗୁଁ । ସେମାନଙ୍କ ସହିତ ବୁଝାମଣା ହେବା ପରେ ରାଜ୍ୟଗୁଡ଼ିକରେ ଶାସନ ଭାର ଗ୍ରହଣ କରିବା ପାଇଁ କଂଗ୍ରେସ ସମ୍ମତ ହୋଇଥିଲା । ପରିଣାମତଃ ପାରଳା ମହାରାଜା ୧୯୩୭ ମସିହା ଜୁଲାଇ ୧୩ ତାରିଖ ଦିନ ଆପଣାର ଇସ୍ତଫା ରାଜ୍ୟପାଳଙ୍କୁ ଅର୍ପଣ କରି ଦେଇଥିଲେ । ଆପାତତଃ ନୂତନ ରାଜ୍ୟରେ ପ୍ରଥମ ମନ୍ତ୍ରିମଣ୍ଡଳର ଆୟୁଷ ଥିଲା ମାତ୍ର ସାଢ଼େ ତିନିମାସ ।



Ama Odisha pdf (aamaodisha@gmail.com)

ତାଙ୍କ ପରେ ପରେ ରାଜ୍ୟର ଦ୍ୱିତୀୟ ପ୍ରଧାନ ମନ୍ତ୍ରୀ ରୂପେ ସଂଖ୍ୟା ଗରିଷ୍ଠ କଂଗ୍ରେସ ଦଳରୁ ଓଡ଼ିଶା ବିଧାନସଭାରେ ନେତୃତ୍ୱ ନେଉଥିବା ଶ୍ରୀ ବିଶ୍ୱନାଥ ଦାଶ ଜୁଲାଇ ୧୯ ତାରିଖ ଦିନ ମନ୍ତ୍ରିମଣ୍ଡଳର ଦାୟିତ୍ୱ ଗ୍ରହଣ କରିଥିଲେ । ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ ଏବଂ ବୋଧରାମ ଦୁବେ ଥିଲେ ତାହାଙ୍କର ସହକର୍ମୀ ମନ୍ତ୍ରୀ । ସେହି ମନ୍ତ୍ରିମଣ୍ଡଳ ପ୍ରାୟ ଦୁଇ ବର୍ଷ ତିନି ମାସ ପାଇଁ କ୍ଷମତାରେ ରହିଥିଲା । ୧୯୩୯ ନଭେମ୍ବର ଚାରି ତାରିଖ ଦିନ ସେ ଇସ୍ତଫା ଦେଇଥିଲେ ଦେଶର ଅନ୍ୟାନ୍ୟ ପ୍ରାଦେଶିକ ମନ୍ତ୍ରିମଣ୍ଡଳଙ୍କ ସହ ସମତାଳରେ ଗତି କରି । ତା'ର ଦୁଇ ଦିନ ପରେ ସେଇ ଇସ୍ତଫା ଗୃହୀତ ହୋଇଥିଲା । ୧୯୩୯ ସେପ୍ଟେମ୍ବରରେ ଆରମ୍ଭ ହୋଇଥିବା ଦ୍ୱିତୀୟ ବିଶ୍ୱଯୁଦ୍ଧରେ ସହଯୋଗ ନେଇ ଇଂରେଜ ସରକାରଙ୍କ ମନୋମୁଖୀ କାର୍ଯ୍ୟକଳାପ ଥିଲା ତାହାର ପ୍ରମୁଖ କାରଣ ।

ପୃଥିବୀରେ ଦ୍ୱିତୀୟ ବିଶ୍ୱଯୁଦ୍ଧର ଘନଘଟା- ଭାରତରେ ତା'ର ପ୍ରତିଫଳନ; ଇଂଲଣ୍ଡ ବିରୁଦ୍ଧରେ ଜର୍ମାନୀ ଓ ଜାପାନ୍, ଭାରତୀୟ ଜାତୀୟ କଂଗ୍ରେସରେ ଭବିଷ୍ୟତ କାର୍ଯ୍ୟପନ୍ଥା ନେଇ ବାଦ-ପ୍ରତିବାଦ, ନେତାଜୀଙ୍କ କେନ୍ଦ୍ରମଞ୍ଚରେ ଉପସ୍ଥାନ ଓ ଅପସାରଣ, କଂଗ୍ରେସ ଦଳ ମଧ୍ୟରେ ସ୍ୱରାଜ୍ୟ ଦଳ ଗଠନ, ଫରୱାର୍ଡ ବ୍ଲକ୍‌ର ଉଦ୍‌ଭବ, ଆସାମ-ପଶ୍ଚିମବଙ୍ଗ-ବିହାର ଓ ଓଡ଼ିଶାରେ ମନ୍ତ୍ରିମଣ୍ଡଳ ଗଠନ ପାଇଁ ନେତାଜୀଙ୍କ ଉଦ୍ୟମ-ଏଭଳି ପରିସ୍ଥିତି ଭିତରେ ଓଡ଼ିଶାର ରାଜନୀତିକ ଦୃଶ୍ୟପଟ ସକ୍ରିୟ ହୋଇ ଉଠିଥିଲା ୧୯୪୧ ମସିହାର ଶେଷ ବେଳକୁ । ଓଡ଼ିଶାରେ ମନ୍ତ୍ରିମଣ୍ଡଳଟିଏ ଗଠିତ ହେଲେ ବିଦ୍ରୋହୀ କଂଗ୍ରେସ ବିଧାୟକଗଣ ସମର୍ଥନ ଦେବାପାଇଁ ଆଗେଇ ଆସିଥିଲେ । ତେଣୁ ଏକ ମିଳିତ ମନ୍ତ୍ରିମଣ୍ଡଳ ଗଠନ ସପକ୍ଷରେ ଗୁରୁତ୍ୱ ଦିଆଯାଇଥିଲା । ସେତିକି ବେଳେ ପ୍ରସ୍ତାବ ଉଠିଥିଲା ଯେ ସେହିଭଳି ମନ୍ତ୍ରିମଣ୍ଡଳଟିଏ ପାରଳା ମହାରାଜାଙ୍କ ନେତୃତ୍ୱରେ ଗଠିତ ହେଉ । ସେହି ପ୍ରସ୍ତାବ ସମସ୍ତଙ୍କ ଦ୍ୱାରା ଗୃହୀତ ହୋଇଥିଲା ।

ସେହି କ୍ରମରେ ୧୯୪୧ ନଭେମ୍ବର ୨୪ ତାରିଖ ଦିନ ମହାରାଜା କୃଷ୍ଣଚନ୍ଦ୍ର ପୁଣି ଥରେ ମନ୍ତ୍ରିମଣ୍ଡଳ ଗଠନ କରିଥିଲେ । ଏଥର ସହଯୋଗୀ ରୂପେ ପଣ୍ଡିତ ଗୋଦାବରୀଶ ମିଶ୍ର ଏବଂ ମୌଲବୀ ଶୋଭନ ଖାଁଙ୍କୁ ଗ୍ରହଣ କରିଥିଲେ । ବିଧାନସଭାର ସଂପାଦକ ରୂପେ ନିଯୁକ୍ତ ହୋଇଥିଲେ ପ୍ୟାରୀଶଙ୍କର ରାୟ ।

ସେତେବେଳକୁ ସାର୍ ହଥର୍ଣ୍ଣ ଲୁଇସ୍ ଥିଲେ ଓଡ଼ିଶାର ଗଭର୍ଣ୍ଣର (୧୯୪୧-୪୬) ମନ୍ତ୍ରିମଣ୍ଡଳ ଗଠନରେ ସଂତୋଷ ପ୍ରକାଶ କରି ସେ ମତବ୍ୟକ୍ତ କରିଥିଲେ ଯେ ବ୍ରିଟିଶ୍ ରାଜତନ୍ତ୍ର ତଥା ଭାରତ ପାଇଁ ଏକ ପରମ ସଂକଟ ସମୟରେ "ଓଡ଼ିଶାର ଶାସନ ଭାର ଜଣେ ଅତି ଯଥାର୍ଥ ବ୍ୟକ୍ତି ଗ୍ରହଣ କରିଛନ୍ତି, ଯିଏ ବାସ୍ତବରେ ଥିଲେ ସ୍ୱତନ୍ତ୍ର ଓଡ଼ିଶା ଆନ୍ଦୋଳନର ମୁଖ୍ୟ ପ୍ରବର୍ତ୍ତକ ।"

ବିଧାନସଭାର ଅଧିବେଶନଗୁଡ଼ିକରେ ମହାରାଜାଙ୍କ ଯେକୌଣସି ଉପସ୍ଥାପନା ଅତ୍ୟନ୍ତ ମାର୍ଜିତ ରହୁଥିଲା । ଆଲୋଚନାବେଳେ ସଭ୍ୟମାନଙ୍କ ବ୍ୟକ୍ତିଗତ ଆକ୍ଷେପକୁ ସେ ପସନ୍ଦ କରୁନଥିଲେ । ସେ ଏକାଧିକବାର ପ୍ରକାଶ୍ୟରେ ମଧ୍ୟ ମତବ୍ୟକ୍ତ କରିଥିଲେ ଯେ ବିରୋଧୀ ଦଳର



Ama Odisha pdf (aamaodisha@gmail.com)

ସଭ୍ୟଗଣ ବ୍ୟକ୍ତି ବିଶେଷଙ୍କୁ ଆକ୍ଷେପକରି ପ୍ରଦାନ କରୁଥିବା ବକ୍ତବ୍ୟର ଉତ୍ତର ଠିକ୍ ସେହିଭଳି ଭାବରେ ଦେବାକୁ ସେ ଚାହାନ୍ତି ନାହିଁ । କାରଣ ତତ୍‌ପରିଣାମରେ ଆଲୋଚନାଗୁଡ଼ିକ ଅତି ନିମ୍ନ ସ୍ତରୀୟ ହୋଇଯିବ । ସମୟାନୁକ୍ରମେ ସରକାରୀ କାର୍ଯ୍ୟକ୍ରମ ଏବଂ ଗ୍ରହଣ କରାଯାଇଥିବା ପଦକ୍ଷେପ ଗୁଡ଼ିକ ସଂପର୍କରେ ସୂଚନା ଗୃହରେ ଉପସ୍ଥାପନ କରୁଥିଲେ । ପୁଣି ସରକାରଙ୍କ ପାଇଁ ଅବାନ୍ତର ତଥା ଗୋପନୀୟତା ରକ୍ଷା ଦୃଷ୍ଟିରୁ ଅନାବଶ୍ୟକ ମନେ ହେଉଥିବା ବିଷୟଗୁଡ଼ିକୁ ସଭ୍ୟଗଣଙ୍କ ଦାବି ସତ୍ତ୍ୱେ ଗୃହରେ ଆଲୋଚନା ପାଇଁ ସମ୍ମତ ହେଉନଥିଲେ । ଉଦାହରଣ ସ୍ୱରୂପ ସେତେବେଳେ ଥରେ କୁଜଙ୍ଗରେ ଉଦ୍‌ଭବ ହୋଇଥିବା ଜାତିଆଣ କନ୍ଦଳର ଆଲୋଚନା । ସେତେବେଳ ସୁଦ୍ଧା ସେଇ ଜମିଜାରି ଓଡ଼ିଶା ଶାସନର ଅନ୍ତର୍ଭୁକ୍ତ ହୋଇ ନଥିବାରୁ ସେହି ବିଷୟକ ପତ୍ରାଳାପର ପ୍ରକାଶ ଏବଂ ଆଲୋଚନା ପ୍ରସ୍ତାବକୁ ଅନ୍ୟ ଏକ ରାଜ୍ୟର ସ୍ୱାର୍ଥ ସମ୍ବଳିତ ନ୍ୟାୟରେ ଗ୍ରହଣ କରି ନଥିଲେ ମହାରାଜା ।

ଅପରପକ୍ଷରେ ବିରୋଧୀ ଦଳର ଗଠନମୂଳକ ପ୍ରସ୍ତାବ ଏବଂ ସମାଲୋଚନାଗୁଡ଼ିକୁ ମହାରାଜା ଯଥେଷ୍ଟ ସମ୍ମାନ ଦେଉଥିଲେ । ଆଲୋଚନାର ଔଚିତ୍ୟ ନେଇ ଆପଣାର ହୃଦ୍‌ବୋଧ ହେଲେ ସେ ବେସରକାରୀ ପ୍ରସ୍ତାବକୁ ମଧ୍ୟ ସମୟ ସମୟରେ ସମର୍ଥନ ଜଣାଉଥିଲେ । ଏହାକୁ ମୂଲ୍ୟ ଭିତ୍ତିକ ରାଜନୀତି ଏବଂ ମହାରାଜାଙ୍କ ରାଜନୈତିକ ଆଦର୍ଶ ବ୍ୟତୀତ ଆଉ କଣ କୁହାଯାଇପାରେ ?

ବିଧାନସଭାରେ ମହାରାଜାଙ୍କ ପ୍ରତି ସଭ୍ୟଗଣଙ୍କର ଗଭୀର ସମ୍ମାନ ଥିଲା ନିଶ୍ଚୟ । ସେଥିପାଇଁ ସଭାରେ ଥରେ ମତ ପ୍ରକାଶ ପାଇଥିଲା ଯେ ଯିଏ ଯାହାକୁ ଜନ୍ମ ଦେଇଥାଏ ସିଏ ତାହାର ଖାଦ୍ୟପେୟ ବ୍ୟବସ୍ଥା ସହିତ ଲାଳନ-ପାଳନର ଭାର ମଧ୍ୟ ଗ୍ରହଣ କରିଥାଏ । ସେହି ଦୃଷ୍ଟିରୁ ନୂତନ ଓଡ଼ିଶାର ଜନକ ମହରାଜା ତଥା ବର୍ତ୍ତମାନ ରାଜ୍ୟର ପ୍ରଧାନମନ୍ତ୍ରୀ ଓଡ଼ିଶାର ସାମୂହିକ ଉନ୍ନତି ପ୍ରତି ଧ୍ୟାନ ଦେବାଲାଗି ଯଥାର୍ଥ ବ୍ୟକ୍ତି ବିଶେଷ ।

ନବଗଠିତ ରାଜ୍ୟରେ କୃଷି ଓ ଜଳସେଚନର ଉନ୍ନତିରେ ସାମୂହିକ ଉନ୍ନତିର ସ୍ତର ନିଶ୍ଚିତ ଉନ୍ନୀତ ହେବ, ତାହା ମହାରାଜାଙ୍କର ଅନୁଭବ ଥିଲା । ସେଥିପାଇଁ ସେ ପ୍ରଥମରୁ ହିଁ ଗୁରୁତ୍ୱ ଆରୋପ କରିଥିଲେ । ପୁଣି ବନ୍ୟା ବିତ୍ପାତ ଯୋଗୁଁ ପ୍ରବଳ ଭାବରେ କ୍ଷତିଗ୍ରସ୍ତ ହେଉଥିବା ଓଡ଼ିଶା ପାଇଁ ସେହି ସମସ୍ୟାର ଯଥାର୍ଥ ଅନୁଧ୍ୟାନ କରି ବିଭିନ୍ନ ପ୍ରତିକାରମୂଳକ ପଦକ୍ଷେପ ନେବାଲାଗି ଏକ ବିଶେଷଜ୍ଞ କମିଟି ଗଠନ କରିଥିଲେ ଉପଯୁକ୍ତ ପରାମର୍ଶ ପାଇଁ ।

ନୂତନ କରି ଜନ୍ମଲାଭ କରିଥିବା ରାଜ୍ୟର ପ୍ରାଥମିକ ଅବସ୍ଥାରେ ସରକାରୀ ମୁଖ୍ୟ ଭାବେ ତାହାଙ୍କ କାର୍ଯ୍ୟକଳାପର ସ୍ମରଣୀୟ ପ୍ରତିଫଳନଗୁଡିକ ମଧ୍ୟରେ ଥିଲା ଓଡ଼ିଶାରେ ହାଇକୋର୍ଟ ପ୍ରତିଷ୍ଠା, ବାରିପଦା ମହାରାଜାଙ୍କ ନାମରେ ନାମିତ କଟକସ୍ଥିତ ଶ୍ରୀରାମଚନ୍ଦ୍ର ଭଂଜ ମେଡିକାଲ କଲେଜର ଆରମ୍ଭ ଏବଂ ରାଜ୍ୟର ଶିକ୍ଷାବିକାଶ ଦୃଷ୍ଟିରୁ ଏକ ପରମ ଆବଶ୍ୟକତା ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ଥାପନ । ଆଜି ସୁଦ୍ଧା ସମଗ୍ର ଏସିଆ ମହାଦେଶରେ



Ama Odisha pdf (aamaodisha@gmail.com)

ଧାନ ଗବେଷଣା କେନ୍ଦ୍ର ହିସାବରେ ପ୍ରସିଦ୍ଧି ଲାଭ କରିଥିବା କଟକ ବିଦ୍ୟାଧରପୁରର କୃଷି ଫାର୍ମଟି ତାଙ୍କର ଉଦ୍ୟମର ଏକ ସୁଫଳ । ମହାରାଜାଙ୍କ ପରାମର୍ଶ କ୍ରମେ ସେହି ଅନୁଷ୍ଠାନଟିକୁ କେନ୍ଦ୍ର ସରକାରଙ୍କୁ ହସ୍ତାନ୍ତର କରିବାର ପରିଣାମ ସ୍ୱରୂପ ତାହା ଏହିଭଳି ଖ୍ୟାତିସମ୍ପନ୍ନ ସ୍ଥିତିରେ ପହଞ୍ଚି ପାରିଥିଲା ।

ଆଜୀବନ ଶିକ୍ଷାପ୍ରେମୀ ମହାରାଜାଙ୍କ ଦୃଢ଼ ବିଶ୍ୱାସ ଥିଲା ଯେ ରାଜ୍ୟର ପ୍ରକୃତ ଉନ୍ନତି ନିର୍ଭର କରେ ଜନଗଣଙ୍କ ଶିକ୍ଷାବିକାଶ ଉପରେ । ରାଜ୍ୟର ଶିକ୍ଷାମନ୍ତ୍ରୀ ପଣ୍ଡିତ ଗୋଦାବରୀଶ ମିଶ୍ର ୧୯୪୩ ଜୁନ୍ ୩୦ରେ ଉତ୍କଳ ବିଶ୍ୱବିଦ୍ୟାଳୟ ବିଲ୍ ବିଧାନ ସଭାରେ ଆଗତ କରିଥିଲେ । ସେଦିନ ମହାରାଜା ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ ଏବଂ ସେହି ଦିନଟିକୁ ଆଧୁନିକ ଓଡ଼ିଶାର ଇତିହାସ ପାଇଁ ଏକ ସ୍ମରଣୀୟ ଦିବସ ରୂପେ ଗ୍ରହଣ କରିଥିଲେ । ବିଧାନସଭାରେ ଆପଣାର ଅନ୍ତର ଖୋଲି ଦେଇଥିଲେ- ଅତ୍ୟନ୍ତ ଗର୍ବର ସହ ଏଠାରେ ଉଲ୍ଲେଖ କରିପାରେ ଯେ ସଚିବାଳୟର ସକ୍ରିୟ ସହଯୋଗ ଏବଂ ମୋ ସହକର୍ମୀଙ୍କ ଦୀର୍ଘ ଅକ୍ଳାନ୍ତ ପରିଶ୍ରମ ଯୋଗୁଁ ଏହି ବିଲ୍‌ଟି ଆଜି ଗୃହୀତ ହେବା ସମ୍ଭବ ହୋଇପାରିଛି ।

ଉତ୍କଳ ବିଶ୍ୱବିଦ୍ୟାଳୟର ଉନ୍ନତି କଳ୍ପେ ସେ ପ୍ରଧାନମନ୍ତ୍ରୀ ହିସାବରେ ପାଇଥିବା ଗସ୍ତଖର୍ଚ୍ଚ- ଦଶ ହଜାର ଟଙ୍କା- ଅନୁଷ୍ଠାନକୁ ଦାନ କରି ଦେଇଥିଲେ । ଅନୁଷ୍ଠାନର ଅୟମାରମ୍ଭ ବେଳେ ତତ୍‌କାଳୀନ ସେଇ ପରିମାଣର ଅର୍ଥର ମୂଲ୍ୟ ଯଥେଷ୍ଟ ଗୁରୁତ୍ୱ ବହନ କରିଥିଲା । ତାହା ପ୍ରମାଣିତ କରିଥିଲା ପ୍ରାଦେଶିକ ସ୍ତରରେ ଶିକ୍ଷାର ପ୍ରସାର ଦିଗରେ ମହାରାଜାଙ୍କ ଅନାବିଳ ଆଗ୍ରହ । ପୁଣି ସରକାରୀ ଭାବେ ସେ ନୀତି ନିର୍ଦ୍ଧାରଣ କରିଥିଲେ, ପ୍ରତି ଜିଲ୍ଲାର ସଦର ମହକୁମାରେ ବିଜ୍ଞାନ ତଥା କଳା ବିଷୟ ଥାଇ ଗୋଟିଏ ଗୋଟିଏ ସରକାରୀ ମହାବିଦ୍ୟାଳୟ ସ୍ଥାପିତ ହେବ ।

ମହାରାଜାଙ୍କ ଉନ୍ନତି ମୂଳକ କାର୍ଯ୍ୟାବଳୀ ସଂପର୍କରେ ସମସାମୟିକ ରାଜନୀତିଜ୍ଞ ତଥା ବିରୋଧୀ ଦଳର ନେତା ଏବଂ ପୂର୍ବତନ ପ୍ରଧାନମନ୍ତ୍ରୀ ଶ୍ରୀ ବିଶ୍ୱନାଥ ଦାସଙ୍କ ମତାମତ ବିଶେଷ ଉଲ୍ଲେଖଯୋଗ୍ୟ । "ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ ପାଇଁ ମୁଁ ମୋର ପ୍ରାର୍ଥନା ଅର୍ପଣ କରୁଛି । ବ୍ୟକ୍ତିଗତ ଭାବରେ ତାଙ୍କ ସହ ମୋର ପରିଚିତି ଅଛି ଏବଂ ଆର୍ଥନୀତିକ ତଥା ସାମାଜିକ ପ୍ରଶ୍ନଗୁଡ଼ିକ ବିଷୟରେ ତାଙ୍କର ସମୀପବର୍ତ୍ତିତାକୁ ମୁଁ ପସନ୍ଦ କରି ଆସିଛି । ...ବିଭିନ୍ନ ପ୍ରଦେଶରେ ରହିଥିବା ଓଡ଼ିଆଭାଷୀ ଲୋକଙ୍କର ଏକୀକରଣ କରାଯାଇ ଗୋଟିଏ ପ୍ରଦେଶ ଗଠିତ ହେବା ଦିଗରେ ମହାରାଜା ଥିଲେ ଜଣେ ଉଦ୍ଦାମ ଅଗ୍ରଣୀ ସେନାପତି... ସେହି ଦିଗରେ ତାଙ୍କର ଅବଦାନ କୌଣସି ଦିଗରୁ ବିଚାର କଲେ ମଧ୍ୟ ଗୌଣ ବିବେଚିତ ହୋଇନପାରେ । ...ସେ ମଧ୍ୟ ଓଡ଼ିଶାର ମୁଖ୍ୟମନ୍ତ୍ରୀ, ସମ୍ବିଧାନ ପ୍ରଣୟନ ସଭାର ସଭ୍ୟ ଥିଲେ । ତାଙ୍କର ମୁଖ୍ୟମନ୍ତ୍ରିତ୍ୱ କାଳରେ କୌଣସି ପ୍ରକାର ଅସାଧୁ ପ୍ରଶ୍ନ ନେଇ କସ୍ମିନ୍‌କାଳେ କେହି ତାଙ୍କୁ ଆକ୍ଷେପ କରି ପାରିନଥିଲେ ।"



Ama Odisha pdf (aamaodisha@gmail.com)

ଏହା କେବଳ ଶ୍ରୀଯୁକ୍ତ ଦାସଙ୍କ ଅଭିମତ ନଥିଲା, ଥିଲା ଏ ରାଜ୍ୟର ପ୍ରାୟତଃ ନେତା, ବିଧାୟକ ଏବଂ ଓଡ଼ିଶାବାସୀଙ୍କ ମତାମତ; ମହାରାଜାଙ୍କ ରାଜନୈତିକ ଜୀବନର ପୃଷ୍ଠବନ୍ଧ । ହେଲେ ଏହି ନୈତିକ ପୃଷ୍ଠଭୂମି ଉପରେ ଦଣ୍ଡାୟମାନ ମହାରାଜା ୧୯୪୪ ମସିହାର ପ୍ରାୟ ମଧ୍ୟଭାଗ ବେଳକୁ ଅନୁଭବ କରିଥିଲେ ଯେ ଓଡ଼ିଶାର ରାଜନୈତିକ ପରିବେଶ ଯେମିତି ଦୂଷିତ ହୋଇ ଯାଉଛି । ଅନ୍ୟତମ ମନ୍ତ୍ରୀ ପଣ୍ଡିତ ଗୋଦାବରୀଶଙ୍କ ନେତୃତ୍ୱରେ ଅନ୍ୟ ଏକ ନୂତନ ରାଜନୈତିକ ଦଳ-ଓଡ଼ିଶା ପାର୍ଲାମେଣ୍ଟାରୀ ପାର୍ଟି ଗଠିତ ହୋଇଥିଲା । ସେହିଭଳି ପଦକ୍ଷେପ ଯେ ନବଗଠିତ ପ୍ରଦେଶିକ ମନ୍ତ୍ରିମଣ୍ଡଳର ଐକ୍ୟ ସ୍ଥାପନରେ ଅନ୍ତରାୟ ସୃଷ୍ଟି କରିବ ଏବଂ ପରିଣାମତଃ ରାଜ୍ୟର ସମୃଦ୍ଧି ପାଇଁ ହେଉଥିବା କାର୍ଯ୍ୟକଳାପରେ ପ୍ରତିବନ୍ଧକ ସୃଷ୍ଟି କରିବାରେ ବେଳେବେଳେ ସହାୟକ ହେବ- ଏହା କ୍ଷମତାଭିତ୍ତିକ ରାଜନୀତି ଚାହୁଁ ନଥିବା ମହାରାଜାଙ୍କ ଦୃଢ଼ ହୃଦ୍‌ବୋଧ ହୋଇଥିଲା । ମନ୍ତ୍ରିମଣ୍ଡଳରେ ସାମାନ୍ୟତମ ମତ ପାର୍ଥକ୍ୟ ସେ କାମନା କରୁନଥିଲେ କେବଳ ସେଇ କାରଣରୁ ।

କେବଳ ସେହି ହୃଦ୍‌ବୋଧରୁ ୧୯୪୪ ଜୁନ୍ ୨୨ ତାରିଖ ଦିନ ସେ ପ୍ରଧାନମନ୍ତ୍ରୀ ପଦରୁ ଇସ୍ତଫା ଦେଇଥିଲେ ଏବଂ ତାହା ସେହି ମାସ ୩୦ ତାରିଖରେ ଗୃହୀତ ହୋଇ ଯାଇଥିଲା । ଓଡ଼ିଶାରେ ପୁଣି ଆରମ୍ଭ ହୋଇଥିଲା ଲାଟ ଶାସନ । ଏବଂ ତତ୍ ସହିତ ମଧ୍ୟ ମହାରାଜାଙ୍କ ରାଜନୈତିକ ଜୀବନ ତଥା କାର୍ଯ୍ୟକଳାପ ସେତେବେଳଠାରୁ ପ୍ରାୟ ଶେଷ ହୋଇଯାଇଥିଲା କହିଲେ ଅତ୍ୟୁକ୍ତି ହେବନାହିଁ ।

ମହାରାଜା ସ୍ୱେଚ୍ଛାକୃତ ଭାବେ ରାଜନୀତିରୁ ଅବସର ନେଇଥିଲେ, ସ୍ୱେଚ୍ଛାକୃତଭାବେ ରାଜନୀତିରେ ଯୋଗଦେଇଥିବା ଭଳି । ରାଜନୈତିକ କ୍ଷେତ୍ରକୁ ଲମ୍ଫ ଦେଇଥିଲେ କେବଳ ଗୋଟିଏ ମାତ୍ର କାରଣ ପାଇଁ- ସବୁ ଓଡ଼ିଆ ଅଞ୍ଚଳର ଏକୀକରଣ କରାଯାଇ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ; କେବଳ ଏବଂ କେବଳ ମାତ୍ର ହୃଦୟ କନ୍ଦରରେ ଜାତୀୟ ମମତାର ଆଲୋଡ଼ନ । ତାଙ୍କରି ନେତୃତ୍ୱରେ ତାହା ସମ୍ଭବ ହୋଇପାରିଥିଲା । ପୁଣି ନବଗଠିତ ଉତ୍କଳର ସାମୂହିକ ଉନ୍ନତି କଳ୍ପେ ତାଙ୍କରି ନେତୃତ୍ୱରେ ଭିତ୍ତି ମଧ୍ୟ ସ୍ଥାପିତ ହୋଇପାରିଥିଲା ସ୍ୱତନ୍ତ୍ର ପ୍ରଦେଶର ପ୍ରଥମ ତଥା ତୃତୀୟ ପ୍ରଧାନମନ୍ତ୍ରୀ ହିସାବରେ । ତାପରେ ସେ ସ୍ୱେଚ୍ଛାକୃତ ଅବସର ଗ୍ରହଣ କରିଥିଲେ ।

ଭାରତର ସ୍ୱାଧୀନତା ପ୍ରାପ୍ତି ପରେ ପରେ ଗଠିତ ସମ୍ବିଧାନ ପ୍ରଣୟନ ସଭାରେ ସେ ଥିଲେ ମଧ୍ୟ ଜଣେ ସଦସ୍ୟ । କିନ୍ତୁ ସେଠାରେ ସେ କୌଣସି ସକ୍ରିୟ ଭୂମିକା ଗ୍ରହଣ କରିଥିବାର ନଜିର ମିଳେ ନାହିଁ । ତେଣୁ ବାସ୍ତବରେ ସେଠିକାର କାର୍ଯ୍ୟକାଳ ସମାପ୍ତ ହେବା ପରଠାରୁ ମହାରାଜାଙ୍କ ରାଜନୈତିକ ଜୀବନର ପରିସମାପ୍ତି ହେଲା ବୋଲି ଧରିନିଆଗଲେ ମଧ୍ୟ ତାଙ୍କରି ରାଜନୈତିକ ନିଷ୍କ୍ରିୟତା ଆରମ୍ଭ ହୋଇଯାଇଥିଲା ତାର ବହୁ ପୂର୍ବରୁ- ମନ୍ତ୍ରିମଣ୍ଡଳରୁ ଇସ୍ତଫା ଦେବା ପରଠାରୁ ପ୍ରାୟ । ରାଜନୀତିରେ ରାଜନୀତି ହୋଇ ନଥିଲେ ସମ୍ଭବତଃ ମହାରାଜା ଆହୁରି କିଛି ଅଧିକ



Ama Odisha pdf (aamaodisha@gmail.com)

କାଳ ଜନସେବାରେ ଲିପ୍ତ ରହିଥାନ୍ତେ । ତାର ଏକମାତ୍ର କାରଣ ନୀତିଯୁକ୍ତ ରାଜନୀତିର ପୃଷ୍ଠପୋଷକ ଥିଲେ ସେ । ତେଣୁ ଯେତେବେଳେ ସେ ହୃଦୟଙ୍ଗମ କରିଥିଲେ ଯେ କୁଟିଳ ରାଜନୀତି/ତଥା ଅବାଂଛିତ ବିଭବଗୁଡ଼ିକ ସମୟକ୍ରମେ ରାଜନୀତିଜ୍ଞମାନଙ୍କ ପାଇଁ ମୁଖ୍ୟ ହୋଇଯାଉଛି ଏବଂ ଜାତୀୟ ସ୍ୱାର୍ଥ ରହିଯାଉଛି କାହିଁ କେତେଦୂର ପଛରେ- ସେ ସେଇ କ୍ଷେତ୍ରରୁ ସଂପୂର୍ଣ୍ଣ ଓହରି ଯିବା ପାଇଁ ମନସ୍ଥ କରିଥିଲେ । ମନସ୍ଥ କରିଥିଲେ କେବଳ "ମହାରାଜା" ହୋଇ ରହିବା ପାଇଁ; ଅବସର ଜୀବନ ଯାପନ କରିବା ପାଇଁ ।

ଏବଂ ୧୯୪୪ରୁ ୧୯୭୪ ପର୍ଯ୍ୟନ୍ତ ପାରଳାବାସୀ କାହିଁକି ଅନ୍ତତଃ ସବୁ ଓଡ଼ିଆଙ୍କ ପାଇଁ "ମହରାଜା"/ "ପାରଳାଗଜପତି" ରୂପେ ହିଁ ପୂଜ୍ୟ ହୋଇ ରହିଥିଲେ; ସମଗ୍ର ଅବସର ଜୀବନ ଅତିବାହିତ କରିଥିଲେ ମହାରାଜା ଭାବେ ।

ସେଇ ଅବସର ଜୀବନ ନିର୍ବାହ କରୁଥିବା ବେଳେ ଉତ୍କଳ ବିଶ୍ୱବିଦ୍ୟାଳୟ ତରଫରୁ ୧୯୪୭ ମସିହାରେ ମହାରାଜାଙ୍କୁ ଅର୍ପିତ ହୋଇଥିଲା ବିଶେଷ ସମ୍ମାନଜନକ "ଡକ୍ଟରେଟ୍" ଉପାଧି । ପୁଣି ବ୍ରହ୍ମପୁରର ଭେଷଜ ବିଦ୍ୟାଳୟକୁ ତାଙ୍କରି ନାମରେ ନାମିତ କରାଯାଇ ବ୍ରହ୍ମପୁର



**ପାରଳା ଗଜପତିଙ୍କ ସ୍ମରଣରେ ଗଜପତି ଜିଲ୍ଲା**



Ama Odisha pdf (aamaodisha@gmail.com)




ଡାକଟିକଟରେ ପାରଳା ଗଜପତି

ବିଶ୍ୱବିଦ୍ୟାଳୟ ତରଫରୁ ସେହିଭଳି ଡକ୍ଟରେଟ୍ ଉପାଧି ପ୍ରଦତ୍ତ ହୋଇଥିଲା ୧୯୬୮ ମସିହାରେ । ଏଠାରେ ମଧ୍ୟ ଉଲ୍ଲେଖ କରାଯାଇ ପାରେ ଯେ ଯଥା ସମୟରେ ତାଙ୍କରି ସ୍ମରଣରେ ଓଡ଼ିଶା ସରକାର ପାରଳା ସମେତ ସେଇ ଅଞ୍ଚଳକୁ "ଗଜପତି" ଜିଲ୍ଲା ରୂପେ ନାମିତ କରିବା ସହିତ କେନ୍ଦ୍ର ସରକାରଙ୍କ ତରଫରୁ ତାଙ୍କରି ସ୍ମରଣରେ 'ଡାକଟିକଟ' ପ୍ରସ୍ତୁତ କରିଥିଲେ । ବ୍ରିଟିଶ୍ ସରକାର ତ ତାହାଙ୍କୁ ଯଥାର୍ଥ ଭାବରେ ଚିହ୍ନି ପାରିଥିଲେ ପ୍ରଥମରୁ ହିଁ ।

୧୯୧୩ରେ ମହାରାଜା ଗାଦି ଆସୀନ ହେବା ପରଠାରୁ ଇଂରେଜ ସରକାର ତାହାଙ୍କୁ ଅନେକ ସମ୍ମାନଜନକ ପଦବୀରେ ଅଳଂକୃତ କରିଥିଲେ । ୧୯୧୬ ମସିହାରେ ପ୍ରତିରକ୍ଷା ବିଭାଗର ସ୍ଥଳ ବାହିନୀରେ "ଅବୈତନିକ ସେକେଣ୍ଡ ଲେଫ୍ଟନାଣ୍ଟ" ପଦବୀ ପ୍ରଦାନ କରିଥିଲେ । ତତ୍‌ପରେ ସେ ମଧ୍ୟ ଭୂଷିତ ହୋଇଥିଲେ କେ.ସି.ଆଇ.ଇ. ପଦରେ । ୧୯୧୮ ମସିହାରେ କୃଷ୍ଣଚନ୍ଦ୍ରଙ୍କୁ "ରାଜା ସାହେବ" ପଦବୀ ପ୍ରଦତ୍ତ ହେବା ସଂଗେ ସଂଗେ ୧୯୨୨ରେ ସେହି ପଦବୀକୁ ବଂଶାନୁକ୍ରମେ ବ୍ୟବହାର କରିବା ପାଇଁ ଅଧିକାର ଦିଆଯାଇଥିଲା । ନୂତନ ଓଡ଼ିଶା ପ୍ରଦେଶ ଗଠିତ ହେବାର ଅବ୍ୟବହିତ ପୂର୍ବରୁ, ୧୯୩୬ ମସିହାର ପ୍ରଥମ ଦିବସରେ ଭାରତର ବଡ଼ଲାଟ ଲର୍ଡ ୱିଲଙ୍ଗଡନ୍‌ଙ୍କ ସ୍ୱାକ୍ଷର ବହନ କରି ଏକ ସନନ୍ଦ ପ୍ରଦତ୍ତ ହୋଇଥିଲା । ସେଥିରେ ଉଲ୍ଲେଖ ରହିଥିଲା- I hereby confer upon you the title of Maharaja as a personal distinction- ଇଂରେଜ ସରକାରଙ୍କ ନଥିପତ୍ରରେ ସ୍ୱୀକୃତ ପାରଳାଖେମଣ୍ଡି ଜମିଦାର ଗଜପତି କୃଷ୍ଣଚନ୍ଦ୍ର ଆନୁଷ୍ଠାନିକ ଭାବେ ସେହି ପରଠାରୁ ମହାରାଜା କୃଷ୍ଣଚନ୍ଦ୍ର ରୂପେ ପରିଚିତି ଲାଭ କରିଥିଲେ ।



Ama Odisha pdf (aamaodisha@gmail.com)

ବ୍ରିଟିଶ ସରକାରଙ୍କ ଦୃଷ୍ଟି ଆକର୍ଷଣ କରିବାରେ ପ୍ରାରମ୍ଭିକ କାଳରୁ ହିଁ ସମର୍ଥ ଥିଲେ ମହାରାଜା । ସେ ସିଂହାସନ ଆରୋହଣ କରିବାର ସ୍ୱଳ୍ପକାଳ ପରେ ପରେ ପ୍ରଥମ ବିଶ୍ୱଯୁଦ୍ଧର ଆରମ୍ଭ । ସେତିକି ବେଳେ ତାଙ୍କରି ନେତୃତ୍ୱରେ ପାରଳାରେ ପାଳିତ ହୋଇଥିଲା "Our-day" କାର୍ଯ୍ୟକ୍ରମ ଯେଉଁଥିରେ ସ୍କୁଲ କଲେଜ ଛାତ୍ର ଗଣଙ୍କ ଠାରୁ ଆରମ୍ଭ କରି ରାଜ୍ୟର ଜନଗଣଙ୍କଠାରୁ ପ୍ରଭୂତ ପରିମାଣରେ ସ୍ୱେଚ୍ଛାକୃତ ଦାନ ସଂଗୃହୀତ ହୋଇଥିଲା । ସେଥିରେ ମହାରାଜାଙ୍କର ବିଶେଷ ଯୋଗଦାନ ଥିଲା ପରିମାଣାତ୍ମକ ଦୃଷ୍ଟିରୁ । ସେହି ଯୁଦ୍ଧ ପାଣ୍ଠି ସହାୟତା ବ୍ରିଟିଶ୍ ସରକାରଙ୍କ ଯଥାର୍ଥ ଧ୍ୟାନ ଆକର୍ଷଣ କରିବାରେ ସମର୍ଥ ଥିଲା । ପୁଣି ଆମ ଦେଶର କୃଷି ଓ କୃଷକମାନଙ୍କ ସ୍ଥିତି/ସମସ୍ୟା ନେଇ ଯେଉଁ ରାଜକୀୟ କୃଷି କମିଶନ ଗଠିତ ହୋଇଥିଲା ସେଥିରେ ସମଗ୍ର ଭାରତରୁ ଜଣେ ମାତ୍ର ସଭ୍ୟ ଭାବରେ ମନୋନୀତ ହୋଇଥିଲେ ମହାରାଜା । ସରକାରୀ ଦୃଷ୍ଟି ଆକର୍ଷଣ କରିପାରିଥିବାର ତାହା ମଧ୍ୟ ଏକ ନମୁନା । ସେଭଳି ବିଶେଷ ଉଲ୍ଲେଖଯୋଗ୍ୟ ଘଟଣାଥିଲା ବିହାର ଓଡ଼ିଶା ସରକାରଙ୍କ ମନୋନୟନ ପ୍ରଥମ ଗୋଲଟେବୁଲ ବୈଠକ ପାଇଁ । ପୁଣି ୧୯୩୮ ମସିହାରେ ରାଜକୀୟ ଶିଳ୍ପ-କଳା ପରିଷଦର ସେ ସଭ୍ୟ ମନୋନୀତ ହୋଇଥିଲେ ଏବଂ ପୁଣି ମଧ୍ୟ ଭାରତୀୟ ପ୍ରତିରକ୍ଷା ପରିଷଦର ସଭ୍ୟ (୧୯୪୧-୧୯୪୫), ସମ୍ବିଧାନ ପ୍ରଣୟନ ସଭାର ସଦସ୍ୟତା ଭଳି ପଦ-ପଦବୀଗୁଡ଼ିକ ତାହାଙ୍କର ସାମାଜିକ ଜୀବନରେ ପ୍ରତିଷ୍ଠାର ଏକ ଏକ ନମୁନା ମାତ୍ର ।

କିନ୍ତୁ ସେଇ ସବୁକୁ ପଛ କରିଦେଇ ଗଜପତି କୃଷ୍ଣଚନ୍ଦ୍ର ପ୍ରାୟ ୧୯୪୪ ମସିହାରୁ ୧୯୭୪ ପର୍ଯ୍ୟନ୍ତ ଦୀର୍ଘ ତିରିଶ ବର୍ଷକାଳ କେବଳ ଅବସର ଜୀବନ ଯାପନ କରିବା ପାଇଁ ବରଂ ଶ୍ରେୟସ୍କର ମନେ କରିଥିଲେ ଜଣେ ମହାରାଜୋପମ ମହାରାଜା ହିସାବରେ ।

—୦—



Ama Odisha pdf (aamaodisha@gmail.com)

# ଶ୍ରାନ୍ତ କ୍ଲାନ୍ତ ଜୀବନ ଜଞ୍ଜାଳ

ଅତ୍ୟନ୍ତ ଦୁର୍ଗମ ଏଇ ଜୀବନ ଜଞ୍ଜାଳ । କେତେବେଳେ କଙ୍କରିଳ ତ କେତେବେଳେ ପିଚ୍ଛିଳ । ସବୁକୁ ଦୃଢ଼ତାର ସହିତ ଅତିକ୍ରମ କରିବାକୁ ହେବ । ଅତିକ୍ରମ କରିବାକୁ ଭୟଙ୍କର ଘଞ୍ଚ ବନାନୀ । ସେହି କଳାକୁ ସତେ ଯେମିତି ବେଶ୍ ଆୟତ୍ତ କରି ପାରିଥିଲେ ମହାରାଜା କୃଷ୍ଣଚନ୍ଦ୍ର ।

ଅନେକ ଦୁଃଖଦ ଘଟଣା ଘଟିଥିଲା ମହାରାଜାଙ୍କର ଜୀବନକାଳ ମଧ୍ୟରେ । ସମ୍ଭବତଃ ସବୁଠାରୁ ଦୁଃଖଦ ଥିଲା ମହାରାଣୀଙ୍କର ମୃତ୍ୟୁ ।

୧୯୨୫ ମସିହା । ମହାରାଜାଙ୍କ ବୟସ ମାତ୍ର ପ୍ରାୟ ୩୩ । ସେତେବେଳକୁ ସ୍ୱତନ୍ତ୍ର ଓଡ଼ିଶା ଆନ୍ଦୋଳନର କେନ୍ଦ୍ରବିନ୍ଦୁରେ ସେ । ଆନ୍ଦୋଳନ ବେଶ୍ ଦାନା ଧରିଥିଲା । ସାମାନ୍ୟ ସମୟ ଅପଚୟ କରିବାର ବେଳ ନୁହେଁ । ଠିକ୍ ସେତିକିବେଳକୁ ମହାରାଣୀ, ଖରସୁଆଁ ରାଜଜେମା, ନଳିନୀ ଦେବୀଙ୍କର ଅକାଳ ମୃତ୍ୟୁ ହୋଇଥିଲା । ମହାରାଜାଙ୍କ ସାମାଜିକ ପ୍ରତିଷ୍ଠା ସାଙ୍ଗକୁ ତାହାଙ୍କର ପାରିବାରିକ ସୁଖଶାନ୍ତି ଏକାକାର ହେବାର ସୁଯୋଗ ପ୍ରଦାନ କରିବା ପାଇଁ ବିଶ୍ୱନିୟନ୍ତା ସମ୍ଭବତଃ ଚାହୁଁ ନଥିଲେ । ସତେଯେମିତି ଚାହୁଁଥିଲେ ଅଗ୍ନିପରୀକ୍ଷା କରିବା ପାଇଁ; ଚାହୁଁଥିଲେ ପ୍ରମାଣ କରାଇବା ପାଇଁ ମହାରାଜାଙ୍କ ଉତ୍କଳୀୟ ମମତା-ଜାତୀୟ ଜୀବନର ପରାକାଷ୍ଠା !

ସେଇ କଠୋରତମ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ମହାରାଜା । ଚରମ ପରାକାଷ୍ଠା ଦେଖାଇଥିଲେ । ସେଇ ବୟସରୁ କଠୋର ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରିଥିଲେ ଜୀବନର ଅବଶିଷ୍ଟ ସମୟ ପାଇଁ । ୧୯୧୪ରୁ ୧୯୨୫ ମାତ୍ର ୧୧ ବର୍ଷର ଦାମ୍ପତ୍ୟ ଜୀବନ । ତାଙ୍କର ରକ୍ତର ସ୍ମାରକୀ ଚାରୋଟି ସନ୍ତାନଙ୍କ ଭାର ଗ୍ରହଣ କରିବାକୁ ହୋଇଥିଲା ଅନନ୍ୟୋପାୟ ହୋଇ । ମାତୃହରା ସନ୍ତାନଗଣଙ୍କୁ ସବୁ ପ୍ରକାର ସୁଖ ସ୍ୱାଚ୍ଛନ୍ଦ୍ୟ ପ୍ରଦାନ ପାଇଁ ଅତ୍ୟନ୍ତ ଯତ୍ନଶୀଳ ହୋଇ ଉଠିବା ଥିଲା ତାଙ୍କ ପାଇଁ ସ୍ୱାଭାବିକ । ସେହି କାର୍ଯ୍ୟରେ କୃଷ୍ଣଚନ୍ଦ୍ରଙ୍କୁ ଅମୃତମୟ ହାତ ବଢ଼ାଇ ସବୁ ପ୍ରକାରର ସାନ୍ତ୍ୱନାମୂଳକ ସହାୟତା ପ୍ରଦାନ କରିଥିଲେ ତାଙ୍କ ମାଆ ରାଧାମଣି ଦେବୀ । ନାତି ନାତୁଣୀଙ୍କ ସବୁ ଅବସାଦ ପୋଛି ଦେବା ପାଇଁ ଆନ୍ତରିକ ଉଦ୍ୟମ ଥିଲା ତାଙ୍କର । ଉଲ୍ଲେଖ ଅନାବଶ୍ୟକ ଯେ ଗଜପତି କୃଷ୍ଣଚନ୍ଦ୍ରଙ୍କ ପାଇଁ ମଧ୍ୟ ସେ ଥିଲେ ସ୍ୱର୍ଗାଦପି ଗରୀୟସୀ ।



Ama Odisha pdf (aamaodisha@gmail.com)

ପାରଳା ରାଜନବର ଭିତରେ, ଗଡ଼ ଠାକୁରାଣୀ ମାଣିକେଶ୍ୱରୀଙ୍କୁ ବାଦ୍‌ଦେଲେ ମହାରାଜା କୃଷ୍ଣଚନ୍ଦ୍ରଙ୍କ ପାଇଁ ସର୍ବାଧିକ ସମ୍ମାନନୀୟା ଥିଲେ ତାହାଙ୍କର ଜନନୀ । ତାହାଙ୍କର ଗଭୀର ଆତ୍ମବିଶ୍ୱାସ ଥିଲା ଗଡ଼ଦେବୀଙ୍କ କୃପା ଏବଂ ମାଆଙ୍କ ଆଶୀର୍ବାଦ ହିଁ ସମସ୍ତ ଅସାଧ୍ୟକୁ ସାଧନ କରିଦେଇପାରିବାର କ୍ଷମତା ରଖିଥାଏ । ପ୍ରତ୍ୟେକ କ୍ଷେତ୍ରରେ ଏବଂ ସବୁ ଅସମୟବେଳେ ମାଆଙ୍କର ଆଶୀର୍ବାଦ ଭିକ୍ଷା କରି ହିଁ ସେ ଆଗେଇ ଯାଉଥିଲେ ତାହାର ସମାଧାନ ପାଇଁ ।

ସେଇ ଆଶୀର୍ବାଦର କୁଳୁକୁଳୁ ଝରଣାଟି ମଧ୍ୟ ଶେଷରେ ଶୁଷ୍କ ହୋଇ ଯାଇଥିଲା ୧୯୩୮ ମସିହାରେ । ରାଧାମଣି ଦେବୀଙ୍କର ମୃତ୍ୟୁ ହୋଇଥିଲା । ତାହା ବାସ୍ତବରେ ଥିଲା ମହାରାଜାଙ୍କ ପାଇଁ ଏକ ଅପୂରଣୀୟ କ୍ଷତି । କିନ୍ତୁ ସମୟର ଚକ୍ରକୁ ବ୍ୟାହତ କରିପାରିବାର କ୍ଷମତା ବା କାହାର ଅଛି ! କୈଶୋର ଅତିକ୍ରମ କରିବା ପୂର୍ବରୁ ମାତୃହୀନ ହୋଇଥିବା ନାତିନାତୁଣୀଙ୍କ ପାର୍ଥିବ ଜଗତରେ ପାଦ ଦୃଢ କରିବା ପାଇଁ ଜେଜେମାଆ ରାଧାମଣି ଯେ ଯଥେଷ୍ଟ ସହାୟକ ହୋଇଥିଲେ ସେଥିରେ ସନ୍ଦେହ ନାହିଁ ।

ମହାରାଜା କୃଷ୍ଣଚନ୍ଦ୍ର ସାମାନ୍ୟତମ ଅବହେଳା କରିନଥିଲେ ମାତୃହୀନ ପୁତ୍ର କନ୍ୟାଗଣଙ୍କୁ ସମାଜରେ ଉଚିତ ଭାବରେ ପ୍ରତିଷ୍ଠିତ କରାଇବା ପାଇଁ । ବଡ଼ ପୁଅ ରାମଚନ୍ଦ୍ର ତ ହେବେ ତାଙ୍କ ପରେ ପରେ ପାରଳାର ମହାରାଜା ! ସାନପୁଅ ମାଧବ ସୁନ୍ଦରଙ୍କୁ ସମ୍ମାନଜନକ ଭାବେ ବଂଚିବା ପାଇଁ ତାଙ୍କ ଅଧୀନସ୍ଥ ଅନ୍ୟତମ ଜମିଦାରି ଡେଲାଙ୍ଗର ଶାସନ ଭାର ଦେବାଲାଗି ଯୋଜନା କରିଥିଲେ । ମାନ୍ଦ୍ରାଜରେ ଉଚ୍ଚଶିକ୍ଷା ପ୍ରାପ୍ତ ହୋଇ ସମ୍ମାନ ଜନକ ଭାବେ ସାମାଜିକ ଜୀବନ ନିର୍ବାହ ପାଇଁ ସମସ୍ତ ପ୍ରକାରର ଉଚିତ ଏବଂ ଉତ୍ତମ ପଦକ୍ଷେପମାନ ଗ୍ରହଣ କରିଥିଲେ । ଯଥା ସମୟରେ ପୁତ୍ରମାନଙ୍କର ବିବାହ ଉତ୍ସବମାନ ଅନୁଷ୍ଠିତ ହୋଇଥିଲା । ୧୯୪୦ରେ ସୁରୁଗୁଜା ରାଜଜେମାଙ୍କ ସହିତ ଯୁବରାଜ ରାମଚନ୍ଦ୍ରଙ୍କ ବିବାହ ହୋଇଥିଲା ବେଶ୍ ରାଜକୀୟ ଢ଼ାଞ୍ଚାରେ- ଲକ୍ଷାଧିକ ଅତିଥିଙ୍କ ସମାଗମରେ । ହେଲେ ସେହି ଉତ୍ସବର ମାତ୍ର ୧୨ବର୍ଷ ପରେ ରାମଚନ୍ଦ୍ର ମୃତ୍ୟୁ ଜାଲରେ ଫସି ଯାଇଥିଲେ ଆପଣା ଇଚ୍ଛାରେ ।

ଶୁଭ ପରିଣୟ ପରେ ପରେ ଯୁବରାଜଙ୍କ ମନୋରଂଜନ ପାଇଁ ପାରଳା ସହର ସୀମାନ୍ତରେ ମହେନ୍ଦ୍ର ତନୟା ନଦୀକୂଳରେ ନିର୍ମିତ ସୁରମ୍ୟ ପୁଷ୍ପ ବଲ୍ଲରୀରେ ସୁଶୋଭିତ ବସନ୍ତ ନିବାସ ନିୟୋଜିତ ହୋଇଥିଲା । ବୃନ୍ଦାବନ ତୋଟା ନାମରେ ଜନମାନସରେ ପରିଚିତ ଥିଲା ସେଇ ଅଞ୍ଚଳ । ସେଇଠି ପ୍ରାକୃତିକ ବନ୍ୟ ପରିବେଶରେ ରହିଥିଲେ ଅନେକ ପଶୁପକ୍ଷୀ । ଏହା ଥିଲା ମହାରାଜାଙ୍କ ଗ୍ରୀଷ୍ମନିବାସ । ଜଣେ ବ୍ରିଟିଶ୍ ଇଂଜିନିୟର ମିଷ୍ଟର ମୁଲ୍ଲାରଙ୍କ ତତ୍ତ୍ୱାବଧାନରେ ସେତେବେଳେ ପ୍ରାୟ ଦଶଲକ୍ଷ ଟଙ୍କା ବ୍ୟୟରେ ଏହା ନିର୍ମିତ ହୋଇଥିଲା । ତାହା ନିକଟରେ ରହିଥିଲା ଏକ କ୍ଷୁଦ୍ର ପାହାଡ଼ । ବିରାଟ ଏକ ବଗିଚାର ମଧ୍ୟ ଭାଗରେ ନିର୍ମିତ ହୋଇଥିଲା ଦ୍ୱିତଳ ପ୍ରାସାଦଟିଏ । ସେଠାରେ ସ୍ୱତନ୍ତ୍ର ଡାଇନାମାରୁ କୃତ୍ରିମ ବିଦ୍ୟୁତ୍ ଉତ୍ପାଦନର ବ୍ୟବସ୍ଥା ଥିଲା ।



Ama Odisha pdf (aamaodisha@gmail.com)

ଅଙ୍କାବଙ୍କା ରାସ୍ତାଘାଟ, ଆଲୋକ ବ୍ୟବସ୍ଥା, ପଶୁପକ୍ଷୀଙ୍କ ପାନୀୟଜଳ ଯୋଗାଣ ପାଇଁ ମଝିରେ ମଝିରେ ଅନେକଟା ପାଣିକୁଣ୍ଡ.....। ସତେ ଯେମିତି ଏକ ଆଧୁନିକ ପାର୍କ। ବିଭିନ୍ନ ପ୍ରକାରର ଗଛ-ବୃକ୍ଷ , ଫଳ-ପୁଷ୍ପ ସୁଶୋଭିତ ତରୁଲତା। ସବୁବେଳେ ବସନ୍ତ ଋତୁର ସମ୍ଭାର। ସେଇଥି ପାଇଁ ହିଁ ତାହାର ନାମକରଣ ହୋଇଥିଲା ସେହିଭଳି। ସମୟାନ୍ତରରେ ମହାରାଜା କିଛି ସମୟ ପାଇଁ ଚାଲି ଯାଉଥିଲେ ସେଠାକୁ; ବିଶେଷ କରି ଗ୍ରୀଷ୍ମ କାଳରେ। ତାଙ୍କ ଗାଡ଼ିର ହର୍ଣ୍ଣ ଶବ୍ଦ ଶୁଣିବା କ୍ଷଣି ବଣ ମୟୂର-ମୟୂରୀ ପଲପଲ ହୋଇ ଉଡ଼ି ଆସୁଥିଲେ ସେଇ ବୃନ୍ଦାବନ ତୋଟାକୁ। ମହାରାଜା ସେମାନଙ୍କ ପାଇଁ ନିଶ୍ଚିତରୂପେ ନେଇ ଯାଉଥିଲେ କିଛି କିଛି ଖାଦ୍ୟ। ସେ ସବୁକୁ ଅତି ନିକଟରୁ ଖୁଣ୍ଟି ଖୁଣ୍ଟି ଖାଉଥିବା ଦୃଶ୍ୟରେ ବିମୁଗ୍ଧ ହୋଇ ଯାଉଥିଲେ ସେ। ସେଇ ସୁରମ୍ୟ ବସନ୍ତ ନିବାସ ହିଁ ଏକ ସମୟରେ ଆଣି ଦେଇଥିଲା ମହାରାଜାଙ୍କ ପାଇଁ ଏକ ଦାରୁଣ ଦୁଃଖଦ ସମ୍ବାଦ। ସେଇଠି ଯୁବରାଜଙ୍କ ଆତ୍ମହତ୍ୟାର ସମ୍ବାଦ। ଅନେକ କୋଠରି ଭିତରୁ ବସନ୍ତ ନିବାସର ଏକ କୋଠରି ଭିତରେ ଆପଣା ବନ୍ଧୁକରୁ ଗୁଳି ଚଳାଇ ରାମଚନ୍ଦ୍ର ଆତ୍ମହତ୍ୟା କରିଥିଲେ ୧୯୫୨ ମସିହା ଡିସେମ୍ବର ଛଅ ତାରିଖ ଦିନ।

ଏପରିକି ସାଧାରଣ ପାନ ସିଗାରେଟ୍‌ଠାରୁ ମଧ୍ୟ ଦୂରରେ ରହି ଆଜୀବନ ଶୃଙ୍ଖଳିତ ଜୀବନ ଯାପନର ସ୍ପଷ୍ଟ ପକ୍ଷପାତୀ ଥିଲେ ପାରଳା ଗଜପତି । ସେହି କଠୋର ଶାସନ; ଶୃଙ୍ଖଳା ସହିତ ସମ୍ଭବତଃ ବିଳାସୀ ଜୀବନକୁ ଆପଣାଇ ଥିବା ଯୁବରାଜ ରାମଚନ୍ଦ୍ର ସାମିଲ୍ ହୋଇ ପାରିନଥିଲେ। ସେହି ଅଘଟଣର ତାହା ହିଁ ମୂଳ କାରଣ ବୋଲି ଅନେକଙ୍କର ବିଶ୍ୱାସ। ଏବଂ ସମ୍ଭବତଃ ତାହା ହିଁ ଏକ ମୁଖ୍ୟ କାରଣ ଯେଉଁଥିପାଇଁ ଜଣେ ଆଜୀବନ ଶୃଙ୍ଖଳିତ ପିତା ତାର ବିଶୃଙ୍ଖଳିତ ପୁତ୍ରର ମୃତ୍ୟୁ ସମ୍ବାଦ ପାଇ ସୁଦ୍ଧା ଏବଂ ତତ୍‌ପରଠାରୁ କସ୍ମିନ୍‌କାଳେ ଆଉ ବସନ୍ତ ନିବାସକୁ ଯାଇନଥିଲେ। ସେଇ ଦୁର୍ଘଟଣାର ପ୍ରାୟ ପାଞ୍ଚ ବର୍ଷ ପରେ ତାହାକୁ ରାଜ୍ୟ ସରକାରଙ୍କୁ ବିକ୍ରୀ କରି ଦେଇଥିଲେ ନାମକୁ ମାତ୍ର ମୁଲ୍ୟରେ- ମାତ୍ର ତିନିଲକ୍ଷ ଟଙ୍କାରେ। ହେଲେ ରାମଚନ୍ଦ୍ର ଛାଡ଼ି ଯାଇଥିବା ତିନି ପୁତ୍ର- ଗୋପୀନାଥ, ଜଗନ୍ନାଥ ଏବଂ ଉଦୟ ଭାନୁଙ୍କ ଦାୟିତ୍ୱ ଗ୍ରହଣ କରିଥିଲେ ମହାରାଜ କୃଷ୍ଣଚନ୍ଦ୍ର। ସେମାନଙ୍କ ଲାଳନପାଳନ ତଥା ଶିକ୍ଷାଦୀକ୍ଷାର ଉପଯୁକ୍ତ ଭାବରେ ସମ୍ପାଦନ କରିଥିଲେ ସେ। ହେଲେ ମାତ୍ର ଛତିଶ ବର୍ଷ ବୟସରେ ଯୁବରାଜଙ୍କ ଅପମୃତ୍ୟୁ ମହାରାଜାଙ୍କୁ ଅତଳ ଦୁଃଖରେ ଭସାଇ ଦେଇଥିଲା।

ଏବଂ ପୁଣି ମହାରାଜାଙ୍କ ଦୁଇ କନ୍ୟା ଆଣି ଦେଇଥିଲେ ବିଶେଷ ଭାବେ ପାରିବାରିକ ଅବସାଦ, କ୍ଲାନ୍ତି। ବିବାହ ପୂର୍ବରୁ ଜଣେ ଜେମାଙ୍କର ଅକାଳ ମୃତ୍ୟୁ ହୋଇଥିଲା। ସାମାନ୍ୟ ଅସୁସ୍ଥ ଏବଂ ତାପରେ ମୃତ୍ୟୁ। ଆଉ ଜଣେ ଜେମାଥିଲେ ଭିନ୍ନକ୍ଷମ। ସେ ସ୍ପଷ୍ଟ ଭାବରେ କଥାବାର୍ତ୍ତା କରିପାରୁ ନଥିଲେ। ସେହି କାରଣରୁ ରାଜ ନଅରରେ ପ୍ରାୟ ସମସ୍ତେ ତାଙ୍କରି ପାଇଁ ବ୍ୟବହାର କରୁଥିଲେ "ଜାଡ଼ିଜେମା" ଶବ୍ଦ। ତାଙ୍କର ଦେଖାଶୁଣା କରିବା ପାଇଁ ସବୁ ପ୍ରକାରର ବିକଳ୍ପ



Ama Odisha pdf (aamaodisha@gmail.com)

ବ୍ୟବସ୍ଥା କରିଥିଲେ ସୁଦ୍ଧା ମହାରାଜା ସବୁବେଳେ ଚିନ୍ତାଗ୍ରସ୍ତ ରହୁଥିଲେ ତାଙ୍କରି ପାଇଁ । ମହାରାଜାଙ୍କ ପାରିବାରିକ ଜୀବନ ଜଞ୍ଜାଳକୁ ଅଧିକତର ଭାବରେ ଶ୍ରାନ୍ତ, କ୍ଳାନ୍ତ କରି ଦେଉଥିଲା ଜାଡ଼ିଜେମାଙ୍କ ଜୀବନ ନିର୍ବାହ । ଉତ୍ତର ବୟସରେ ମହାରାଜା ସର୍ବାଦୌ ଚିନ୍ତିତ ରହୁଥିଲେ ଏବଂ ତାଙ୍କରି ପରେ ପରେ ଜେମାଙ୍କ ଅବସ୍ଥା ନେଇ ।

ବିଶ୍ୱ ନିୟନ୍ତା କିନ୍ତୁ ତାହାର ସମାଧାନ କରିଦେଇଥିଲେ । ମହାରାଜାଙ୍କ ମୃତ୍ୟୁର ସ୍ୱଳ୍ପ କାଳ ପରେ ଜାଡ଼ିଜେମା ମଧ୍ୟ ମୃତ୍ୟୁ ବରଣ କରିଥିଲେ । କିନ୍ତୁ ସେଇ ବିଶ୍ୱ ନିୟନ୍ତା ମହାରାଜାଙ୍କ କପାଳରେ ବିକ୍ଷିପ୍ତ ଭାବରେ ଲେଖି ଦେଇଥିଲେ ପ୍ରିୟ ପରିଜନଙ୍କର ବିୟୋଗଜନିତ କ୍ଳାନ୍ତିର ସନ୍ଦେଶ । କୈଶୋରରୁ ଆରମ୍ଭ କରି ତାହା ଯେମିତି ପରିବ୍ୟାପ୍ତ ହୋଇଥିଲା ବାର୍ଦ୍ଧକ୍ୟ ପର୍ଯ୍ୟନ୍ତ । କୃଷ୍ଣଚନ୍ଦ୍ରଙ୍କୁ ଯେତେବେଳେ ମାତ୍ର ୧୨/୧୩ ବର୍ଷ ବୟସ ସେତିକି ବେଳେ ହିଁ (୧୯୦୫) ସେ ପିତୃହୀନ ହୋଇ ଯାଇଥିଲେ । ତାର ସ୍ୱଳ୍ପକାଳ ପୂର୍ବରୁ ହରାଇଥିଲେ ପିତୃବ୍ୟଙ୍କୁ (୧୯୦୪) । ପୁଣି ଜ୍ୱଳନ୍ତ ଯୌବନର ମଧ୍ୟ ଭାଗରେ ହରାଇ ବସିଥିଲେ ପ୍ରାଣପ୍ରିୟା ପତ୍ନୀଙ୍କୁ (୧୯୨୫) ମାତ୍ର ୩୩ ବର୍ଷ ବୟସରେ । ନିଶ୍ଚିତ ରୂପେ ଗଭୀର ଅବସାଦରେ ଭରିଯାଇଥିବ ହୃଦୟ । ତତ୍ ପରବର୍ତ୍ତୀ କ୍ଳାନ୍ତ ଶ୍ରାନ୍ତ ଜୀବନ ପ୍ରବାହକୁ ସଜାଡୁ ସଜାଡୁ 'ସ୍ୱର୍ଗାଦପି ଗରୀୟସୀ' ଜନନୀଙ୍କ ମୃତ୍ୟୁ (୧୯୩୮)କୁ ସାମନା କରିଥିଲେ । ସମସ୍ତ ସାଂସାରିକ ଜୀବନ ଜଞ୍ଜାଳକୁ ନିଜେ ଆବୋରି ନେଇ ମହାରାଜାଙ୍କ ସାମାଜିକ ଜୀବନକୁ ଦୃଢ଼ କରାଇବାରେ ଜନନୀ ରାଧାମଣି ଦେବୀ ଥିଲେ ବାସ୍ତବରେ ଏକ ବତୀଘର । ସେଇ ବତୀଘରଟିର ଆଲୋକ ନିର୍ବାପିତ ହୋଇଥିଲା କୃଷ୍ଣଚନ୍ଦ୍ରଙ୍କୁ ୪୬ବର୍ଷ ହୋଇଥିବା ବେଳେ । ତେବେ ସେଇ ଅଭାବ ତ ଅପୂରଣୀୟ ହୋଇ ରହିବା ସ୍ୱାଭାବିକ । ସାମାନ୍ୟ ରୋଗାକ୍ରାନ୍ତ ହୋଇ ବିବାହଯୋଗ୍ୟା ରାଜଜେମାଙ୍କର ମୃତ୍ୟୁ ଏବଂ ପରେ ପ୍ରାୟ ୬୦ ବର୍ଷ ବୟସ ବେଳକୁ ଯୁବରାଜଙ୍କ ବିୟୋଗ ମାତ୍ର ପ୍ରାୟ ୩୬ ବର୍ଷ ବୟସରେ ! ମୃତ୍ୟୁ- ଆଃ ମୃତ୍ୟୁର କିଭଳି ତାଣ୍ଡବ ପାରଳା ରାଜବାଟୀରେ !

ମହାରାଜା କୃଷ୍ଣଚନ୍ଦ୍ରଙ୍କ ପାରିବାରିକ ଜୀବନ ସତେ ଯେମିତି ଦୁଃଖ ଏବଂ ପରମ ଦୁଃଖଦ ଘଟଣାବଳୀରେ ହିଁ ଛାୟାଚ୍ଛନ୍ନ ଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ପିତା, ପିତୃବ୍ୟ, ପତ୍ନୀ, ପୁତ୍ର, କନ୍ୟା ତଥା ମାତାଙ୍କ ବିୟୋଗ ତାହାଙ୍କ ଜୀବନର ସରସତା ହରଣ କରି ନେବାରେ ଯଥେଷ୍ଟ ଥିଲା । ତଥାପି ସେ ସାମାଜିକ ଜୀବନରେ ଭାଙ୍ଗି ପଡିନଥିଲେ । ଧୈର୍ଯ୍ୟହରା ହୋଇନଥିଲେ । ହୃଦୟ କନ୍ଦରକୁ ପଥରଟିଏରେ ପରିଣତ କରାଇ କୋମଳ ପ୍ରାଣର ସବୁ ଆବେଗ, ସବୁ ମମତା, ସବୁ କୋହ, ସବୁ ବ୍ୟାକୁଳତାକୁ ହୃଦୟର ଗୁପ୍ତ ଗନ୍ତାଘରେ ସାଇତି ରଖି ନେଇଥିଲେ ଆପଣାର ନିରୋଳା ମୁହୂର୍ତ୍ତଗୁଡ଼ିକ ପାଇଁ- ଏକାନ୍ତ ବେଳେ ସେଇ ଗନ୍ତାଘରକୁ ଖୋଲୁଥିବେ ପରା କେଜାଣି !

ଅନ୍ୟ ପକ୍ଷରେ ଜୀବନର ବାସ୍ତବତାକୁ ସାମନା କରିବା ପାଇଁ ସେ ଥିଲେ ଦୃଢ଼ ପରିକର । ତାଙ୍କରି ଜୀବଦ୍ଦଶାରେ ହିଁ ରାଜନୈତିକ ତଥା ସାମାଜିକ ଦୃଶ୍ୟପଟରେ ତୁମୁଳ ପରିବର୍ତ୍ତନ ଘଟିଥିଲା ।



Ama Odisha pdf (aamaodisha@gmail.com)

ଦେଶ ସ୍ୱାଧୀନ ହେବା ପରେ ପରେ ପୁରାତନ ଗଡ଼ଜାତ ରାଜ୍ୟ ତଥା ଜମିଦାରି ଉଚ୍ଛେଦ ହୋଇଥିଲା । ତେଣୁ ଜମିଦାରି ପରିଚାଳନାର ପ୍ରଶ୍ନ ଆଉ ନଥିଲା । ଅତଏବ ଗଜପତି କୃଷ୍ଣଚନ୍ଦ୍ର ଆପଣାର ବ୍ୟକ୍ତିଗତ ସମ୍ପତ୍ତି ସବୁକୁ ଯଥାର୍ଥ ଭାବରେ ଦୁଇ ପୁଅଙ୍କ ମଧ୍ୟରେ ବାଣ୍ଟି ଦେଇଥିଲେ । ରାଜସିଂହାସନ ଥିଲା କେବଳ ନାମକୁ ମାତ୍ର; କର୍ପୂରବିହୀନ କନାଟିଏ । ତଥାପି ଯୁବରାଜ ରାମଚନ୍ଦ୍ରଙ୍କ ପୁତ୍ର ଗୋପୀନାଥଙ୍କ ପାଇଁ ତାହା ଉଦ୍ଦିଷ୍ଟ ରହିଥିଲା; ତତ୍ ସହିତ ପାରଳା ସହର ସ୍ଥିତ ରାଜବାଟୀ ମଧ୍ୟ । ତେବେ ଜମିଦାରି ଉଚ୍ଛେଦ ପରେ ତାହାଙ୍କର ଆୟର ପନ୍ଥା ବିଶେଷ ଭାବରେ ହ୍ରାସ ପାଇଥିଲା । ତଥାପି ସେଥିରେ ସେ ହତୋତ୍ସାହ ହୋଇନଥିଲେ । ତାହାଙ୍କର ଦୈନନ୍ଦିନ ଜୀବନଯାତ୍ରା ପଦ୍ଧତିରେ କୌଣସି ପରିବର୍ତ୍ତନ ହୋଇ ନଥିଲା । ତାଙ୍କର ବିଶ୍ୱାସ ଥିଲା ନିଜର ବ୍ୟକ୍ତିଗତ ମାଲିକାନାରେ ଥିବା ଭୂସମ୍ପତ୍ତିର ସୁପରିଚାଳନା ଫଳରେ ଆପଣାର ଆୟ ଜୀବିକା ନିର୍ବାହ ପାଇଁ ଯଥେଷ୍ଟ ହେବ ।

ମହାରାଜା କୃଷ୍ଣଚନ୍ଦ୍ରଙ୍କ ସେଭଳି ସକାରାତ୍ମକ ମନୋଭାବ ହିଁ ତାହାଙ୍କୁ ଜୀବନର ଶେଷ ଦିନ ପର୍ଯ୍ୟନ୍ତ ବାସ୍ତବରେ ଜଣେ 'ମହାରାଜା' ଆସନରେ ଆସୀନ ହୋଇ ରହିବା ପାଇଁ ପ୍ରେରଣାଯୁକ୍ତ କରିଥିଲା । ସେ ଆପଣାର ପୁରାତନ ରାଜ୍ୟର ଜନମାନସରେ ତଥାପି ଥିଲେ ମହାରାଜା- ଭାରତୀୟ ସଂବିଧାନ ତାହାଙ୍କୁ ଜଣେ ସାଧାରଣ ନାଗରିକ ହିସାବରେ ଗ୍ରହଣ କରୁ ପଛେ । ବିଶାଳ ଭାରତୀୟ ଗଣତାନ୍ତ୍ରିକ ରାଷ୍ଟ୍ରରେ ସେ ଜଣେ ସାଧାରଣ ନାଗରିକ ହୋଇଥିଲେ ସୁଦ୍ଧା ସ୍ଥାନୀୟ ଜନଗଣ ତାହାଙ୍କୁ ଅସାଧାରଣ ରୂପେ ହିଁ ଗ୍ରହଣ କରୁଥିଲେ । ପାରଳା ସହରରେ ମହାରାଜାଙ୍କ ୭୮ତମ୍ଭ ଜୟନ୍ତୀ ପାଳନ ତାହାର ଗୋଟିଏ ଉଦାହରଣ ।

୧୮୯୨ ମସିହା ବୈଶାଖ କୃଷ୍ଣ ଅମାବାସ୍ୟା ହେଉଛି କୃଷ୍ଣଚନ୍ଦ୍ରଙ୍କ ଜନ୍ମଦିବସ । ତିଥି ଅନୁକ୍ରମରେ ତାଙ୍କର ଜୟନ୍ତୀ ପଡୁଥିଲା ୧୯୬୯ ମସିହା ଏପ୍ରିଲ୍ ୧୭ ତାରିଖ ଦିନ । ପାରଳା ସହରର କିଛି ବରିଷ୍ଠ ବ୍ୟକ୍ତି ସେଇ ସ୍ୱନକ୍ଷତ୍ର ଦିବସ ପାଳନ କରିବା ପାଇଁ ଏବଂ ସେହି ଅବସରରେ ମହାରାଜାଙ୍କୁ ଏକ ନାଗରିକ ସମ୍ବର୍ଦ୍ଧନା ଜ୍ଞାପନ କରିବା ପାଇଁ ମନସ୍ଥ କରିଥିଲେ । ସେହି କ୍ରମରେ ସହରର ଜନଗଣଙ୍କୁ ଆହ୍ୱାନ ଦିଆଯାଇଥିଲା କାର୍ଯ୍ୟକ୍ରମରେ ସହଯୋଗ କରିବା ପାଇଁ । ସେହି ଖବର ସମୟକ୍ରମେ କେବଳ ସହର ନୁହେଁ, ଆଖପାଖ ସମଗ୍ର ଅଞ୍ଚଳର ଜନଗଣଙ୍କ ମନରେ ସ୍ୱତଃସ୍ଫୂର୍ତ୍ତ ଉନ୍ମାଦନା ସୃଷ୍ଟି କରିଥିଲା । ଠାକୁରଙ୍କ ନିକଟରେ ମହାରାଜାଙ୍କ ଦୀର୍ଘଜୀବନ ପାଇଁ ସାଧାରଣ ଜନତାର କି ଆନ୍ତରିକ ନିବେଦନ ! ସହରର ମଠ, ମନ୍ଦିର ତଥା ଠାକୁରଙ୍କ ନିକଟରେ ଦୃଢ଼ ଧର୍ମବିଶ୍ୱାସୀ ଜନଗଣଙ୍କ ପୂଜାର୍ଚ୍ଚନାର କି ବିପୁଳ ଆୟୋଜନ !

ଏପ୍ରିଲ୍ ୧୭ ତାରିଖ ଦିନ ସାରା ସହର ଆନନ୍ଦ କୋଳାହଳରେ ବିସ୍ଫାରିତ ହୋଇଉଠିଥିଲା ମହାରାଜାଙ୍କ ଦୀର୍ଘଜୀବନ କାମନା କରି । ପୁରୀର ଅନୁରୂପ ପାରଳା ସହରର ସାହି, ଗଳି, କନ୍ଦିରେ ପ୍ରତିଷ୍ଠିତ ଅସଂଖ୍ୟ ମଠ ମନ୍ଦିରରେ ଆବାଳ ବୃଦ୍ଧ ବନିତାଙ୍କର ଠାକୁର ମନ୍ଦିରମାନଙ୍କରେ



Ama Odisha pdf (aamaodisha@gmail.com)

ଭକ୍ତିପୂତ ନିବେଦନ ସମସ୍ତଙ୍କ ମନ-ପ୍ରାଣରେ ଉଦ୍‌ବେଳନ ସୃଷ୍ଟି କରିଥିଲା । ଭକ୍ତିପୂର୍ଣ୍ଣ ବାତାବରଣ ଭିତରେ ହୁଳହୁଳି, ଘଣ୍ଟ-ଘଣ୍ଟା-କାହାଳୀ ଓ ଶଙ୍ଖନାଦ ଭିତରେ ଠାକୁରମାନଙ୍କୁ ମଞ୍ଜରୀ, ବେଲପତ୍ର ଓ ଫୁଲଲାଗି, ଅଖଣ୍ଡ ଦୀପଦାନ, ଭୋଗରାଗ ତଥା ନାମ ସଂକୀର୍ତ୍ତନରେ ଅହୋରାତ୍ର ମୁଖରିତ ହୋଇ ଉଠିଥିଲା । ଦଶହରା କିମ୍ବା ରଥଯାତ୍ରା ସମତୁଲ ଏକ ଜାତୀୟ ଗଣପର୍ବରେ ପରିଣତ ହୋଇଯାଇଥିଲା ମହାରାଜାଙ୍କ ଜନ୍ମୋତ୍ସବ ପାଳନ ଦିନଟି ପାରଳା ସହରରେ ।

ଭୋର ଚାରିଟା ବେଳୁ ସହରର ଛାତ୍ରୀ ଛାତ୍ରଗଣଙ୍କ ଦ୍ୱାରା ଆରମ୍ଭ ହୋଇଥିଲା ପ୍ରଭାତ ଫେରି କାର୍ଯ୍ୟକ୍ରମ ପଣ୍ଡିତ ଗଣଙ୍କ ବେଦମନ୍ତ୍ର ତଥା ରାମଧୂନ୍ ଉଚ୍ଚାରଣ ସହିତ । ପ୍ରାୟ ସକାଳୁ ସକାଳୁ ପୂଜା, ଜପ, ଆରାଧନା, ବେଦମନ୍ତ୍ର ପାରାୟଣ ସହିତ ମଠ ମନ୍ଦିରରେ ଠାକୁରମାନଙ୍କ ମସ୍ତକରେ ମଂଜରୀ/ବେଲପତ୍ର ଲାଗି ତଥା ରୁଦ୍ରାଭିଷେକ ଉତ୍ସବମାନ ଆୟୋଜିତ ହୋଇଥିଲା । କେଉଁଠି ବେଦମନ୍ତ୍ର ଉଚ୍ଚାରଣ, ଅଷ୍ଟପ୍ରହରୀ, ନାମସଂକୀର୍ତ୍ତନ ତ ଆଉ କେଉଁଠି ବିଷ୍ଣୁ ସହସ୍ର ନାମ ପାରାୟଣ । ସହରର ପ୍ରାୟ ସବୁ ମନ୍ଦିରରେ ଅଖଣ୍ଡ ଦୀପଦାନ ସମେତ ରୁଦ୍ରାଭିଷେକ ପାଇଁ ଜନଗଣଙ୍କ ଉତ୍କଣ୍ଠା । ଭୋଗରାଗତ ଚାଲିଥିଲା ସବୁଠି । ସ୍ଥାନୀୟ ଜନସାଧାରଣଙ୍କ ତରଫରୁ ହାଟପଦାସ୍ଥିତ ଚନ୍ଦ୍ରଶେଖର ଦେବାଳୟ ଏବଂ ଚିତ୍ରକର ସାହିଛକରେ ପ୍ରତିଷ୍ଠିତ ରଘୁନାଥ ମନ୍ଦିରରେ ୨୧ ହଜାର ଲେଖାଏଁ ବେଲପତ୍ରୀ ଓ ମଂଜରୀ ଲାଗି ହୋଇଥିଲେ ଠାକୁରେ । ଠିକ୍ ସେହିଭଳି ସ୍ଥିତି ଥିଲା ରାଜଦାଣ୍ଡସ୍ଥିତ ଜଗନ୍ନାଥ ମଠ ଏବଂ ବଡ଼ ରାଧାକାନ୍ତ ମଠରେ । ସେଠାରେ ଠାକୁରମାନେ ମଣ୍ଡିତ ହୋଇଥିଲେ ୨୧ ହଜାର ଲେଖାଏଁ ମଂଜରୀରେ । ଡେଙ୍ଗା ଦେଉଳର ଠାକୁରେ ସେହି ପରିମାଣରେ ଫୁଲ ଓ ବେଲପତ୍ରରେ ପୂଜିତ ହୋଇଥିଲେ । ସେହିଭଳି ଗୋପିନିସାହି ଛକ ଏବଂ କଣ୍ଡରାସାହି ଛକର ତ୍ରିନାଥ ପୀଠ ସମେତ ବ୍ରାହ୍ମଣ ସାହିଛକସ୍ଥିତ ରାଧାବଲ୍ଲଭ ମଠରେ ନଅ ହଜାର ଲେଖାଏଁ ମଂଜରୀ ଏବଂ ସମ ପରିମାଣର ଫୁଲ ଠାକୁରମାନଙ୍କୁ ଅର୍ପିତ ହୋଇଥିଲା ମହାରାଜାଙ୍କ ଦୀର୍ଘଜୀବନ କାମନା କରି । କରଣ ସାହିର ସାନ ରାଧାକାନ୍ତ ମଠ ତଥା ଶ୍ରୀକରଣ ସାହିର ରାଧାମୋହନ ମଠ ସାଙ୍ଗକୁ ଜଙ୍ଗମ ସାହିର ମଲ୍ଲିକେଶ୍ୱର ମନ୍ଦିରରେ ଦଶ ହଜାର ଲେଖାଏଁ ମଞ୍ଜରୀ/ବେଲପତ୍ରୀ ଲାଗି ହୋଇଥିଲେ ଠାକୁରେ । ଅଙ୍କ ସାହିରେ ପ୍ରତିଷ୍ଠିତ ମାଣିକେଶ୍ୱରୀ ମନ୍ଦିରରେ ୧୦୮ ମଞ୍ଜରୀ ସହିତ ବେଲପତ୍ରୀ ଲାଗି ହୋଇଥିବା ପରିମାଣ ଥିଲା ସାତ ହଜାର ଆଠଶହ । ସେହି ସମାନ ପରିମାଣର ଫୁଲ ଏବଂ ସେତିକି ବେଲପତ୍ରୀ କାଶି ନଗର ରାସ୍ତା ପାର୍ଶ୍ୱସ୍ଥ ରାମସ୍ୱାମୀ ମନ୍ଦିରରେ ଲାଗି ହୋଇଥିଲା ଏବଂ ମଧ ହୋଇଥିଲା ରାମ ସାଗର ପାର୍ଶ୍ୱସ୍ଥ ରାମ ଲିଙ୍ଗେଶ୍ୱର ମନ୍ଦିରରେ । ସେଠାରେ ୧୦୮ ନାରିକେଳ ମଧ ଅଭିଷେକ କରାଯାଇଥିଲା । ଏଭଳି ଅନେକ କିଛି... ସବୁଠି ଅହୋରାତ୍ର ଭଜନ-କୀର୍ତ୍ତନ । ମହାରାଜାଙ୍କ ଦୀର୍ଘ ନିରାମୟ ଜୀବନ ପାଇଁ କାମନା !

ସନ୍ଧ୍ୟାରେ ସ୍ଥାନୀୟ ଟାଉନ୍ ହଲଠାରେ ଏକ ସାଧାରଣ ସଭା ଅନୁଷ୍ଠିତ ହୋଇଥିଲା ଏବଂ ଓଡ଼ିଶାର ବିଭିନ୍ନ ପ୍ରାନ୍ତରରୁ ପ୍ରତିନିଧିତ୍ୱ କରୁଥିବା ୭୭ଟି ଅନୁଷ୍ଠାନ ତରଫରୁ ମହାରାଜାଙ୍କ



Ama Odisha pdf (aamaodisha@gmail.com)

ଫଟୋଚିତ୍ରରେ ମାଲ୍ୟାର୍ପଣ କରାଯାଇଥିଲା । ଉପସ୍ଥିତ ବିଶିଷ୍ଟ ବ୍ୟକ୍ତିବୃନ୍ଦ ମଧ୍ୟ ଆପଣାର ଶ୍ରଦ୍ଧା ସୁମନ ସେଠାରେ ଅର୍ପଣ କରିଥିଲେ ।

ହେଲେ ବିଶେଷ ଉଲ୍ଲେଖ ଯୋଗ୍ୟ ଯେ ଯେଉଁ ମହାନାୟକଙ୍କ ପାଇଁ ଜନଗଣଙ୍କ ଏହି ଉଚ୍ଛ୍ୱସିତ ଉଦ୍‌ବେଳନର ପରିପ୍ରକାଶ ହୋଇଥିଲା ସେତେବେଳେ ସେଠାରେ ସେ ଉପସ୍ଥିତ ନଥିଲେ । ଥିଲେ ସୁଦୂର ବାଙ୍ଗାଲୋର ସହରରେ । ଏହା ହିଁ ତ ପ୍ରମାଣ କରାଇ ଦେଇଥିଲା ମହାରାଜାଙ୍କ ପ୍ରତି ଜନଗଣଙ୍କର ଅନ୍ତରଙ୍ଗ ଭାବର ପ୍ରତିଫଳନ; ରାଜ୍ୟବାସୀଙ୍କ ଶ୍ରଦ୍ଧା, ସମ୍ମାନ ଓ ଭକ୍ତିର ନିଦର୍ଶନ ! ସହରରେ ମହାରାଜାଙ୍କ ଉପସ୍ଥିତି ବା ଅନୁପସ୍ଥିତିର ପାର୍ଥକ୍ୟ ପାରଳାବାସୀଙ୍କ ପାଇଁ ଗୁରୁତ୍ୱପୂର୍ଣ୍ଣ ନଥିଲା, ଥିଲା କେବଳ ତାଙ୍କର ଦୀର୍ଘ ନିରାମୟ ଜୀବନ ପାଇଁ ଠାକୁରଙ୍କ ନିକଟରେ ଭକ୍ତିପୂତ ନିବେଦନ ।

ସେଇ ଉପଲକ୍ଷେ ଏକ ସ୍ମରଣିକା ପ୍ରକାଶିତ ହୋଇଥିଲା । ସେଥିରେ ମହାରାଜାଙ୍କ କର୍ମମୟ ଜୀବନର ଝଲକଟିଏ ପ୍ରକାଶିତ ହୋଇଥିଲା ଏବଂ ପ୍ରକାଶିତ ହୋଇଥିଲା ଦେଶ ବିଦେଶର ଅନେକ ପ୍ରଖ୍ୟାତ ବ୍ୟକ୍ତିଙ୍କ ସ୍ମୃତି ଏବଂ ଅନୁଭୂତି । ମହାରାଜାଙ୍କ କାର୍ଯ୍ୟକଳାପ ନେଇ ଅତୀତରେ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶ ପାଇଥିବା ସବିଶେଷ ସମ୍ବାଦ ଇତ୍ୟାଦିର ଅଂଶ ବିଶେଷ ମଧ୍ୟ ଗ୍ର□ିତ ହୋଇଥିଲା ସେଥିରେ । ତାହା ଆଜି ସୁଦ୍ଧା ଏକ ପ୍ରାମାଣିକ ସଂକଳନ ହିସାବରେ ଗୃହୀତ । ମହାରାଜାଙ୍କର ଜନ୍ମ ଉତ୍ସବ ପାରଳାରେ ଆୟୋଜିତ ହେବାବେଳେ ସେ ସେଠାରେ ଉପସ୍ଥିତ ନଥିବାରୁ, ବାଙ୍ଗାଲୋର୍‌ରୁ ଫେରିବା ପରେ ଏକ ସ୍ୱତନ୍ତ୍ର ଉତ୍ସବ ଆୟୋଜିତ ହୋଇ ସେଇ ସ୍ମରଣିକାଟିକୁ ଭକ୍ତି ଉପହାର ରୂପେ ଦିଆଯାଇଥିଲା ଏକ ରୁପା ଥାଳିରେ ।

ସେଦିନ ଥିଲା ୧୯୭୦ ମସିହା ଫେବ୍ରୁଆରି ୨୧ ତାରିଖ । ସମଗ୍ର ରାଜଦାଣ୍ଡ ଓ ଟାଉନ୍ ହଲ୍ ଚିତ୍ରିତ ତୋରଣମାଳାରେ ସୁସଜ୍ଜିତ । ମହାରାଜାଙ୍କୁ ସ୍ଥାନୀୟ ଟାଉନ୍‌ହଲ୍‌ରେ ନାଗରିକ ସମ୍ବର୍ଦ୍ଧନା ଦିଆଯାଉଥିବା ସମ୍ବାଦ ଶୁଣି ପାରଳା ଆଖପାଖ ଅଞ୍ଚଳ, ବିଶେଷକରି ଆନ୍ଧ୍ରପ୍ରଦେଶ ଅନ୍ତର୍ଗତ ଏବଂ ଦୀର୍ଘ ଅତୀତରେ ତାଙ୍କର ଜମିଦାରି ଅନ୍ତର୍ଗତ ଅଞ୍ଚଳରୁ ହଜାର ହଜାର ଲୋକ ଆସି ଜମି ଯାଇଥିଲେ ରାଜଦାଣ୍ଡରେ ପୂର୍ବଥର ଭଳି । ସେମାନେ ସେଦିନ ତାଙ୍କରି ପ୍ରିୟ ମହାରାଜାଙ୍କୁ ଦେଖି ନଥିଲେ ତ ! ସେଦିନ ସନ୍ଧ୍ୟା ପୂର୍ବରୁ ସାରା ସହରରେ ପ୍ରବଳ ଜନ ସମାଗମ-ଠିକ୍ ଜନ୍ମଦିନ ପାଳନ ଦିବସ ଭଳି । ଆକାଶରେ ମେଘର ଘନଘଟା ଓ ବତାସିଆ ପବନକୁ କାହାରି ଖାତିର ନାହିଁ ।

ଅପରାହ୍ଣ ସାଢ଼େ ଚାରିଟା ବେଳକୁ ଆକାଶ କିନ୍ତୁ ଶାନ୍ତ ହୋଇଯାଇଥିଲା । ନିର୍ଦ୍ଧାରିତ ସମୟରେ ଏବଂ ନିର୍ଦ୍ଧାରିତ ସ୍ଥାନରେ ମହାରାଜାଙ୍କ ଉପସ୍ଥିତି ମାତ୍ରେ ସେଇ ପାରଂପାରିକ ଢଙ୍ଗରେ- "ଜୟ ଶ୍ରୀ ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ମହାରାଜାଙ୍କ ଜୟ" ଧ୍ୱନି ଆକାଶ ମେଦିନୀକୁ ପ୍ରକମ୍ପିତ କରି ଦେଇଥିଲା । ୭୮ଟି ପ୍ରଦୀପ ସୁଶୋଭିତ ମଞ୍ଚ ଆରୋହଣ କରିଥିଲେ ମହାରାଜା । ସେଇ ମଞ୍ଚ



Ama Odisha pdf (aamaodisha@gmail.com)

ଉପରୁ ସଂବର୍ଦ୍ଧନାର ଉତ୍ତର ଦେଇଥିଲେ ଦେଶ ଓ ଜାତିର ସେବା ପାଇଁ ପ୍ରତ୍ୟେକ ନାଗରିକ ଆପଣାକୁ ଗଢ଼ି ତୋଳିବା ଆବଶ୍ୟକ । ଐକ୍ୟ ପ୍ରତିଷ୍ଠା ବିନା ଭାରତର ପ୍ରଗତି ସମ୍ଭବ ନୁହେଁ । ମହନୀୟ ତଥା ଆଦର୍ଶ ଜୀବନ ହିଁ ଅତୀତର ଐତିହ୍ୟ ଓ ସଂସ୍କୃତିର ସଂରକ୍ଷଣ ଏବଂ ସମୃଦ୍ଧ ପାଇଁ ପ୍ରଥମ ଆବଶ୍ୟକତା । "ଜୟ, ନୂତନ ଉତ୍କଳର ପ୍ରତିଷ୍ଠାତା ଶ୍ରୀ ଶ୍ରୀ ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ମହାରାଜାଙ୍କ ଜୟ" ଧ୍ୱନି ସହ ସଭା ସାଙ୍ଗ ହୋଇଥିଲା ।

ସାରା ଜୀବନ ତ ଥିଲା ତାଙ୍କର ମହନୀୟ, ଆଦର୍ଶଯୁକ୍ତ । ସେ ଆଉ କେଉଁ ଆହ୍ୱାନ ଦେଇଥାନ୍ତେ ଦେଶର ଭବିଷ୍ୟତ ପାଇଁ । ଶୃଙ୍ଖଳା ଏବଂ ଶୃଙ୍ଖଳା । ଆଜୀବନ ସେଇ ରଜ୍ଜୁରେ ବନ୍ଧା ହୋଇଥିଲେ ସେ । ଅବସର ଜୀବନ ଯାପନ କାଳରେ ବି ସେମିତି; ଜମିଦାରି ଉଚ୍ଛେଦ ପରେ ସୁଦ୍ଧା ସେଇ ଶୃଙ୍ଖଳିତ ଜୀବନ ଯାପନ । ଦେଶର ସମ୍ବିଧାନ ଅନୁଯାୟୀ ସେ ଜଣେ ସାଧାରଣ ନାଗରିକ ହୋଇଥିଲେ ସୁଦ୍ଧା ଜୀବନର ଶେଷ ଦିନ ପର୍ଯ୍ୟନ୍ତ ସେଇ ରାଜକୀୟ ଢ଼ଙ୍ଗଢ଼ାଙ୍ଗ ! ଗଭୀର ଆତ୍ମସମ୍ମାନବୋଧ ପ୍ରବଳ ଆତ୍ମ ଅଭିମାନ ଯାହା ପ୍ରତ୍ୟେକ ସାଧାରଣ ମଣିଷ ପାଇଁ ଏକାନ୍ତ ଆବଶ୍ୟକ ।

ସେମିତି ଦେଖିଲେ ମହାରାଜା କୃଷ୍ଣଚନ୍ଦ୍ର ପିଲାଟି ଦିନରୁ ହିଁ ଥିଲେ ଖୁବ୍ ଆତ୍ମ ଅଭିମାନୀ ।

ସେତେବେଳକାର ଗଞ୍ଜାମର ପ୍ରଥମ ଗ୍ରାଜୁଏଟ୍ ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ ଥିଲେ ପାରଳା ରାଜ ପରିବାରର ଜଣେ ଶୁଭେଚ୍ଛୁ । ସେଇ ହିସାବରେ ସେ ରାଜନଅର ଭିତରେ ସୁଦ୍ଧା ଜଣେ ସମ୍ମାନିତ ବ୍ୟକ୍ତି । ଥରେ ଏମିତି କଥା ପ୍ରସଂଗରେ କିଶୋର କୃଷ୍ଣଚନ୍ଦ୍ରଙ୍କ ଗୃହଶିକ୍ଷକ ଅପର୍ଣ୍ଣା ପଣ୍ଡାଙ୍କୁ ପଚାରି ବୁଝୁଥିଲେ ଯୁବରାଜଙ୍କ ଶିକ୍ଷାପ୍ରତି ଆଗ୍ରହ ସଂପର୍କରେ । ପୁଣି ତାଙ୍କରି ସାମନାରେ ହିଁ । ବେଶ୍ ବପୁବନ୍ତ ଶ୍ରୀ ରାଜଗୁରୁଙ୍କ ଚେହେରା ହିଁ ବାଳକ କୃଷ୍ଣଚନ୍ଦ୍ରଙ୍କୁ ଅନେକ ସମୟରେ ଭୟଭୀତ କରାଉଥିଲେ ସୁଦ୍ଧା ସେ ପାରିବାରିକ ବନ୍ଧୁ ହୋଇଥିବା କାରଣରୁ ସେଥିରୁ ନିସ୍ତାର ନଥିଲା । କିଶୋର କୃଷ୍ଣଚନ୍ଦ୍ର ଅଙ୍କରେ ଦୁର୍ବଳ ରହୁଥିବା ବିଷୟ ଶିକ୍ଷକ ମହୋଦୟ ରାଜଗୁରୁଙ୍କ ନିକଟରେ ପ୍ରକାଶ କରିଥିଲେ । ତାପରେ ରାଜଗୁରୁ ମହାଶୟ ଟିକିଏ ତାଗିଦ୍ କରିବା ଭଳି କଣ୍ଠରେ ଯୁବରାଜଙ୍କୁ କହିଥିଲେ- "ପାଠତ ଏବେ ଭଲ ଲାଗୁନି ଆଉ ରାଜ୍ୟ ଶାସନ କରିବେ କିପରି ? ମୁନିଗା ଭଜା (ସଜନା ଛୁଇଁକୁ ଗଞ୍ଜାମ ଅଞ୍ଚଳରେ ଆଜି ମଧ୍ୟ ମୁନିଗା କୁହା ଯାଇଥାଏ) ଖାଇବାକୁ ତ ଭଲ ଲାଗୁଛି, ଆଉ ପାଠ ପଢ଼ା ଭଲ ଲାଗୁନି କାହିଁକି ?" ସେଇ ଲଘୁ ମନ୍ତବ୍ୟ ଦେଇ ସେ ତାଙ୍କର ଚାଲି ଯାଇଥିଲେ ଅନ୍ୟ ଆଡ଼େ ।

ବାସ୍ ସେତିକି । ଆତ୍ମ ଅଭିମାନରେ ଜର୍ଜରିତ ହୋଇ ଯାଇଥିଲେ ମାତ୍ର ପ୍ରାୟ ଆଠ ବର୍ଷର କିଶୋର କୃଷ୍ଣଚନ୍ଦ୍ର । ପାରଳା ରାଜନବରରେ ଥିବା ପ୍ରାୟ ଶହେଟି କୋଠରି ଭିତରୁ ଗୋଟିଏ ନିର୍ଜନ କୋଠରିକୁ ଚାଲିଯାଇଥିଲେ । ସାଂଗରେ ଲୁଚାଇ ନେଇଥିଲେ ଦାନ୍ତକାଠି ସଫା ହେବା ପାଇଁ କୌଣସି ଗୋଟିଏ ଝରକା ଉପରେ ରହିଥିବା ଛୁରୀଟିଏ । ସେତେବେଳେ ସେ କାନରେ



Ama Odisha pdf (aamaodisha@gmail.com)

ପିନ୍ଧିଥିବା ଚମକପ୍ରଦ ହୀରାଖଣ୍ଡ ଯୁକ୍ତ କାନଫୁଲରୁ ହୀରା ଖଣ୍ଡିଏ ବାହାରକରି ଗିଳି ପକାଇଥିଲେ । ଉଦ୍ଦେଶ୍ୟ ଆତ୍ମହତ୍ୟା କରିବେ । ରାଜଗୁରୁଙ୍କଠାରୁ ମୁକ୍ତିପାଇବେ । ହୀରାର ସେଇ ଚମତ୍କାରିତା ସଂପର୍କରେ ପରିଚାରିକାଗଣଙ୍କ ଠାରୁ ସେ ଶୁଣିଥିଲେ କେବଳ । ଯେଉଁ ବ୍ୟକ୍ତି ରାଜ ପରିବାରର ସଦସ୍ୟଗଣଙ୍କ ଖାଇବା ରଚି ସହିତ ମଧ୍ୟ ସଂଶ୍ଲିଷ୍ଟ ତାଙ୍କରି ଠାରୁ ସବୁଦିନ ଲାଗି ମୁକ୍ତି ପାଇବା ପାଇଁ ଅଭିମାନୀ ମହାରାଜା ମନେ କରିଥିଲେ ତାହାହିଁ ଏକ ମାତ୍ର ପନ୍ଥା !

କିନ୍ତୁ ତାହା ଫଳପ୍ରଦ ହୋଇନଥିଲା । ଯୁବରାଜଙ୍କ ଦୀର୍ଘ ଅନୁପସ୍ଥିତି ଯୋଗୁଁ ପରିଚାରିକାଗଣ ଖୋଜା ଲୋଡା କରି ତାହାଙ୍କୁ ସେହି କୋଠରିରୁ ଉଦ୍ଧାର କରିବା ସହ ହୀରାଖଣ୍ଡ ଗିଳି ପକାଇଥିବା ସଂପର୍କରେ ମଧ୍ୟ ସମସ୍ତଙ୍କୁ ଅବଗତ କରାଇଥିଲେ । କେବଳ ରାଜନଅର ନୁହେଁ, ସାରା ସହରରେ ତାହା ଚାଞ୍ଚଲ୍ୟ ଖେଳାଇ ଦେଇଥିଲା । ତୁରନ୍ତ ଚିକିତ୍ସା କରାଯାଇ ସବୁ ଠିକ୍ ଠାକ୍ ହେବା ସଙ୍ଗେ ସଙ୍ଗେ ସେଦିନ ଇଷ୍ଟଦେବୀ ମାଣିକେଶ୍ୱରୀ, ରାମସ୍ୱାମୀ ଏବଂ ଶ୍ରୀଜଗନ୍ନାଥ ମନ୍ଦିରରେ ପର୍ଯ୍ୟାପ୍ତ ପରିମାଣରେ ଭୋଗରାଗ ହୋଇ ବ୍ରାହ୍ମଣ ଭୋଜନାଦି କରାଯାଇ ଯୁବରାଜଙ୍କ ରିଷ୍ଟ ଖଣ୍ଡନ କରାଯାଇଥିଲା ।

ତୀବ୍ର ମାନସିକ ଅନ୍ତର୍ଦାହ ଆତ୍ମସଚେତନ ମହାରାଜାଙ୍କୁ ସେଦିନ ଯେଉଁଭଳି ଭାବରେ ପ୍ରଭାବିତ କରିଥିଲା ଓଡ଼ିଶା ସୀମାକମିଟି ସୁପାରିଶ ପ୍ରକାଶ ପାଇବା ଦିନ ସୁଦ୍ଧା ଠିକ୍ ସେହିଭଳି ଅନ୍ତର୍ଦାହରେ ପ୍ରଭାବିତ ହୋଇଥିଲେ ପ୍ରାୟ ୪୧ ବର୍ଷ ବୟସ୍କ ମହାରାଜା । ସେଦିନ ମଧ୍ୟ ଆଠବର୍ଷ ବୟସ୍କ ବାଳକ କୃଷ୍ଣଚନ୍ଦ୍ରଙ୍କ ଭଳି ସମ୍ଭବତଃ ଆତ୍ମହତ୍ୟା ଉଦ୍ୟମ କରିଥିଲେ । ସେତେବେଳେ ଆତ୍ମାଭିମାନୀ ମହାରାଜାଙ୍କୁ ସେହି ଉଦ୍ୟମରୁ କ୍ଷାନ୍ତ କରାଇଥିଲେ ଦେବାନ୍ ଲକ୍ଷ୍ମୀ ନାରାୟଣ ପଟ୍ଟନାୟକ । ପୁଣି ସେଇ ଓଡ଼୍ନାଲ କମିଟି ପାଇଁ ସେ ମନୋନୀତ ହେବା ପରେ ତାହାର ସଭ୍ୟପଦକୁ ନେଇ ଓଡ଼ିଶାର କେତେକ ନେତାଙ୍କ ବିରୋଧ ଯୋଗୁଁ ମହାରାଜା ଆପଣାଛାଏଁ ସେଥିରୁ ଓହରି ଯିବା ପାଇଁ ମନସ୍ଥ କରିଥିଲେ । କିନ୍ତୁ ଓଡ଼ିଆଙ୍କ ସମୂହ ସ୍ୱାର୍ଥ ରକ୍ଷାକରିବା ପାଇଁ ଅନ୍ୟ ଅନେକ ନେତାଙ୍କ ସାକ୍ଷାତ ତଥା ହାର୍ଦ୍ଦିକ ଅନୁରୋଧକୁ ଉପେକ୍ଷା ମଧ୍ୟ କରିପାରିନଥିଲେ ଆତ୍ମ ସଚେତନ ମହାରାଜା । ସେ ସବୁ ଘଟଣା ବ୍ୟତୀତ ଯୌବନ କାଳର ଆଉ ଏକ ଘଟଣାର ଉଦ୍ଧାର କରାଯାଇପାରେ । ହେଲେ ନାଟକକୁ ଆକର୍ଷଣୀୟ କରାଇବା ପାଇଁ ଉଦ୍ୟମକୁ କେନ୍ଦ୍ର କରି ଆପଣା ଅଭିମାନକୁ ରକ୍ତାକ୍ତ କରିବାର ଯଥାର୍ଥତା ନଥିଲା ସେଥର ।

ଥରେ ପାରଳାରେ ଏକ ନାଟକ "ଚନ୍ଦ୍ରାବତୀ ସ୍ୱୟମ୍ବର" ମଞ୍ଚସ୍ଥ ହେଉଥିଲା ଦାଦାଙ୍କ ସ୍ମୃତିରେ ନାମିତ "ପଦ୍ମନାଭ ରଙ୍ଗାଳୟ"ରେ । ମହାରାଜା ସେଠାକୁ ଯାଇଥିଲେ ଜଣେ ଦର୍ଶକ ହିସାବରେ । ସେଥିରେ ସ୍ଥାନୀୟ ବୈଷ୍ଣବ କବି ଗୋପାଳକୃଷ୍ଣଙ୍କ ପଣନାତି ତଥା ସ୍ଥାନୀୟ ମହାରାଜା ହାଇସ୍କୁଲର ଶିକ୍ଷକ ଚକ୍ରପାଣି ପଟ୍ଟନାୟକ ଜଣେ ହାସ୍ୟ ଅଭିନେତା ଭାବରେ ଅଭିନୟ କରୁଥିଲେ ।



Ama Odisha pdf (aamaodisha@gmail.com)

ଅନ୍ୟାନ୍ୟ ଅଭିନୟ ଭିତରେ, ସେଦିନ ମଞ୍ଚ ଉପରେ, 'ବକ୍ରଦନ୍ତ' ଆଖ୍ୟାନଟିଏ ଆରମ୍ଭ କରିଥିଲେ ସେ । ବାହାଡ଼ା ଦାନ୍ତର ଅନେକ ବିଶେଷତ୍ୱ ବଖାଣି ଯାଇଥିଲେ ବ୍ୟଙ୍ଗ ଅଭିନେତା ଚକ୍ରପାଣି । ବଙ୍କେଇ ଟଙ୍କେଇ ଅନେକ କଥା କହିଥିଲେ । ତାଙ୍କରି ଅଭିନୟରେ ଦର୍ଶକଗଣ ହସି ହସି ବେଦମ ହୋଇ ଯାଇଥିଲେ । ସେଭଳି ମହିମାମୟ ବକ୍ରଦାନ୍ତ ଯୁକ୍ତ ମଣିଷଟିଏ କିଭଳି କଥା କହେ, ସିଏ ହସିଲେ କେମିତି ଦେଖାଯାଏ, କିଭଳି ଭାବରେ ଖାଦ୍ୟ ଖାଏ ଇତ୍ୟାଦି ଥିଲା ସେହି ବ୍ୟଙ୍ଗ ଅଭିନୟର ଅଂଶ ବିଶେଷ ।

ହେଲେ ସେଇ ପରମ ଆନନ୍ଦଦାୟକ ଘଟଣାଟି ନିରାନନ୍ଦ ମନେ ହୋଇଥିଲା ମହାରାଜାଙ୍କୁ । ସେ ଅଧାରୁ ଉଠି ଚାଲି ଯାଇଥିଲେ । କାରଣ ଥିଲା ପିଲାଦିନେ ସେ ଥିଲେ ବାହାଡ଼ାଦାନ୍ତ ଯୁକ୍ତ । ମାଆ ରାଧାମଣିଦେବୀଙ୍କ ପ୍ରରୋଚନାକ୍ରମେ ଆଧୁନିକ ଚିକିତ୍ସା ସହାୟତାରେ ତାହାକୁ ବାହାର କରାଯାଇଥିଲା ଏବଂ ସେହିସ୍ଥାନରେ ମଧ୍ୟ ସଠିକ୍ ଦାନ୍ତଟିଏ ଯଥା ସମୟରେ ଉଠି ଯାଇଥିଲା । ତଥାପି ସେଇ ନାଟକ ଦେଖିବା ବେଳେ ସେ ମନେ କରିଥିଲେ ଯେ ତାଙ୍କୁ ହିଁ ଆକ୍ଷେପ କରି ତାହା ଅଭିନୀତ । କିନ୍ତୁ ବାସ୍ତବରେ ଚକ୍ରପାଣିଙ୍କ ଉଦ୍ଦେଶ୍ୟ ସର୍ବାଦୌ ସେୟା ନଥିଲା ।

ତତ୍ ପରଦିନ ମହାରାଜାଙ୍କ ନିକଟରୁ ତଲବ୍ । ଘଟଣାର ଯଥାର୍ଥ ଅନୁମାନ ସେ କରି ନେଇଥିଲେ । ସେଥିପାଇଁ ପୁଣି ଏକ ଅଭିନୟର ଯୋଜନା ପ୍ରସ୍ତୁତ କରିଥିଲେ ତତ୍‌କାଳ ।

ନଅରରେ ପହଞ୍ଚିବା ମାତ୍ରେ ମହାରାଜା କିଛି କହିବା ପୂର୍ବରୁ ଚକ୍ରପାଣିଙ୍କର ଆପଣାର ଗୁହାରୀ ଥିଲା– ମହାରାଜ; ଆଉ ଏଣିକି ମୁଁ କୌଣସି ନାଟକରେ ଅଭିନୟ କରିବି ନାହିଁ ।

କାହିଁକି ?

ସେଇ କାହିଁକିର ଏକ ଦୀର୍ଘ ଉତ୍ତର ଦେଇ ସେଦିନ ସକାଳୁ ସକାଳୁ ବଜାର ମଝିରେ ରାଧି ଓଡ଼ିଆଣୀର ଅସଭ୍ୟ ଗାଳିଗୁଲଜ ସଂପର୍କରେ ବିଶେଷ ଉଲ୍ଲେଖ କରିଥିଲେ । କହିଥିଲେ– ''ସତେ ଯେମିତି କାଲିରାତିରୁ ସେ ମୋତେ ଅପେକ୍ଷା କରି ହିଁ ରହିଥିଲା । ତାର ଭାଷାକୁ ଉଦ୍ଧାର କରି କହିଥିଲେ– ହଇହୋ କରଣ ପୁଅ, ମୋ ଗୋଡ଼ ଟିକିଏ ବଙ୍କା ହୋଇଯାଇଛି ବୋଲି ତମେ କଣ ହାଟ ବଜାରରେ ସେ କଥା କହିବୁଲିବ ? ମୁଁ ଏବେ କଳିହୁଡ଼ୀ । ହେଲେ ସେଥିରେ ତମର କଣ ଯାଏ ଆସେ ହୋ । ତମ ସହିତ ମୁଁ କଣ କେବେ କଳି କରିଛି ? ତା ହେଲେ ଏତେବଡ଼ ସଭାରେ ମୋର କାହିଁକି ବଦନାମ କରୁଛ ? ଖୋଦ୍ ମହାରାଜା ସେଇଠି ଥିଲେ । ତାଙ୍କରି ସାମନାରେ ଏତେ ହିନିମାନିଆ କରି ମତେ ଅପମାନ ଦେଲ ? ରାଜା-ପରଜା ସମସ୍ତଙ୍କ ଆଗରେ ମୁଁ ଚାଲିଲା ପରି ଛୋଟେଇ ଛୋଟେଇ ଚାଲି ମତେ ଖତେଇ ହେଲ । ମତେ କଣ କରି ପାଇଲକି ? ଭଲ କରି ଜାଣି ଥାଅ, ଏ ରାଧି ଓଡ଼ିଆଣୀ ତମ ବୋପାକୁ ବି ଡରେ ନାହିଁ'' ଏମିତି ଆହୁରି କେତେ କଥା । ମୁଁ ସବୁକଥା ମହାରାଜାଙ୍କୁ କହି ପାରୁନାହିଁ । ଖୋଦ୍ ମହାରାଜା ତ ମୋ ଉପରେ ଖପ୍ପା ! ମୋତେ କଣ ମିଳିବ ଏ ଅଭିନୟରୁ । ଛାମୁଙ୍କୁ ଜଣାଇଦେଲି । ଆଉ ଏଣିକି ଅଭିନୟ ନ କଲେ ଗଲା !



Ama Odisha pdf (aamaodisha@gmail.com)

ମହାରାଜା ଆଉ ରାଗିବେ କଣ । କୁଆଡ଼େ ଉଭେଇଗଲା ତାଙ୍କର ସେଇ ଅହେତୁକି ପୂର୍ବ ଅଭିମାନ । ସେ ଟିକିଏ ହସିଦେଇ କହିଥିଲେ– ସେଇ ରାଧି ତ କଳିହୁଡୀଟାଏ । ତାକୁ ଦି' ପଦ ଭଲ କଥା କହି ବୁଝାଇ ଦିଅ– ସେ ଠିକ୍ ବୁଝିଯିବ ।

ଖୁସି ମନରେ ଚକ୍ରପାଣି ଫେରି ଆସିଥିଲେ ରାଜ ଉଆସରୁ । ଏବଂ ଏଇ ଘଟଣାରେ ମହାରାଜାଙ୍କ ସେଭଳି ଅଭିମାନରେ ଯଥାର୍ଥତା ନଥିବା କଥା ସେ ଠିକ୍ ଅନୁଭବ ମଧ୍ୟ କରି ପାରିଥିଲେ । କିନ୍ତୁ ତଥାପି ପରସମୟରେ ସେଇ ଆତ୍ମାଭିମାନର ପରିପ୍ରକାଶ ଘଟିଥିଲା ସେ ପ୍ରଥମ ଗୋଲ୍‌ଟେବୁଲ୍ ବୈଠକରେ ପ୍ରତିନିଧିତ୍ୱ କରିବା ପାଇଁ ମନୋନୀତ ହେବା ପରେ ପରେ । କଂଗ୍ରେସ ସଭ୍ୟଗଣ ତାହାଙ୍କୁ ତୀବ୍ର ସମାଲୋଚନା କରିବା ପାଇଁ ଅଣ୍ଟା ଭିଡ଼ିଥିଲେ । ପରେ ସୀମାକମିଟିର ସଭ୍ୟ ମନୋନୟନ ବେଳେ ସୁଦ୍ଧା ସେଇୟା ହୋଇଥିଲା । କିନ୍ତୁ ଜାତୀୟ କାର୍ଯ୍ୟରେ ନିଯୁକ୍ତ ଥିବା ତଥା ଓଡ଼ିଶା ଆନ୍ଦୋଳନରେ ନେତୃତ୍ୱ ନେଉଥିବା ଯୋଗୁଁ ପ୍ରବଳ ଫୁତ୍‌କାର ସହ ଫଣା ଟେକି ଉଠୁଥିବା ଆତ୍ମାଭିମାନକୁ ଶାନ୍ତ କରିବା ପାଇଁ ସେ ପଶ୍ଚାତ୍‌ପଦ ହେଉନଥିଲେ । ଏପରିକି ରାଜ୍ୟର ପ୍ରଧାନମନ୍ତ୍ରୀ ଭାବେ କାର୍ଯ୍ୟରତ ଥିବାବେଳେ ସୁଦ୍ଧା ବିଧାନସଭାରେ ଅନେକ ଆକ୍ଷେପମୂଳକ ବ୍ୟଙ୍ଗୋକ୍ତି ସେଇ ଆତ୍ମାଭିମାନକୁ ଆହତ କରୁଥିଲା ନିଶ୍ଚୟ । କିନ୍ତୁ ଜାତୀୟ ସ୍ୱାର୍ଥ ସେଠି ପରକ୍ଷଣରେ ଅଧିକ ବଳଶାଳୀ ହୋଇ ଯାଉଥିଲା । ସେଭଳି ଆବଶ୍ୟକତାକୁ ବାଦ୍‌ଦେଲେ ଜୀବନର ଅବସର କାଳରେ ସୁଦ୍ଧା ସେଇ ଆତ୍ମ ଅଭିମାନ ଯୁକ୍ତ ହୋଇ ଜୀବନ ନିର୍ବାହ କରିଥିଲେ ପାର୍ଥିବ ପୃଥିବୀରେ ଶେଷ ଦିନ ଯାଏଁ ।

ସ୍ୱାଧୀନତା ହାସଲ ପରେ ପରେ ଦେଶରେ ରାଜନୈତିକ ଦୃଶ୍ୟପଟର ପରିବର୍ତ୍ତନ ସଙ୍ଗେ ସଙ୍ଗେ ସାମାଜିକ ପରିବର୍ତ୍ତନ ମାନ ହେବା ଥିଲା ସ୍ୱାଭାବିକ । ଗତକାଲି ପ୍ରଭୂତ କ୍ଷମତାର ଅଧିକାରୀ ରାଜା/ଜମିଦାର ଗଣ ନିଜକୁ ଖାପଖୁଆଇ ଚଳିବା ପାଇଁ ଯେ ଯାହାର କର୍ମପନ୍ଥା ନିର୍ଦ୍ଧାରଣ କରିଥିଲେ । ସେମାନଙ୍କ ମଧ୍ୟରୁ ଅନେକେ ଗଣତାନ୍ତ୍ରିକ ରାଜନୀତିରେ ଯୋଗ ଦେଇଥିବା ବେଳେ ଆହୁରି ଅନେକେ ସେ ସବୁରୁ ଦୂରେଇ ରହି ବ୍ୟକ୍ତିଗତ ଉଦ୍ୟମରେ ପ୍ରତିଷ୍ଠିତ ହେବାପାଇଁ ବାଣିଜ୍ୟ ବ୍ୟବସାୟ ଇତ୍ୟାଦିରେ ମନୋନିବେଶ କରିଥିଲେ । କିନ୍ତୁ ଅନମନୀୟ ମହାରାଜା କୃଷ୍ଣଚନ୍ଦ୍ର ଥିଲେ ସେ ସବୁ ମଧ୍ୟରେ ଏକ ବ୍ୟତିକ୍ରମ । ଦେଶରେ, ଏପରିକି ସ୍ୱାଧୀନତା ପୂର୍ବରୁ ଏବଂ ପରେ ମଧ୍ୟ, ଜମିଦାରି ଦାୟିତ୍ୱରେ ଥିଲାବେଳେ ଯେମିତି ଥାଟବାଟ ଚାଲିଥିଲା ସେଇ ପରଂପରା ପ୍ରଚଳିତ ରହିଥିଲା ଜୀବନର ଶେଷ ଦିନ ଯାଏଁ । ପୂର୍ବଭଳି ଚାଲୁ ରହିଥିଲା "ସମସ୍ଥାନ" (ଜମିଦାରିର ପରିଚାଳନା କାର୍ଯ୍ୟାଳୟ) ମହାରାଜାଙ୍କ ବ୍ୟକ୍ତିଗତ କାର୍ଯ୍ୟାଳୟ ରୂପେ । ସେଥିରେ ପଦସ୍ଥ ଅଫିସରଗଣ ନିଯୁକ୍ତ ରହୁଥିଲେ । ପୂର୍ବଭଳି ରାଜ ନଅରରେ ବିଭିନ୍ନ କାର୍ଯ୍ୟ ପାଇଁ ବିଭିନ୍ନ କର୍ମଚାରୀ ନିଯୁକ୍ତ ରହିଥିଲେ । ଅବସର ଜୀବନରେ ସୁଦ୍ଧା ମହାରାଜାଙ୍କୁ ସାକ୍ଷାତ କରିବା ପାଇଁ ହେଲେ ପୂର୍ବର ସେଇ ରାଜକୀୟ କାଇଦାକଟକଣା ପାଳନ– ସେ ଯିଏ ହୁଅନ୍ତୁ ନା କାହିଁକି । ଦେଶ/



Ama Odisha pdf (aamaodisha@gmail.com)

ରାଜ୍ୟର ନେତୃବର୍ଗଙ୍କ ସମେତ ବୁଦ୍ଧିଜୀବୀ, ପ୍ରତିଷ୍ଠିତ ବ୍ୟକ୍ତି ତଥା ବିଦେଶାଗତ ଅତିଥିଗଣ ନବଉତ୍କଳର ଅନ୍ୟତମ ପ୍ରବୀଣ ବିଦ୍ଵାଣୀ ମହାରାଜଙ୍କ ସହିତ ସୌଜନ୍ୟମୂଳକ ସାକ୍ଷାତ ଏକ ଗୌରବ ବୋଲି ମନେ କରୁଥିଲେ ଶେଷ ପର୍ଯ୍ୟନ୍ତ । ସମସ୍ଥାନରୁ ତାରିଖ ଏବଂ ସମୟ ନିର୍ଦ୍ଧାରଣ କରିବାକୁ ହେଉଥିଲା । ସେଥିପାଇଁ ମହାରାଜାଙ୍କ ଦରବାର ହଲ୍ ସୁସଜ୍ଜିତ ହେଉଥିଲା । ଅତି ପରିଚିତଙ୍କ ଠାରୁ ଅପରିଚିତ ପର୍ଯ୍ୟନ୍ତ ସମସ୍ତଙ୍କ ପାଇଁ ସେଇ ଏକା ନିୟମ । ସେଇ ନିୟମରେ ମଧ ବନ୍ଧା ମହାରାଜା କୃଷ୍ଣଚନ୍ଦ୍ରଙ୍କ ଆର୍ଥିକ ସହାୟତା ଲାଭ କରି ଉଚ୍ଚ ଶିକ୍ଷିତ ହୋଇ ଜିଲ୍ଲା କଲେକ୍ଟର ରୂପେ ଯୋଗ ଦେଇଥିବା ଗୋପୀନାଥ ମଧ । ଏକଦା ମହାରାଜାଙ୍କର ପ୍ରଜା ଥିବା ଗୋପୀନାଥ ଗଂଜାମର କଲେକ୍ଟର ହେବା ପରେ ପରେ ସାମାଜିକ ଅବସ୍ଥାର ଠିକ୍ ପରିବର୍ତ୍ତନ ହୋଇଥିଲା । ମହାରାଜା ପାଲଟି ଯାଇଥିଲେ ତାଙ୍କରି ପ୍ରଜା ଭାରତର ସାମ୍ବିଧାନିକ ଅର୍ଥରେ । ତଥାପି ପାରଳା ଗଜପତିଙ୍କୁ ସାକ୍ଷାତ ଟିକିଏ କରିବା ପାଇଁ ବ୍ୟଗ୍ର ଗୋପୀନାଥଙ୍କର ସେଇ ସମସ୍ଥାନକୁ ଦଉଡ଼ । ସମୟ ନିର୍ଦ୍ଧାରଣ କର । ଦରବାର ହଲ ନିକଟରେ ଘଣ୍ଟାକଣ୍ଟାକୁ ଅପେକ୍ଷାକର । ହଲ୍‌ର ମଞ୍ଚ ଉପରକୁ ଉଠିବା ପୂର୍ବରୁ ପାଦର ଜୋତା ଓହ୍ଲାଅ...

ଅତିଥି ପୂର୍ବ ନିର୍ଦ୍ଧାରିତ ସମୟରେ ହିଁ ପହଞ୍ଚିବାକୁ ହେବ । ଅତି ବେଶିରେ ପାଞ୍ଚରୁ ଦଶମିନିଟ୍ ଡେରି କ୍ଷମଣୀୟ । ତା ପରେ ଦରବାର ହଲ୍‌ର ଦୁଆର ବନ୍ଦ । ସେଥିପାଇଁ ପୁଣିଥରେ ଖୋଲାଯିବା ସମ୍ଭବ ନୁହେଁ । ସେ ଯିଏ ହୁଅନ୍ତୁ ନା କାହିଁକି- ହୁଅନ୍ତୁ ରାଜ୍ୟର ମୁଖ୍ୟମନ୍ତ୍ରୀ ଡ: ହରେକୃଷ୍ଣ ମହତାବ୍ ଅଥବା ଦେଶର ସ୍ଵନାମଧନ୍ୟ ଚିକିତ୍ସକ ଡକ୍ଟର ଆକୁଳାନନ୍ଦ ଷଡ଼ଙ୍ଗୀ ।



**ଅବସର ଜୀବନରେ**



Ama Odisha pdf (aamaodisha@gmail.com)

ଶୃଙ୍ଖଳା... ଶୃଙ୍ଖଳିତ ଆଚରଣ... ଶୃଙ୍ଖଳିତ ଜୀବନ ଚର୍ଯ୍ୟା ।

ଜମିଦାରି ବିଲୋପ ପର୍ଯ୍ୟନ୍ତ ପ୍ରତିଦିନ ପ୍ରଭାତର ଆଗମନୀ ଜଣାଇ ରାଜନଅରରେ ବାଜି ଉଠୁଥିଲା ନହବତ ବାଦ୍ୟ । ଭୋର୍‌ରୁ ଉଠି ପ୍ରାଭାତିକ ନିତ୍ୟ କର୍ମ ଶେଷ କରି କୃଷ୍ଣଚନ୍ଦ୍ର ସାମାନ୍ୟ ଜଳଖିଆ ଖାଉଥିଲେ । ସୂର୍ଯ୍ୟୋଦୟ ପୂର୍ବରୁ ସେହି ସବୁ କାର୍ଯ୍ୟ ଶେଷ କରି ନିଜେ ଗାଡ଼ିଚଳାଇ ଯାଉଥିଲେ 'ହୋମଫାର୍ମ' । ପ୍ରାୟ ସାଢ଼େ ଆଠ ପର୍ଯ୍ୟନ୍ତ ସେଠି ଚାଷବାସ ତଥା ଗୋରୁ ଗାଈଙ୍କ ସଂପର୍କରେ ତଦାରଖ । ବୋଝେ କଅଁଳିଆ ଘାସ ନଅରର ଗାଈଗୋରୁଙ୍କ ପାଇଁ ନେଇ ଫେରିବା ପରେ ଘଣ୍ଟାଏ ଦୁଇଘଣ୍ଟା ଅଫିସ୍ କାର୍ଯ୍ୟ-ଖବରକାଗଜ ପଢ଼ା, ଅତିଥି ଆଗନ୍ତୁକଙ୍କ ସହ ସାକ୍ଷାତ୍ ଇତ୍ୟାଦି । ଦଶଟା ବେଳେ ସ୍ନାନ । ତତ୍‌ପରେ ରାଜଗୁରୁଙ୍କ ସହ ଦେବାର୍ଚ୍ଚନ, ପୂଜା ଗୃହରେ ଜପତପ । ତାପରେ ମଧ୍ୟାହ୍ନ ଭୋଜନ ଏବଂ ବିଶ୍ରାମ । ବାଲ୍ୟ/କୈଶୋରରେ ପ୍ରିୟ ସଜନାଛୁଇଁ ଭଜା ସ୍ଥାନରେ ଉତ୍ତର ବୟସରେ କାଞ୍ଜି ଏବଂ ଶେଉଳ ମାଛର ଭଜା ଥିଲା ମହାରାଜାଙ୍କ ପ୍ରିୟଖାଦ୍ୟ ମଧ୍ୟରେ ଅନ୍ୟତମ । ପ୍ରବାଦ ଅଛି ପ୍ରଥମ ଗୋଲଟେବୁଲ ବୈଠକ ଅବସରରେ ଲଣ୍ଡନ ଠାରେ ବିଦେଶୀ ଅତିଥିଗଣଙ୍କୁ ଓଡ଼ିଶୀ ଖାଦ୍ୟ-କାଞ୍ଜି ଖୁଆଇ ଆମୋଦିତ କରିଥିଲେ ଆମ ପାରଳା ଗଜପତି ।

ଅପରାହ୍ନ ତିନିଟା ବେଳେ ଅଫିସ୍‌କାର୍ଯ୍ୟ କିଛି ଥିଲେ କିମ୍ବା ଅତିଥି ଆଗନ୍ତୁକ ଆସିଥିଲେ ଭଲ । ନଥିଲେ ହୋମଫାର୍ମ/ପୁଣ୍ଡି ଲୁଣ କାରଖାନା ଆଡ଼େ ଘେରାଏ ବୁଲାବୁଲି । ପୂର୍ବେ ଶିକାରପ୍ରିୟ ମହାରାଜା ପାରଳା ସହର ନିକଟସ୍ଥ କୁରୁଲୁଣ୍ଡା କିମ୍ବା ପୁଲିକଟା ଜଙ୍ଗଲରୁ କିଛି ହରିଣ/କୁଟୁରା/ ସମ୍ବର/ବାରହା ଶିକାର ନେଇ ସନ୍ଧ୍ୟା ସାତ/ସାଢ଼େ ସାତ ବେଳକୁ ଫେରି ଆସୁଥିଲେ ନଅରକୁ । ବେଳେ ବେଳେ କଲରାପତ୍ରିଆ ବାଘଟିଏ ହାବୁଡ଼ିଗଲେ ତାକୁ ମଧ୍ୟ ଶିକାର କରୁଥିଲେ ସେ । ହେଲେ ଉଦ୍ଦେଶ୍ୟମୂଳକ ଭାବେ ମହାବଳ ବାଘ ଶିକାର କରୁଥିଲେ ଯେତେବେଳେ ଜମିଦାରି ଅଞ୍ଚଳରେ ମଣିଷଖିଆ ବାଘ ମାତୁଥିଲା- ପ୍ରଜାଗଣଙ୍କ ଧନଜୀବନ ହାନି କରୁଥିଲା । ହେଲେ ଜମିଦାରି ଉଚ୍ଛେଦ ପରେ ସେହି ସବୁ କାର୍ଯ୍ୟ ବନ୍ଦ । ଯେଉଁ ଆଡ଼େ ଗଲେ ବି ପ୍ରାୟ ସନ୍ଧ୍ୟା ଛଅଟା ବେଳେ ଉଆସରେ ହାଜର । କ୍ଳାନ୍ତି ଅପନୋଦନ ପାଇଁ ପୁଣିଥରେ ସ୍ନାନ ଓ ଜଳଯୋଗ । ତାପରେ ଚିଠିପତ୍ର ଲେଖା ଅନ୍ୟମାନଙ୍କ ସହ ସାକ୍ଷାତ ଆଲୋଚନା । ରାତି ନଅରୁ ଦଶ ମଧ୍ୟରେ ରାତ୍ରି ଭୋଜନ ଓ ତାପରେ ବିଶ୍ରାମ । ଅବାଞ୍ଛିତ କାରଣରୁ ସେଥିରେ ବ୍ୟତିକ୍ରମ ହେଉନଥିଲା କହିଲେ ଚଳେ । ସେବକଗଣ ତାହାର ଭୟାବହ ପରିଣତି ସଂପର୍କରେ ସମ୍ପୂର୍ଣ୍ଣ ଅବହିତ ଥିଲେ ।

ମହାରାଜା ଥିଲେ ଅତ୍ୟନ୍ତ କ୍ଷଣକୋପୀ । ସମସ୍ତ ସଦ୍‌ଗୁଣ ଭିତରେ ତାହାହିଁ ଥିଲା ତାଙ୍କର ବଦ୍‌ଗୁଣ । ଶୃଙ୍ଖଳା ପ୍ରିୟ ମହାରାଜା ସାମାନ୍ୟ ତ୍ରୁଟି ପାଇଁ ସେବାକାରୀମାନଙ୍କୁ କଠୋର ଦଣ୍ଡରେ ଦଣ୍ଡିତ କରୁଥିଲେ । କୌଣସି ତ୍ରୁଟି ବିଚ୍ୟୁତିରେ ମହାରାଜା ଭୀଷଣ ବ୍ୟସ୍ତ ହୋଇ ଉଠୁଥିଲେ । ସେଇ କାରଣରୁ ଅନେକ ବେଳେ ସଂପୃକ୍ତ ସେବକଙ୍କୁ ତତ୍‌କ୍ଷଣାତ୍ ବରଖାସ୍ତ କରି ଦେଉଥିଲେ ।



Ama Odisha pdf (aamaodisha@gmail.com)

ତେଣୁ ସେମାନେ ତତ୍‌ପର ଥିଲେ ଘଣ୍ଟାକଣ୍ଟା ଅନୁଯାୟୀ ପ୍ରତ୍ୟେକ କାର୍ଯ୍ୟ ସମାହିତ କରିବା ପାଇଁ । ଘଣ୍ଟା ବଜାଇବା ପ୍ରହରୀଗଣ ତ ଥିଲେ ଅଧିକ ତତ୍‌ପର ।

ସହରବାସୀଙ୍କୁ ପ୍ରତିଦିନର ସମୟ ସୂଚନା ପ୍ରଦାନ କରିବା ପାଇଁ ନଅର ସିଂହ ଦ୍ୱାର ଗୁମୁଟର ସର୍ବୋଚ୍ଚ ଶିଖରରେ ନିର୍ମିତ ହୋଇଥିଲା ଏକ ଘଣ୍ଟା ଘର । ସେଠାରେ ଏକ ବିରାଟ ଘଣ୍ଟା ସ୍ଥାପିତ ହୋଇଥିଲା । ତତ୍‌ସହିତ ସେଠାରେ ଅହୋରାତ୍ର ପ୍ରହରୀମାନଙ୍କ ନିୟୋଜନ । ପ୍ରତି ଘଣ୍ଟାରେ ସେମାନେ ଦୋଳାୟମାମନ ଏକ ବିରାଟ ଘଣ୍ଟାକୁ ପ୍ରବଳ ପ୍ରହାର କରି ସହରବାସୀଙ୍କୁ ସୂଚାଇ ଦେଉଥିଲେ ସଠିକ ସମୟ । ସକାଳ ଆଠଟା ବେଳେ ତାହା ଆଠ ଥର ବାଜିବା ବେଳେ ଅପରାହ୍ନ ଚାରିଟାବେଳେ ଶବ୍ଦ କରି ଉଠୁଥିଲା ଚାରିଥର ଏବଂ ରାତି ବାରଟା ବେଳେ ବାରଥର ଶବ୍ଦ କରୁଥିଲା ସେଇ ଘଣ୍ଟା । ସେଇ କାନ୍ଥ ଘଣ୍ଟାର ନିକଟ କଣ୍ଟା ପ୍ରତିଥର ୧ ୨ ରେ ପହଞ୍ଚିବା ମୁହୂର୍ତ୍ତକୁ ଅପେକ୍ଷା କରି ରହୁଥିଲେ ସଚେତନ ପ୍ରହରୀଗଣ ଏବଂ ସେହି କାରଣରୁ ସହରବାସୀ ସଠିକ୍ ସମୟର ସୂଚନା ପାଇ ପାରୁଥିଲେ ଅହୋରାତ୍ର । ଜମିଦାରି ଉଚ୍ଛେଦ ପରେ ଦୀର୍ଘକାଳ ପର୍ଯ୍ୟନ୍ତ ସେହି ବ୍ୟବସ୍ଥା ଚାଲୁରହିଥିଲା ।

ଅବଶ୍ୟ ମହାରାଜା ସହର ବାହାରକୁ ଗଲାବେଳେ ଦୈନନ୍ଦିନ କାର୍ଯ୍ୟ ନିର୍ଘଣ୍ଟରେ ସାମାନ୍ୟ ବ୍ୟତିକ୍ରମ ତ ସ୍ୱାଭାବିକ । ତେବେ ସାଙ୍ଗରେ ତାଙ୍କରି ବ୍ୟକ୍ତିଗତ ସେବାକାରୀଗଣ- ସୁଆର, ଗୁଡ଼ିଆ, ଗଉଡ଼, ଗରାବଡୁ ପ୍ରମୁଖ ଯାତ୍ରା କରୁଥିଲେ ଅନ୍ୟମାନଙ୍କ ସହିତ । ଏହିଭଳି କାର୍ଯ୍ୟକ୍ରମ ପ୍ରାୟତଃ ଚାଲୁ ରହିଥିଲା ଜୀବନର ଶେଷ ଦିନ ପର୍ଯ୍ୟନ୍ତ- ୧ ୯ ୭ ୪ ମସିହା ମଇ ୨ ୫ ତାରିଖ ପର୍ଯ୍ୟନ୍ତ ।

ସେଦିନ ମଧ୍ୟ ପ୍ରତ୍ୟୁଷରୁ ଆପଣାର ନିତ୍ୟକର୍ମ ଶେଷକରି ହୋମଫାର୍ମକୁ ଯାଇଥିଲେ । ସେଠାରୁ ଫେରି ସ୍ନାନାଦିକର୍ମ ଶେଷକରି ଦେବାର୍ଚ୍ଚନ କରିଥିଲେ ନଅର ଭିତରେ । ତାପରେ ପ୍ରସ୍ତୁତ ହୋଇଥିଲେ ନିତ୍ୟ ନୈମିତ୍ୟିକ ଭାବେ ମଧ୍ୟାହ୍ନ ଭୋଜନ ପାଇଁ ।

କିନ୍ତୁ 'ଅବିଶ୍ୱାସୀ' କ୍ରୂରକାଳ ଅଚାନକେ ଆସି ସେଇଠି 'ହାବୋଡ଼ି' ଯାଇଥିଲା । ସେ ଆଉ ଭୋଜନ କରିବାକୁ ଯାଇପାରି ନଥିଲେ । ଦିନ ପ୍ରାୟ ସାଢ଼େ ଏଗାରଟା ବେଳେ କାଳର କବଳରେ ବନ୍ଦୀ ହୋଇ ଯାଇଥିଲେ ସେ । ମହାକାଳ ମହାରାଜାଙ୍କୁ ଗ୍ରାସ କରି ନେଇଥିଲା ।

ସେହି ମୃତ୍ୟୁକୁ ରାଷ୍ଟ୍ରୀୟ ମର୍ଯ୍ୟାଦା ପ୍ରଦାନ କରିଥିଲେ ସରକାର । ତତ୍‌ପରଠାରୁ ସମସ୍ତ ବ୍ୟବସ୍ଥା ଯୁଦ୍ଧକାଳୀନ ଭିତ୍ତିରେ କରାଯାଇଥିଲା । ସେତେବେଳେ ଯୁବରାଜ ରାମଚନ୍ଦ୍ରଙ୍କ ପୁତ୍ର ଗୋପୀନାଥଙ୍କୁ ସମ୍ବାଦ ପ୍ରେରଣ କରାଯାଇଥିଲା । ରାଜବାଟୀର ଚତୁଃପାର୍ଶ୍ୱରେ ଅଧିକ ଆଲୋକର ବ୍ୟବସ୍ଥା ତୁରନ୍ତ କରାଯାଇଥିଲା । ପୋଲିସ୍ ବିଭାଗର ଉଚ୍ଚ କର୍ମଚାରୀଗଣ ମହାରାଜାଙ୍କ ମର ଶରୀରର ରକ୍ଷଣାବେକ୍ଷଣ ଦାୟିତ୍ୱ ତତ୍‌କାଳ ଗ୍ରହଣ କରିଥିଲେ । ସରକାର ଛୁଟି ଘୋଷଣା କରିଥିଲେ । ସ୍କୁଲ କଲେଜ ବନ୍ଦ ହୋଇଯାଇଥିଲା ।



Ama Odisha pdf (aamaodisha@gmail.com)

ତୁଣ୍ଡ ବାଇଦର ବାଜଣା ଶବ୍ଦ ସତେ ଯେମିତି ପବନରେ ଆଦିଗନ୍ତ ବିଚ୍ଛୁରିତ ହୋଇ ଯାଇଥିଲା । ସମସ୍ତଙ୍କ ଆଖିରେ ଲୁହ । ଜଣେ ଯୁଗପୁରୁଷର ଅବସାନ-ଗୋଟିଏ ଯୁଗର ଅବସାନ । ବିନା ବାକ୍ୟ ବ୍ୟୟରେ ଏବଂ ବିନା ସମୟର ଅପଚୟରେ ପାରଳା ସହରର ଦୋକାନବଜାର ବନ୍ଦ ହୋଇ ଯାଇଥିଲା । ଅବିଶ୍ୱାସ ଏବଂ ବିସ୍ମୟର ବାତାବରଣ ଭିତରେ ଆବାଳବୃଦ୍ଧବନିତା ମୁହାଁଇଥିଲେ ରାଜନଅର ଆଡ଼କୁ । ସାରା ସହରରେ ପ୍ରାୟ ପ୍ରତ୍ୟେକଙ୍କ ଘରେ ଚୁଲି ଜଳିବା ବି ବନ୍ଦ । ରାଜନଅର ଚତୁର୍ଦ୍ଦିଗରେ ଲୋକାରଣ୍ୟ । ରାଜଦାଣ୍ଡରେ ସୋରିଷ ପଡ଼ିବାକୁ ସ୍ଥାନ ନାହିଁ ।

ପାରଳା ସହର ଆଡ଼କୁ ଛୁଟି ଥିଲା ଜନତାର ସୁଅ । ସେଥିରେ କେବଳ ପାରଳା ଜମିଦାରି ଅଞ୍ଚଳର ଲୋକ ନଥିଲେ, ବିଶେଷକରି ସେଥିରେ ଥିଲେ ଆନ୍ଧ୍ର ସହିତ ଯୁକ୍ତ ହୋଇ ରହିଯାଇଥିବା ପୂର୍ବତନ ଖେମଣ୍ଡି ରାଜ୍ୟର ଗାଆଁଗଣ୍ଡାରୁ ଜନଗଣଙ୍କ ବିରାଟ ପଟୁଆର- ସେମାନେ ଏକା ନିଃଶ୍ୱାସରେ ଦଉଡ଼ି ଆସିଥିଲେ ମହାରାଜାଙ୍କୁ ଶେଷ ଦର୍ଶନ କରିବେ-ଶେଷ ସମ୍ମାନ ଜଣାଇବେ । ପାରଳା ସହର ଲୋକାରଣ୍ୟ ହୋଇ ଉଠିଥିଲା । ସମୟର ଗତି ଭୁଲି ଯାଇଥିଲେ ସମସ୍ତେ । ମଧ୍ୟାହ୍ନ, ଅପରାହ୍ଣ, ରାତି ବୋଲି କିଛି ବାରି ହେଉନଥିଲା । ପ୍ରତି ଘଣ୍ଟାରେ ଯେମିତି କିଛି କିଛି ନୂତନ ବ୍ୟକ୍ତିଙ୍କର ସମାଗମ, ଶେଷ ଦର୍ଶନ ପାଇଁ ବ୍ୟାକୁଳତା । ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ବିଶିଷ୍ଟ ତଥା ଅତି ବିଶିଷ୍ଟ ବ୍ୟକ୍ତିବୃନ୍ଦ ଏବଂ ସରକାରୀ ଅଫିସରଗଣ ସମବେତ ହୋଇଥିଲେ ପାରଳାରେ, ସେଇ ଏକା ଉଦ୍ଦେଶ୍ୟରେ ।

ସମ୍ବାଦ ପାଇ ଗୋପୀନାଥ ଗଜପତି ବାଙ୍ଗାଲୋରରୁ ଆସି ତତ୍‌ପରଦିନ ପହଞ୍ଚିଥିଲେ । ସେଭଳି ଖବର ପାଇ ମହାରାଜାଙ୍କର କନିଷ୍ଠ ପୁତ୍ର ମାଧବ ସୁନ୍ଦର ଗଜପତି ମଧ୍ୟ ଆସିଥିଲେ ମାନ୍ଦ୍ରାଜରୁ । ବଂଶ ପରଂପରାକ୍ରମେ ରାଜକୀୟ ମର୍ଯ୍ୟାଦା ସହ ପ୍ରଥମେ ଗୋପୀନାଥ ପାରଳା ରାଜସିଂହାସନରେ ଅଭିଷିକ୍ତ ହୋଇଥିଲେ । ତତ୍‌ପରେ ରାଜାଦେଶ କ୍ରମେ କୃଷ୍ଣଚନ୍ଦ୍ରଙ୍କ ମରଶରୀରକୁ ନଅର ବାହାରକୁ ନିଆ ଯାଇଥିଲା । ରାଷ୍ଟ୍ରୀୟ ମର୍ଯ୍ୟାଦା ସହ ସହରର ବିଭିନ୍ନ ମାର୍ଗଦେଇ ସେଇ ଶବ ଶୋଭାଯାତ୍ରା ମହେନ୍ଦ୍ରତନୟା ନଦୀ କୂଳକୁ ଯାଇଥିଲା । ବୈଦିକ ରୀତିରେ ଶବ ସଂସ୍କାର ହୋଇଥିଲା ସେଇଠି । ଓଡ଼ିଶାରେ ମହିମାମୟ ଗଙ୍ଗ ଗଜପତି ବଂଶର ଶେଷ ଶାସକ ସେଇଠି ପଞ୍ଚଭୂତରେ ବିଲୀନ ହୋଇ ଯାଇଥିଲେ- ତାଙ୍କରି ଅମର ଆତ୍ମା ପରମାତ୍ମାଙ୍କ ସହିତ ବିଲୀନ ହୋଇଯାଇଥିଲା ।

—୦—



Ama Odisha pdf (aamaodisha@gmail.com)

## ପରିଶିଷ୍ଟ-କ

# ଖେମଣ୍ଡି ରାଜ୍ୟର ଗଙ୍ଗରାଜାଗଣ

| ଖେମଣ୍ଡି ରାଜାଙ୍କ କ୍ରମ | ରାଜାଙ୍କ ନାମ | ଶାସନ କାଳ | | |
|---|---|---|---|---|
| | | ମିଃ ସିଓ୍ୱେଲ୍ | ବି.ଶେଷାଗିରି ରାଓ | ସୀମାଦ୍ରି ପରିଚ୍ଛା |
| ୧ | ୨ | ୩ | ୪ | ୫ |
| ରାଜଧାନୀ-ଗୁଡ଼ାରିକଟକ | | | | |
| | ୧. ନରସିଂହଦେବ ଓରଫ କଳାହମ୍ବିର | ୧୨୪୫-୧୨୬୫ | ୧୨୪୫-୧୨୮୫ | ୧୨୪୫-୧୨୬୧ |
| | ୨. ମଦନଦେବ | ୧୨୬୫-୧୨୯୦ | ୧୨୮୫-୧୩୨୦ | ୧୨୬୧-୧୨୮୧ |
| | ୩. ନାରାୟଣଦେବ | ୧୨୯୦-୧୩୦୯ | ୧୩୨୦-୧୩୫୫ | ୧୨୮୧-୧୨୯୬ |
| | ୪. ଆନନ୍ଦଦେବ | ୧୩୦୯-୧୩୧୭ | ୧୩୫୫-୧୩୮୬ | ୧୨୯୬-୧୨୯୭ |
| | ୫. ଅନନ୍ତରୁଦ୍ରଦେବ | ୧୩୧୭-୧୩୨୫ | | ୧୨୯୭-୧୩୧୧ |
| | ୬. ଜୟରୁଦ୍ରଦେବ | ୧୩୨୫-୧୩୬୭ | ୧୩୮୬-୧୪୩୧ | ୧୩୧୧-୧୩୪୪ |
| | ୭. ଲକ୍ଷ୍ମୀ ନରସିଂହ ଭାନୁଦେବ | ୧୩୬୭-୧୩୯୨ | ୧୪୩୧-୧୪୫୬ | ୧୩୪୪-୧୩୬୪ |
| | ୮. ମଧୁକର୍ଣ୍ଣଦେବ / ମଧୁକର୍ଣ୍ଣଭାନୁ | ୧୩୯୨-୧୪୨୩ | ୧୪୫୬-୧୪୮୮ | ୧୩୬୪-୧୩୮୮ |
| ରାଜଧାନୀ-ନଗରୀ କଟକ/କଳିଙ୍ଗ ନଗର | | | | |
| | ୯. ମୃତ୍ୟୁଞ୍ଜୟ ଭାନୁଦେବ | ୧୪୨୩-୧୪୫୭ | ୧୪୮୮-୧୫୨୨ | ୧୩୮୮-୧୪୧୫ |
| | ୧୦.ହମିର ମାଧବ ମଦନସୁନ୍ଦର ଭାନୁଦେବ | ୧୪୫୭-୧୪୯୪ | ୧୫୨୨-୧୫୯୯ | ୧୪୧୫-୧୪୪୪ |
| | ୧୧. ଚନ୍ଦ୍ରବେତାଳ ଭାନୁଦେବ / ଚନ୍ଦ୍ରମୌଳି ଗଜପତି | ୧୪୯୪-୧୫୨୭ | ୧୫୯୯-୧୬୦୩ | ୧୪୪୪-୧୪୭୦ |
| | ୧୨.ସୁବର୍ଣ୍ଣଲିଙ୍ଗ ଭାନୁଦେବ / ସ୍ୱର୍ଣ୍ଣଲିଙ୍ଗଭାନୁ | ୧୫୨୭-୧୫୬୬ | ୧୬୦୩-୧୬୪୨ | ୧୪୭୦-୧୫୦୧ |
| | ୧୩. ଶିବଲିଙ୍ଗଭାନୁ / ଶୁଭଲିଙ୍ଗଭାନୁ / ଶିବଲିଙ୍ଗ ନାରାୟଣଦେବ | ୧୫୬୬-୧୫୯୦ | ୧୬୪୨-୧୬୭୦ | ୧୫୦୧-୧୫୨୦ |
| | ୧୪. ସୁବର୍ଣ୍ଣକେଶରୀ ଗୋବିନ୍ଦଦେବ ଗଜପତି ନାରାୟଣଦେବ | ୧୫୯୦-୧୬୩୦ | ୧୬୭୦-୧୭୧୦ | ୧୫୨୦-୧୫୫୨ |
| | ୧୫.ମୁକୁନ୍ଦରୁଦ୍ର ଗଜପତି ନାରାୟଣଦେବ | ୧୬୩୦-୧୬୫୬ | ୧୭୧୦-୧୭୩୬ | ୧୫୫୨-୧୫୭୩ |



Ama Odisha pdf (aamaodisha@gmail.com)

| ଖେମଣ୍ଡି ରାଜାଙ୍କ କ୍ରମ | ରାଜାଙ୍କ ନାମ | ଶାସନ କାଳ | | |
|---|---|---|---|---|
| | | ମିଃ ସିଓ୍ୱେଲ୍ | ବି.ଶେଷାଗିରି ରାଓ | ସୀମାଦ୍ରି ପରିଚ୍ଛା |
| ୧ | ୨ | ୩ | ୪ | ୫ |
| **ରାଜଧାନୀ-ପୁରୁଣାପାଟଣା** | | | | |
| ୧୬. ମୁକୁନ୍ଦଦେବ / ମୁକୁନ୍ଦ ଗଜପତି | | ୧୬୫୬-୧୬୭୪ | ୧୭୩୬-୧୭୫୪ | ୧୫୭୩-୧୫୯୧ |
| ୧୭. ଅନନ୍ତ ପଦ୍ମନାଭ ଗଜପତି ନାରାୟଣଦେବ | | ୧୬୭୪-୧୬୮୬ | ୧୭୫୪-୧୭୬୬ | ୧୫୯୧-୧୬୦୩ |
| ୧୮. ସର୍ବଜ୍ଞ ଜଗନ୍ନାଥ ନାରାୟଣଦେବ | | ୧୬୮୬-୧୭୦୨ | ୧୭୬୭-୧୭୮୪ | ୧୬୦୩-୧୬୧୯ |
| ୧୯. ନରସିଂହଦେବ / ନରହରିଦେବ | | ୧୭୦୨-୧୭୨୯ | ୧୭୮୪-୧୮୧୧ | ୧୬୨୯-୧୬୪୬ |
| ୨୦. ବୀର ପଦ୍ମନାଭ ନାରାୟଣଦେବ | | ୧୭୨୯-୧୭୪୮ | ୧୮୧୧-୧୮୨୪ | ୧୬୪୬-୧୬୬୨ |
| ୨୧. ବୀରପ୍ରତାପରୁଦ୍ର ଗଜପତି ନାରାୟଣଦେବ | | ୧୭୪୮-୧୭୬୬ | ୧୮୨୪-୧୮୪୨ | ୧୬୬୨-୧୬୯୩ |

ଗଙ୍ଗବଂଶର ଇତିହାସ (ଇଂରାଜୀ, ୨ୟ ଭାଗ)- ଡକ୍ଟର ସତ୍ୟନାରାୟଣ ରାଜଗୁରୁ ପୃ: ୮୦-୮୧ ।
(ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ପ୍ରକାଶନ-୧୯୭୨)





Ama Odisha pdf (aamaodisha@gmail.com)



ଭାରତୀୟ ଜନଗଣନା ବିଭାଗର ଅବସରପ୍ରାପ୍ତ ଉଚ୍ଚାଧିକାରୀ ସତ୍ୟ ନାରାୟଣ ମହାପାତ୍ର ଜଣେ ବିଶିଷ୍ଟ ଜୀବନୀକାର ଭାବରେ ସୁପରିଚିତ । ୧୯୪୪ ମସିହାରେ ଭଞ୍ଜଭୂମି ଭଞ୍ଜନଗରରେ ଜନ୍ମିତ ଶ୍ରୀ ମହାପାତ୍ର ଖଲ୍ଲିକୋଟ କଲେଜରୁ ଅର୍ଥନୀତିରେ ସ୍ନାତକୋତ୍ତର ଶିକ୍ଷାଲାଭ କରିଥିଲେ ମଧ୍ୟ ସାମ୍ବାଦିକ ପିତା ସ୍ୱର୍ଗତ ବିଶ୍ୱନାଥ ମହାପାତ୍ରଙ୍କ ପ୍ରେରଣା ଓ ପାରିବାରିକ ପରିବେଶ ଅଳ୍ପ ବୟସରୁ ତାଙ୍କୁ ସାହିତ୍ୟ ପ୍ରତି ଆକର୍ଷିତ କରିଥିଲା ।

୧୯୭୧ ମସିହାରେ 'ପଣ୍ଡିତ ଗୋଦାବରୀଶ'ର ପ୍ରକାଶନ ସହିତ ଓଡ଼ିଆ ଜୀବନୀ ସାହିତ୍ୟ ରଚନାରେ ପାଦ ଥାପିଥିବା ଶ୍ରୀ ମହାପାତ୍ର ବର୍ତ୍ତମାନ ସୁଦ୍ଧା ପ୍ରାୟ ୩୫ ଖଣ୍ଡ ଗ୍ରନ୍ଥର ରଚୟିତା । ତାଙ୍କର ସଫଳ କୃତିଗୁଡ଼ିକ ମଧ୍ୟରେ 'ପ୍ରିୟଦର୍ଶିନୀ ଇନ୍ଦିରା' 'ସର୍ଦ୍ଦାର ପଟେଲ୍', 'ଗଜପତି କୃଷ୍ଣଚନ୍ଦ୍ର ଦେବ', 'ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ', 'ନେତାଜୀ ସୁଭାଷ ବୋଷ', 'ସାମ୍ବାଦିକ ଶଶିଭୂଷଣ', 'କବିବର ରାଧାନାଥ', 'କବିଶେଖର ଚିନ୍ତାମଣି', କବିଗୁରୁ ରବୀନ୍ଦ୍ର', 'ଆଚାର୍ଯ୍ୟ ମହାଶୟ' ପ୍ରଭୃତି ପ୍ରଧାନ । ଏଗୁଡ଼ିକ ଓଡ଼ିଶାର ପ୍ରତିଷ୍ଠିତ ପ୍ରକାଶକଙ୍କଦ୍ୱାରା ପ୍ରକାଶିତ ହୋଇଥିବା ବେଳେ ଅନୂଦିତ 'ମୋତିଲାଲ ଘୋଷ' ଏନ୍.ବି.ଟି. ପକ୍ଷରୁ ପ୍ରକାଶିତ ।

ଶ୍ରୀ ମହାପାତ୍ର ଜଣେ ସର୍ଜନଶୀଳ ଗାଳ୍ପିକ ଏବଂ ସଂପ୍ରତି 'ଭାବଗ୍ରାହୀ ଜଗନ୍ନାଥ' ନାମରେ ତାଙ୍କର ଏକ ଗଳ୍ପ ସଂକଳନ ମଧ୍ୟ ପ୍ରକାଶ ପାଇଛି । 'ଆମ ଓଡ଼ିଶା' ପାଇଁ ସ୍ୱତନ୍ତ୍ର ଭାବରେ ପ୍ରସ୍ତୁତ 'ଆମ ପାରଳା ଗଜପତି' ଓଡ଼ିଆ ଜୀବନୀ ସାହିତ୍ୟକୁ ଶ୍ରୀ ମହାପାତ୍ରଙ୍କର ଆଉ ଏକ ଅନୁପମ ଅବଦାନ ।

ଆମ ଓଡ଼ିଶା
ĀMA ODISHĀ
ISBN 81-87436-84-8
9788187436841

Ama Odisha pdf (aamaodisha@gmail.com)